# ଭାଗବତ କଥା

## ଚତୁସ୍ତ୍ରିଂଶ ଖଣ୍ଡ


ଲେଖକ :

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା :

ଡକ୍ଟର କୃଷ୍ଣପ୍ରସାଦ ମିଶ୍ର

ଅନୁବାଦକ :

ଡକ୍ଟର ଭଗବାନ ପଣ୍ଡା



ପ୍ରକାଶକ :



ଧର୍ମଗ୍ରନ୍ଥ ଷ୍ଟୋର

# ଭାଗବତ କଥା

## ଚତୁସ୍ତ୍ରିଂଶ ଖଣ୍ଡ

ପ୍ରକାଶିକା :
ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
କଟକ - ୭୫୩୦୦୨

ପ୍ରକାଶନ ଉପଦେଷ୍ଟା :
ଡକ୍ଟର କୃଷ୍ଣପ୍ରସାଦ ମିଶ୍ର

ପ୍ରଥମ ସଂସ୍କରଣ : ୧୯୯୦

ପ୍ରଚ୍ଛଦ :
ଅସିତ ମୁଖାର୍ଜୀ

ମୁଦ୍ରଣ :
ପଦ୍ମାଳୟା ପ୍ରକାଶନୀ
ଶଙ୍କରପୁର, କଟକ-୧୨

ମୂଲ୍ୟ :
ସାଧାରଣ— ଟ ୧୭-୦୦
ବନ୍ଧାଇ— ଟ ୨୦-୦୦

# BHAGABAT KATHA

## ( Thirty Four Part )

Sri Prabhudatta Brahmachāri

Publisher :
Srimati Annapurna Mishra
Cuttack Students' Store
Balubazar, Cuttack - 753002

Publication Adviser :
Dr. K. P. Mishra

First Edition : 1990

Price :
Pupular—Rs. 17-00
Deluxe—Rs. 20-00

# ବିଷୟ ସୂଚୀ

# ମହାରାଜ ଦୁଷ୍ମନ୍ତ ଓ ଶକୁନ୍ତଳା

ଦୁଷ୍ୟନ୍ତୋ ମୃଗୟାଂ ଯାତଃ କଣ୍ୱାଶ୍ରମପଦଂ ଗତଃ ।
ତତ୍ରାସୀନାଂ ସ୍ୱପ୍ରଭୟା ମଣ୍ଡୟନ୍ତୀଂ ରମାମିବ ॥
ବିଲୋକ୍ୟ ସଦ୍ୟୋ ମୁମୁହେ ଦେବମାୟାମିବ ସ୍ତ୍ରିୟମ୍ ।
ବଭାଷେ ତାଂ ବରାରୋହାଂ ଭଟୈଃ କତିପୟୈର୍ବୃତଃ ।

(ଶ୍ରୀ ଭା ୯ ସ୍କ: ୨୦ଶ ଅ: ୮,୯ଶ ଶ୍ଳୋକ)

## ଛପ୍ପୟ

ହୋହି ହବନ, କହୁଁ ସାମ ବୈଠି ବଟୁ ସସ୍ୱର ଗାୱେଁ ।
ନାଚେଁ କେକୀ କହୁଁ କହୁଁ ମୃଗ ପୁଁଛ ହିଲାୱେଁ ।
କୋଇ ସମିଧାକୁଶା ପୁଷ୍ପ ଫଲ ଲୈକେଁ ଆୱେଁ ।
କୋଇ ବଲ୍କଲ ବସ୍ତ୍ର ଉଟଜ ପେ ଡାର ସୁଖାୱେଁ ॥
ତରୁଛାୟା ମହଁ ବୈଠି ମୃଗ, କରହୁଁ ଜୁଗାର ଖୁଜାଇଁ ତନ ।
ଆଶ୍ରମ ଶୋଭା ନିରଖିକେ, ଭୟୋ ଭୂପକୋ ମୁଦିତ ମନ ॥

ଗୋଠରେ ଯଦି ହଜାରେ ହେବ ଗାଈ ଠିଆ ହୋଇଥିବେ, ଆଉ ସେମାନଙ୍କ ମଧ୍ୟରେ ବାଛୁରୀଟିଏ ଛାଡ଼ି ଦିଆଯିବ ତେବେ ସବୁ ଗାଈଙ୍କର ଏକ ପ୍ରକାର ରଙ୍ଗ ରୂପ ହୋଇଥିଲେ ବି ବାଛୁରୀ ଯାଇ ତା'ମା'ଠାରୁ ହିଁ ସ୍ତନ୍ୟ ପାନ କରିବ । ସେହିପରି ଯାହା ସହିତ ସମ୍ପର୍କ ସ୍ଥାପିତ ହେବାକୁ ଥିବ, ସଚ୍ଚରିତ୍ର କୁଳୀନ ପୁରୁଷର ମନ ତା'ର ଆଡ଼କୁ ଆକୃଷ୍ଟ ହେବ । ଯେଉଁମାନେ ସତ୍‌କୁଳରେ ଜନ୍ମ ହୋଇଛନ୍ତି ଓ ଯେଉଁମାନଙ୍କର ରଜବୀର୍ଯ୍ୟ ଶୁଦ୍ଧ ସେମାନଙ୍କର ମନ ଅଧର୍ମ ଆଡ଼କୁ ଯାଏ ନାହିଁ । ସେଥିପାଇଁ ପଣ୍ଡିତମାନେ କହିଛନ୍ତି—ସନ୍ଦେହାସ୍ପଦ ବିଷୟରେ ସଜ୍ଜନମାନଙ୍କ ଅନ୍ତଃକରଣ ପ୍ରବୃତ୍ତି ହିଁ ସବୁଠୁ ବଡ଼ ପ୍ରମାଣ । ଅଧର୍ମ କରିବା ଯାହାର ପ୍ରବୃତ୍ତି ନୁହେଁ ସେ ଯଦି କେବେ ଏଣୁତେଣୁ କିଛି କରି ଦିଅନ୍ତି, ତାହାହେଲେ ପୂର୍ବଜନ୍ମର ସମ୍ପର୍କ ହେତୁ ସେପରି କରିଲେ ବୋଲି ବୁଝିବାକୁ ହେବ ।

ମହର୍ଷି ସୂତ କହିଲେ—"ମୁନିଗଣ ! କଣ୍ୱଙ୍କ ଆଶ୍ରମରେ ଦୁଷ୍ମନ୍ତ ବହୁ ବିଚିତ୍ର କଥା ଦେଖିବାକୁ ପାଇଲେ । ସେଠାରେ ଥିବା ମୁନିମାନେ ତପସ୍ୟା କରୁଥିଲେ ।

ଅନେକ କର୍ମକାଣ୍ଡୀ ବ୍ରାହ୍ମଣ କେଉଁ ଯଜ୍ଞରେ କେଉଁ ମନ୍ତ୍ର ପ୍ରୟୋଗ କରିବାକୁ ହେବ ଏବଂ କେଉଁ କର୍ମ କିପରି ଅନୁଷ୍ଠିତ ହେବ, ଏହି ବିଷୟରେ ବାଦବିବାଦ କରୁଥିଲେ । ଅନେକ ଦାର୍ଶନିକ ସିଦ୍ଧାନ୍ତ ସମ୍ବନ୍ଧରେ ମଧ୍ୟ ଚର୍ଚ୍ଚା ଆଲୋଚନା ଚାଲିଥିଲା । ଆହୁରି ଅନେକ ତପସ୍ୱୀ ଯମ ନିୟମ ପାଳନ ପୂର୍ବକ ମୌନ ବ୍ରତ ଧାରଣ କରି ଆସନରେ ବସି ମନ୍ତ୍ରଜପ କରୁଥିଲେ । ଚିତ୍ରବିଚିତ୍ର ଆସନରେ ବସିଥିବା ଋଷିମାନେ ଠିକ ମୂର୍ତ୍ତିମାନ୍ ତପସ୍ୟା, ଜୀବନ୍ତ ଜ୍ଞାନ, ସାକ୍ଷାତ୍ ସଂଯମ ପରି ଦେଖାଯାଉଥିଲେ । ଏସବୁ ଦେଖି ରାଜା ମନେ ମନେ ସମସ୍ତଙ୍କୁ ପ୍ରଣାମ କଲେ । ରାଜା ସେତେବେଳେ ସାଧାରଣ ବେଶରେ ଥିଲେ । ବନ୍ଧୁଲୋକ କୁଳପତି ଭଗବାନ୍ କଣ୍ୱଙ୍କୁ ଦେଖିବା ପାଇଁ ଆସୁଥିଲେ । କିନ୍ତୁ କେହି ଦୁଷ୍ମନ୍ତଙ୍କ ଆଡ଼କୁ ବିଶେଷ ଧ୍ୟାନ ଦେଲେ ନାହିଁ । କେତେକ ବ୍ରହ୍ମଚାରୀ ହାତରେ ପଳାଶର ଦଣ୍ଡ ଧରି କୁଢ଼ି ଓ ଡାଲି ନେଇ ବଣକୁ କାଠ ଆଣିବା ପାଇଁ ଯାଉଥିବାର ରାଜା ଦେଖିଲେ । ସେମାନଙ୍କୁ ଦେଖି ଆଦର ଓ ସ୍ନେହର ସହିତ ରାଜା ଦୁଷ୍ମନ୍ତ କହିଲେ—"ବ୍ରହ୍ମଚାରୀଗଣ ! ଆପଣମାନେ କଣ୍ୱମୁନିଙ୍କ କୁଡ଼ିଆ ଦେଖାଇ ଦେଇପାରିବେ କି ?"

ବଡ଼ ବଡ଼ ଆଖି ଥିବା ସୁନ୍ଦର ବ୍ରହ୍ମଚାରୀ ଜଣେ ତାଙ୍କୁ କହିଲା—"ହେଇଟି ଯେଉଁ ବଡ଼ ବଡ଼ ଆମ୍ବ ଗଛ ଗହଳି ଦେଖାଯାଉଛି, ତା'ପଛ ଆଡ଼େ ଲମ୍ବାଳିଆ ହୋଇ ଯେଉଁ କୁଡ଼ିଆ ଦୁଇଟି ଦେଖାଯାଉଛି ସେଥିରେ ଭଗବାନ୍ କଣ୍ୱ ରହନ୍ତି । ଚାଲନ୍ତୁ ମୁଁ ଆପଣଙ୍କ ସାଙ୍ଗରେ ଯିବି ।"

ଏହା କହି ବ୍ରହ୍ମଚାରୀ ରାଜା ଦୁଷ୍ମନ୍ତଙ୍କୁ ସାଙ୍ଗରେ ନେଇଗଲେ ।

ସେହି କୁଡ଼ିଆ ଚାରିପଟେ ମାଟିର ପାଚେରି ଏତେ ଉଚ୍ଚ ହୋଇଥିଲା ଯେ ଭିତରର କୌଣସି କଥା ବାହାରକୁ ଦିଶୁ ନ ଥିଲା । ବାଉଁଶର ଗୋଟିଏ ଫାଟକ ଥିଲା । ଫାଟକ ଦୁଇପଟେ ଦୁଇଟି ଗଛରେ ମାଳତୀ ଲତା ମାଡ଼ିଥିଲା । ଲତାରେ ବହୁତ ଫୁଲ ଫୁଟିଥିଲା । ଫାଟକକୁ ଦେଖାଇ ଦେଇ ବ୍ରହ୍ମଚାରୀ କହିଲେ,—"ଆପଣ ଏଥର ଭିତରକୁ ଯାଇପାରନ୍ତି । ମୋ' ସାଙ୍ଗମାନେ ଦୂରକୁ ପଳାଇଗଲେଣି । ଏଥର ମୋତେ ବିଦାୟ ଦିଅନ୍ତୁ ।" ଏହା କହି ସେ ଦୌଡ଼ି ଦୌଡ଼ି ଚାଲିଗଲା ।

ଦ୍ୱାରଦେଶରେ ମନ୍ତ୍ରୀ ଓ ପୁରୋହିତଙ୍କୁ ଠିଆ କରାଇ ରାଜା ଏକୁଟିଆ ଆଶ୍ରମ ଭିତରକୁ ପ୍ରବେଶ କଲେ । ଆଶ୍ରମ ଭିତରେ ସବୁ କିଛି ବ୍ୟବସ୍ଥିତ ଢଙ୍ଗରେ ସଜା-ହୋଇ ଥିବାର ରାଜା ଦେଖିଲେ । ସବୁ ଗଛମୂଳେ ମଳା କରାଯାଇଥିଲା । ଚାରିକୋଣରେ ଲତା ମଣ୍ଡପ ତିଆରି ହୋଇଥିଲା । ସେଠାରେ ଥିବା ଏକ ସୁନ୍ଦର ପୁଷ୍କରିଣୀରେ ଅନେକ ପ୍ରକାରର ପଦ୍ମ ଫୁଟିଥିଲା । ଯଜ୍ଞଶାଳା ଲିପାପୋଛା ହୋଇ ପରିଷ୍କାର କରିଥିଲା । ସେଠାରେ କୁଡ଼ିଆ ଦୁଇଟି ବିଶେଷଭାବରେ ସଜାହୋଇଥିଲା । ଏସବୁ ଦେଖି ରାଜା ବୈକୁଣ୍ଠକୁ ଆସିଥିଲା ପରି ଅନୁଭବ କଲେ । କିନ୍ତୁ ସେ କୁଳପତି ଭଗବାନ୍ କଣ୍ୱଙ୍କୁ କେଉଁଠି ହେଲେ ଦେଖିବାକୁ ପାଇଲେ ନାହିଁ । କିଛି ସମୟ ଠିଆ

ହେବା ପରେ ସେ ବଡ଼ପାଟି କରି କହିଲେ,—"ଏଠି କିଏ ଅଛନ୍ତି ? ମୁଁ ଭଗବାନ୍ କଣ୍ୱଙ୍କୁ ସାକ୍ଷାତ କରିବା ପାଇଁ ଆସିଛି ।"

ରାଜା ଦେଖିଲେ ପାଖ ଲତାଗୃହ ଭିତରୁ ବେଣୀ ହଲାଇ ହଲାଇ ଲାଜ ଲାଜ ହୋଇ ଜଣେ ଅତ୍ୟନ୍ତ ସୁନ୍ଦରୀ ଯୁବତୀ ବାହାରିଲେ । ରାଜାଙ୍କ ପାଖକୁ ଆସି ମୁହଁ ତଳକୁ କରି ସେ ଠିଆ ହୋଇ ରହିଲେ । ମୁନିଙ୍କ ଆଶ୍ରମରେ ଲକ୍ଷ୍ମୀଙ୍କ ପରି, ମୂର୍ତ୍ତିମତୀ ତପସ୍ୟା ପରି ଅଥବା କାମରମଣୀ ରତିଙ୍କ ପରି ସେହି ଅନୁପମା ଯୁବତୀଙ୍କୁ ଦେଖି ରାଜାଙ୍କ ମନ ଚଞ୍ଚଳ ହୋଇ ଉଠିଲା । ସେ ଭାବିବାକୁ ଲାଗିଲେ—"ଏ ରମା ନା ସରସ୍ୱତୀ ? ଏ ତ ରତି ହୋଇ ନ ଥିବେ । ଉର୍ବଶୀ ଏଠାକୁ ବା କାହିଁକି ଆସିବେ ? ଏ ବନର ଅଧିଷ୍ଠାତ୍ରୀ ଦେବୀ ନୁହନ୍ତି ତ ? ନା ସୌନ୍ଦର୍ଯ୍ୟ ସ୍ୱୟଂ ଆକାର ଗ୍ରହଣ କରି ମୋତେ ସ୍ୱାଗତ ଜଣାଇବା ପାଇଁ ଆସି ପହଞ୍ଚିଗଲେ ? ନା ମୁନିଙ୍କ ଅନୁପସ୍ଥିତିରେ ତାଙ୍କର ତପସ୍ୟା ମୂର୍ତ୍ତିମତୀ ହୋଇ ମୋତେ ଆତିଥ୍ୟ ଦେବା ପାଇଁ ଚାଲିଆସିଛନ୍ତି ? ଏ ତ ଦେବ କନ୍ୟା ନୁହନ୍ତି ! ତପସ୍ୱିନୀ କନ୍ୟାମାନଙ୍କ ଦେହ ତ ଏପରି କୋମଳ ହୋଇ ରହିପାରିବନି । ରାଜା ଏହିପରି ନାନା ଭାବନାରେ ଚମକ୍ରିତ ଥିବାବେଳେ ସେହି ସୁନ୍ଦରୀ ବୀଣା ବିନନ୍ଦିତ ସ୍ୱରରେ କହିଲା—"ହେ ନରଦେବ ! ଆପଣଙ୍କୁ ମୁଁ ସ୍ୱାଗତ କରୁଛି । ମୋର ପିତା କିଛି ସମୟ ପୂର୍ବରୁ ଜଣେ ମୁନିଙ୍କ ସହିତ ବଣକୁ ଚାଲିଯାଇଛନ୍ତି । କାଲି ସୁଦ୍ଧା ସେ ନିଶ୍ଚୟ ଫେରିଆସିବେ ବୋଲି ଭାବୁଛି । ଆପଣ ରୁହନ୍ତୁ । ପାଦ ଧୋଇବା ପାଇଁ ଜଳ ନିଅନ୍ତୁ । ଆଚମନ ପାଇଁ ମୁଁ ପାଣି ଦେଉଛି । ମୋ' ପିତାଙ୍କ ପକ୍ଷରୁ ମୁଁ ଆପଣଙ୍କୁ ଅର୍ଘ୍ୟ ଦେଉଛି । ଆପଣ ଏହି ଆସନରେ ବସନ୍ତୁ ।"

ରାଜା ମନ୍ତ୍ର-ମୁଗ୍ଧ ହେଲା ପରି କିଛି ନ କହି ସେହି ଦେବମାୟା ପରି ସୁନ୍ଦରୀ ଯୁବତୀର କଥା ଶୁଣି ଚାଲିଥାନ୍ତି ଏବଂ ତାହାର କହିବା ଅନୁସାରେ ପାଦଧୋଇ ଆଚମନ କରି, ଶାସ୍ତ୍ରୀୟ ବିଧି ଅନୁସାରେ ଅର୍ଘ୍ୟ ଗ୍ରହଣ କରି ଆସନ ଉପରେ ବସିଲେ ।

ରାଜା ବସିଯିବା ପରେ ଶକୁନ୍ତଳା ପଚାରିଲା—"ଆପଣଙ୍କର ପରିଚୟ ମୁଁ ପଚାରିପାରେ କି ?"

ରାଜା କହିଲେ—"ଦେବି ! ମୁଁ ଏ ଦେଶର ରାଜା ଦୁଷ୍ମନ୍ତ । ମୃଗୟା କରିବା ପାଇଁ ବଣକୁ ଆସିଥିଲି । ଆଶ୍ରମ ଦେଖି ଭଗବାନ୍ କଣ୍ୱଙ୍କୁ ସାକ୍ଷାତ କରିବା ପାଇଁ ମୋର ଇଚ୍ଛା ହେଲା । ମୃଗୟା କରି କରି ମୁଁ କ୍ଳାନ୍ତ ହୋଇ ପଡ଼ିଥିଲି । ଶେଷରେ ମୋର ଗଳା ଶୁଖିଯାଉଥିଲା ; କିନ୍ତୁ ମୁନିଙ୍କ ମନୋହର ଆଶ୍ରମ ଦର୍ଶନ କରି ମୁଁ କ୍ଳେଶଶୋଷ ଭୁଲିଗଲିଣି । ତୁମର ମଧୁର କଥା ଓ ସସ୍ନେହ ଆତିଥ୍ୟ ପାଇ ମୁଁ କୃତାର୍ଥ ହୋଇଛି । ଭଗବାନଙ୍କ ଦର୍ଶନ ନ ପାଇବାରୁ ଅବଶ୍ୟ ମନ ଖରାପ ହେଉଛି; କିନ୍ତୁ ତୁମର ସ୍ନେହପୂର୍ଣ୍ଣ ବ୍ୟବହାର ପାଇ ମୋର ଯାତ୍ରା ସଫଳ ହେଲା ବୋଲି ଭାବୁଛି । ମୁଁ ମୋର ପରିଚୟ ଦେଲି । ଏଥର ମୁଁ ଆପଣଙ୍କ ପରିଚୟ ଜାଣିପାରିବି କି ?"

ସଲଜ୍ଜଭାବେ ସୁନ୍ଦରୀ କହିଲା—"ରାଜନ୍ ! ମୁଁ କଣ୍ବଙ୍କ ଝିଅ । ତାଙ୍କ ଅନୁପସ୍ଥିତିରେ ଅତିଥିମାନଙ୍କ ସେବା କରିବା ଦାୟିତ୍ୱ ମୋ'ର ଉପରେ ପଡ଼ିଥାଏ । ଆଦେଶ ଦିଅନ୍ତୁ, ମୁଁ ଆପଣଙ୍କ ପାଇଁ ଆଉ କ'ଣ କରିପାରିବି ?"

ରାଜା କହିଲେ—"ଭଗବାନ୍ କଣ୍ବ ତ ଆବାଲ୍ୟରୁ ବ୍ରହ୍ମଚାରୀ । ତୁମେ ତାଙ୍କର କନ୍ୟା କିପରି ହେଲ ? ଧର୍ମ ନିଜର ମର୍ଯ୍ୟାଦା ଛାଡ଼ିଦେଇ ପାରନ୍ତି; କିନ୍ତୁ କଣ୍ବ ତାଙ୍କର ମର୍ଯ୍ୟାଦା ଛାଡ଼ି ପାରିବେ ନାହିଁ; ତେଣୁ ଆପଣ ତାଙ୍କର ଝିଅ କିପରି ହେଲେ ? ମୋତେ ନିଜର ଠିକ୍ ପରିଚୟ ଦିଅନ୍ତୁ ।"

ଏହା ଶୁଣି ଶକୁନ୍ତଳା ଲଜ୍ଜିତ ହେଲା । ସେ କହିଲା—"ରାଜନ୍ ! ମୁଁ ଭଗବାନ କଣ୍ବଙ୍କର ପାଳିତା କନ୍ୟା, ମୁଁ କିପରି ଜନ୍ମ ହୋଇଥିଲି ତାହା ମୋର ପିତା ଜାଣନ୍ତି ।"

ରାଜାଙ୍କ ସହିତ ଶକୁନ୍ତଳା ଏହିପରି କଥାବାର୍ତ୍ତା ହେଉଥିବାବେଳେ ଶକୁନ୍ତଳାଙ୍କର ଜଣେ ସଖୀ ଆସି ସେଠାରେ ପହଞ୍ଚିଲା । ରାଜାଙ୍କୁ ଦେଖି ଦେଇ ସେ ଟିକିଏ ରହିଗଲା । ରାଜା ପଚାରିଲେ—"ଦେବି ! ତୁମ ସଖୀ କିପରି ଜନ୍ମ ହେଲେ ତାହା ଯଦି ଜାଣିଥାଅ ତେବେ ସେକଥା କୁହ । ଏହାଙ୍କ ପରିଚୟ ଜାଣିବା ପାଇଁ ମୋର ମନ ବ୍ୟାକୁଳ ହେଉଛି ।"

ସଖୀ କହିଲା—"ରାଜନ୍ ! ଦିନେ ଜଣେ ମହର୍ଷି ପଚାରିବାରୁ ସଖୀଙ୍କ ଜନ୍ମ ସମ୍ବନ୍ଧରେ ଭଗବାନ୍ କଣ୍ବ ଯାହା କହିଥିଲେ ତାହା ହିଁ ମୁଁ ଆପଣଙ୍କୁ କହୁଛି । ଆପଣ ମନ ଦେଇ ସେହି ମନୋରଞ୍ଜକ କଥା ଶୁଣନ୍ତୁ ।"

ମହର୍ଷି ସୂତ କହିଲେ—"ମୁନିଗଣ ! ସଖୀର କଥା ଶୁଣି ରାଜା ଖୁବ୍ ଆଗ୍ରହୀ ହୋଇଉଠିଲେ । ତାଙ୍କର ଉତ୍କଣ୍ଠା ଦେଖି ସଖୀ ଶକୁନ୍ତଳାଙ୍କ ଜନ୍ମ କାହାଣୀ କହିବା ଆରମ୍ଭ କଲେ ।"

## ଛପ୍ପୟ

କହୀ ଭୂପ-କୋ ୟହାଁ ? ସୁନତ ଇକ ଯୁବତୀ ଆଈ ।
ସହଜ ସୁନ୍ଦରୀ ନିରଖି ନୃପହୁଁ ମନମହୁଁ ସକୁଚାଈ ।।
ଲଜ୍ଜା ତେଁ ସିର ନାଇ ଅର୍ଘ୍ୟ ଦୈ ଆସନ ଦୀହ୍ନୋଁ ।
କରେ ଭେଁଟ ଫଲ-ଫୂଲ ଯଥାବିଧି ସ୍ବାଗତ କୀହ୍ନୋଁ ।।
କରି ସ୍ବାଗତ ସ୍ବୀକାର ଜବ, ନୃପ ପରିଚୟ ପୂଛନ ଲଗେ ।
କହ୍ୟୌ ସୁତା ହୌଁ କଣ୍ବକୀ, ପୂଛେଁ ନୃପ-ଋଷି ପିତୁ ସଗେ ।।



# ଶକୁନ୍ତଳା ଜନ୍ମ

ବିଶ୍ୱାମିତ୍ରାତ୍ମଜୈବାହଂ ତ୍ୟକ୍ତା ମେନକୟା ବନେ ।
ବେଦୈତଦ୍ ଭଗବାନ୍ କଣ୍ୱୋ ବୀର କିଂ କରବାମ ତେ ॥
ଆସ୍ୟତାଂ ହ୍ୟରବିନ୍ଦାକ୍ଷ ଗୃହ୍ୟତାମର୍ହଣଂ ଚ ନଃ ।
ଭୁଜ୍ୟତାଂ ସନ୍ତି ନୀବାରା ଉଷ୍ୟତାଂ ଯଦି ରୋଚତେ ॥

(ଶ୍ରୀ ଭା ୯ସ୍କ, ୨୦ଶ ଅ, ୧୩-୧୪ ଶ୍ଳୋ)

## ଛପ୍ପୟ

କଣ୍ୱ ନ କୀନ୍ହ୍ୟୋ ବ୍ୟାହ ଭଇ ପୁତ୍ରୀ ତୁମ କୈସେ ।
ସଖୀ କହ୍ୟୋ—"ନୃପ! କହୁଁ ସୁତା ମୁନିକୀ ହୁଇ ଜୈସେ ।'
ବିଶ୍ୱାମିତ୍ର ମହର୍ଷି କରେଁ ତପ ଉର୍ ଡର୍ୟୋ ସୁରପତି ।
କରନ ତପସ୍ୟା ଭଙ୍ଗ ପଠାଇ ହୁରଲଲନା ରତି ॥
ପରମ ସୁନ୍ଦରୀ ମେନକା, ରତି ସଙ୍ଗ ଭେଜୀ ମୁନି ନିକଟ ।
ଉରପତି ପହୁଁଚୀ ସୁରବଧୂ, କରହୁଁ କହାଁ ମୁନି ତପ ବିକଟ ॥

କମଳର ଅନ୍ୟ ନାମ ପଙ୍କଜ (ପଦ୍ମ) । ପଙ୍କରୁ ପଙ୍କଜ ଜାତ ହୁଏ, ତଥାପି ତାହା ଦେବତାଙ୍କ ମସ୍ତକ ମଣ୍ଡନ କରିଥାଏ । କୋଇଲା ଖଣିରୁ ମୂଲ୍ୟବାନ୍ ହୀରା ବାହାରିଥାଏ । ଏହାକୁ ଲୋକେ ବହୁମୂଲ୍ୟ ରତ୍ନ ରୂପେ ଗଣନା କରନ୍ତି । ଗଙ୍ଗାଜଳ ସର୍ବଦା ପବିତ୍ର । ଗାଈ ଯେଉଁ ଜାତିର ହେଉ ପଛକେ ତାର ଦୁଧ ପବିତ୍ର । ସେହିପରି କନ୍ୟା ରତ୍ନ ରୂପେ ବିବେଚିତ ହୁଏ । ନୀଚ କୁଳରେ ଜାତ ହୋଇଥିବା କନ୍ୟା ମଧ୍ୟ ନିର୍ଦ୍ଦୋଷା ବୋଲି ଶାସ୍ତ୍ରକାରମାନେ ମତ ଦିଅନ୍ତି । ତେଣୁ ସତ୍କୁଳ ଜାତ ଓ ମୁନିମାନଙ୍କ ପାଳିତା କନ୍ୟାରତ୍ନକୁ କ୍ଷତ୍ରିୟମାନେ ଆନନ୍ଦରେ ଗ୍ରହଣ କରୁଥିଲେ ମଧ୍ୟ କନ୍ୟା ତାଙ୍କଠାରୁ ଉଚ୍ଚବର୍ଣ୍ଣର କି ନୁହେଁ ତାହା ରାଜାମାନେ ବିଚାର କରୁଥିଲେ । ଉଚ୍ଚବର୍ଣ୍ଣର କନ୍ୟା ଗ୍ରହଣ କଲେ ବିଲୋମ ସଙ୍କରତା ସୃଷ୍ଟି ହୁଏ । ତେଣୁ ସମାଜରେ ସେପରି ବିବାହକୁ ନିନ୍ଦା କରାଯାଉଥିଲା । ନିଜ ବର୍ଣ୍ଣ ଜାତି ଅଥବା ନିଜ ବର୍ଣ୍ଣଠାରୁ ନିମ୍ନ ବର୍ଣ୍ଣ

ଜାତ କନ୍ୟା ଗ୍ରହଣ ବର୍ଣ୍ଣାଶ୍ରମୀ ଦ୍ୱିଜାତିମାନଙ୍କ ପାଇଁ ଶ୍ରେୟସ୍କର ବୋଲି କୁହାଯାଇଛି । ଏଣୁ ବିବାହ ପୂର୍ବରୁ କନ୍ୟାର କୁଳ, ଗୋତ୍ର ଆଦି ଜାଣିବା ଆବଶ୍ୟକ ହୁଏ ।

ମହର୍ଷି ସୂତ କହିଲେ—"ମୁନିଗଣ ! ମହାରାଜା ଦୁଷ୍ମନ୍ତ ଯେତେବେଳେ ସଖୀଠାରୁ ଶକୁନ୍ତଳାଙ୍କ ଜନ୍ମବୃତ୍ତାନ୍ତ ଶୁଣିବାକୁ ଅତ୍ୟନ୍ତ ଉତ୍କଣ୍ଠିତ ହୋଇ ପଡ଼ିଲେ ସେତେବେଳେ ସଖୀ ଜଣକ କହିବାକୁ ଆରମ୍ଭ କଲା—"ରାଜନ୍ ! ମୋ' ସଖୀର ଜନ୍ମ କାହାଣୀ ଏଥର ଶୁଣନ୍ତୁ ।

ପୂର୍ବ କାଳରେ ରାଜା ବିଶ୍ୱାମିତ୍ର ବ୍ରହ୍ମର୍ଷି ହେବା ପାଇଁ କଠିନ ତପସ୍ୟା କରୁଥିଲେ । ତାଙ୍କର କଠୋର ତପସ୍ୟାରେ ବିଚଳିତ ହୋଇ ଦେବରାଜ ଇନ୍ଦ୍ର ଶଙ୍କିତ ଚିତ୍ତରେ ଭାବିଲେ—ମୁନି ତପସ୍ୟା କରି ମୋର ଇନ୍ଦ୍ରପଦ ଛଡ଼ାଇନେବାକୁ ପ୍ରାୟ ଚେଷ୍ଟା କରୁଛନ୍ତି । ଏହା ଭାବି ମୁନିଙ୍କ ତପସ୍ୟାରେ ବିଘ୍ନ ଘଟାଇବା ପାଇଁ ସେ ସ୍ଥିର କଲେ । ସ୍ୱର୍ଗର ସର୍ବଶ୍ରେଷ୍ଠ ସୁନ୍ଦରୀ ମେନକାଙ୍କୁ ଡକାଇ ଦେବରାଜ କହିଲେ—"ସୁନ୍ଦରି ! ତୁମେ ମୋର ଏକ କାର୍ଯ୍ୟ କରିଦିଅ । ଯେପରି ହେଉ ତୁମେ ବିଶ୍ୱାମିତ୍ରଙ୍କ ତପସ୍ୟା ଭଙ୍ଗକର ।"

ମେନକା କହିଲା—"ଦେବ ! ମୋ' ଦ୍ୱାରା ଏପରି କଠୋର କାର୍ଯ୍ୟ ସମ୍ଭବ ନୁହେଁ ।"

ଦେବରାଜ ପଚାରିଲେ—"କାହିଁକି ନୁହେଁ ?"

ମେନକା ଉତ୍ତର ଦେଲା—"କାରଣ ମୁନି ବିଶ୍ୱାମିତ୍ର ଭୟଙ୍କର କ୍ରୋଧୀ ।"

ଇନ୍ଦ୍ର କହିଲେ—"କାମଭାବ ବୃଦ୍ଧି ପାଇଲେ କ୍ରୋଧ ଶାନ୍ତ ହୋଇଯାଏ । ସୌନ୍ଦର୍ଯ୍ୟ ଆଗରେ କ୍ରୋଧର କୌଣସି ଗୁରୁତ୍ୱ ରହେ ନାହିଁ । ତେଣୁ ତୁମର ଭୟର କୌଣସି କାରଣ ନାହିଁ ।"

ମେନକା କହିଲା—"ମୋ'ର ନିଜ ସୌନ୍ଦର୍ଯ୍ୟ ଉପରେ ଏତେ ଭରସା ନାହିଁ ।"

ଦେବରାଜ କହିଲେ—"ଆଗ ତୁମେ ଯାଅ । ତୁମ ସାଙ୍ଗରେ ବସନ୍ତ, ରତି, ମଳୟାନିଳ, କାମ ପ୍ରଭୃତିଙ୍କୁ ନେଇଯାଅ ।"

ମେନକାର ଅନ୍ୟ ଉପାୟ ନ ଥିଲା । ପ୍ରଭୁଙ୍କର ଆଜ୍ଞାକୁ ଅବଜ୍ଞା କରିବା ସମ୍ଭବ ନୁହେଁ । ତେଣୁ ସେ ବାଧ୍ୟ ହୋଇ ମୁନି ବିଶ୍ୱାମିତ୍ରଙ୍କ ପାଖକୁ ଗଲା । ସେଠାରେ ନିଜର ସହକର୍ମୀଙ୍କ ସହିତ ଉପସ୍ଥିତ ହୋଇ ମେନକା ନିଜର ହାବଭାବ କଟାକ୍ଷ ଓ ମଧୁର ସଙ୍ଗୀତ ଦ୍ୱାରା ମୁନିଙ୍କ ମନକୁ ମୋହିତ କରିବାକୁ ଲାଗିଲା । ସମୟକ୍ରମେ ମୁନିଙ୍କ ମନ ଚଞ୍ଚଳ ହୋଇଉଠିଲା । ମୁନି ବିଶ୍ୱାମିତ୍ର କାମ ମୋହିତ ହୋଇ ତାଙ୍କ ଆଶ୍ରମରେ

ରହିବା ପାଇଁ ମେନକାକୁ ନିମନ୍ତ୍ରଣ କଲେ । ସେହି ଅଭିପ୍ରାୟ ନେଇ ତ ମେନକା ସେଠାକୁ ଆସିଥିଲା । ତେଣୁ ମୁନିଙ୍କ ସାଦର ନିମନ୍ତ୍ରଣ ପାଇ ସେ ତାଙ୍କ ଆଶ୍ରମକୁ ଗଲା ଓ ମୁନିଙ୍କ ସହିତ ପରମ ଆନନ୍ଦରେ ଆଶ୍ରମରେ ରହିବାକୁ ଲାଗିଲା । ମୁନି ସେହି ସ୍ୱର୍ଗ-ବେଶ୍ୟାର ଫାନ୍ଦରେ ଏପରି ପଡ଼ିଗଲେ ଯେ ଯାଗ ଯଜ୍ଞ, ଯୋଗଧ୍ୟାନ, ଜପତପ ସବୁକିଛି ଭୁଲିଯାଇ କେବଳ ମେନକାର ମନକୁ ଖୁସି କରାଇବାରେ ଅହୋରାତ୍ର ବ୍ୟସ୍ତ ରହିଲେ । ମେନକାର ଅନୁପମ ରୂପ, ଅନବଦ୍ୟ ସୌନ୍ଦର୍ଯ୍ୟରେ ମୁନି ଏପରି ନିମଜ୍ଜିତ ହୋଇ ପଡ଼ିଲେ ଯେ ସମୟର ଗତିକୁ ମଧ୍ୟ ସେ ଭୁଲିଗଲେ । କେବେ ଦିନ ଯାଏ ରାତି ଆସେ ଓ କେବେ ରାତି ଯାଇ ଦିନ ହୁଏ ତାହା ମୁନିଙ୍କୁ ଜଣାପଡ଼ିଲା ନାହିଁ ।

ଦିନେ କିନ୍ତୁ ମୁନିଙ୍କ ମନରେ ଚେତା ପଶିଲା । ଆରେ. ଏସବୁ କ'ଣ ହେଲା ? ମୁଁ ତପସ୍ୟା ଛାଡ଼ି କ'ଣ ସଂସାରରେ ପଶିଗଲି । ଏହା ନିଶ୍ଚୟ ଦେବମାୟା । ଲାଲ୍ ଲାଲ୍ ଆଖି କରି ସେ କହିଲେ—"ମେନକେ ! ମୋର ତପସ୍ୟା ଭଙ୍ଗ କରିବା ପାଇଁ ତୁ ଆସିଛୁ ନାଁ ?"

ଏକଥା ଶୁଣି ମେନକା ଭୟରେ ଥରଥର ହୋଇ କମ୍ପିବାକୁ ଲାଗିଲା । ଯେଉଁ ଡର ତାକୁ ଖାଉଥିଲା ସତକୁ ସତ ତାହା ପାଖକୁ ଆସିଗଲା । ଅତ୍ୟନ୍ତ ଭୟଭୀତ ହୋଇ ତଳେ ମୁଣ୍ଡ କୋଡ଼ି ହୋଇ ମେନକା କାନ୍ଦି କାନ୍ଦି ଗଦ୍‌ଗଦ କଣ୍ଠରେ କହିଲା—"ମୁନିବର ! ଏଥିରେ ମୋର କିଛି ଦୋଷ ନାହିଁ । ମୋତେ ଦେବରାଜ ଇନ୍ଦ୍ର ପଠାଇଛନ୍ତି । ଆପଣ ମୋତେ କ୍ଷମା କରନ୍ତୁ, ମୋତେ ଅଭୟ ପ୍ରଦାନ କରନ୍ତୁ ।"

ସୁରସୁନ୍ଦରୀ ମେନକା କ୍ରନ୍ଦନ କରୁଥିବାର ଦେଖି ମୁନିଙ୍କ ମନରେ ଦୟା ଜାତ ହେଲା । ସେ କହିଲେ—"ସୁନ୍ଦରି ! ତୁମର ବା କାମଦେବଙ୍କର କିଛି ଦୋଷ ନାହିଁ । ସବୁ ଦୋଷ ମୋର । ମୁଁ ମନ ଇନ୍ଦ୍ରିୟମାନଙ୍କୁ ଜୟ କରି ଥାଆନ୍ତି ତାହାହେଲେ ତପସ୍ୟା ଛାଡ଼ି କାମଜାଲରେ କେବେହେଲେ ପଡ଼ି ନ ଥାନ୍ତି । ମୋ' ମନରେ ହିଁ ଦୋଷ ରହିଛି । ତୁମର କଲ୍ୟାଣ ହେଉ । ଏଥର ତୁମେ ନିଶ୍ଚିନ୍ତରେ ସ୍ୱପୁରକୁ ଫେରିଯାଅ । ମଣିଷ ବିଷୟବାସନାଗ୍ରସ୍ତ ନ ହେଲେ ନାରୀ ତାହାର କିଛି କରିପାରିବ ନାହିଁ । ତୁମେ ସବୁ ଯେଉଁଠାକୁ ଇଚ୍ଛା ହେଉଛି ସେଠାକୁ ଚାଲିଯାଅ । ଏଥର ମୁଁ ଘୋର ତପସ୍ୟା ଆରମ୍ଭ କରିବି । ଏହା ଶୁଣି ମେନକା ପିଣ୍ଡରେ ପ୍ରାଣ ପଶିଲା । ମୁନିଙ୍କ ପାଦ ଛୁଇଁ ପ୍ରଣାମ କରି ସେ ସେଠାରୁ ସାଙ୍ଗେ ସାଙ୍ଗେ ଚାଲିଗଲା । କିନ୍ତୁ ଫେରିବାବେଳକୁ ମେନକା ଗର୍ଭବତୀ ଥିଲା । ବିଶ୍ୱାମିତ୍ରଙ୍କ ତେଜସ୍ୱୀ ବୀର୍ଯ୍ୟ ତା' ଗର୍ଭରେ ବଢ଼ୁଥିଲା । ମୁନିଙ୍କ ଆଶ୍ରମଠାରୁ ଦୂରରେ ମାଲିନୀ ନଦୀ କୂଳରେ ସିଂହ ବ୍ୟାଘ୍ର ପୂର୍ଣ୍ଣ ନିର୍ଜନ ବନରେ ମେନକାଙ୍କ ଗର୍ଭରୁ ଝିଅଟିଏ ଜନ୍ମ ଯଥା ସମୟରେ ଜନ୍ମଗ୍ରହଣ କଲା । କନ୍ୟାଟିକୁ ସେହି ନଦୀକୂଳର ବଣ ଭିତରେ ଛାଡ଼ିଦେଇ ସ୍ୱର୍ଗର ସ୍ୱଚ୍ଛନ୍ଦଚାରିଣୀ କାମିନୀ

ମେନକା ସ୍ୱର୍ଗକୁ ଫେରିଗଲା । ପୃଥିବୀକୁ ଆସି ସେ ମାନବୀ ରୂପ ଧାରଣ କରିଥିବାରୁ ଗର୍ଭବତୀ ହୋଇଥିଲା । ତା' ନ ହେଲେ ସ୍ୱର୍ଗର ରମଣୀମାନଙ୍କର ସ୍ୱର୍ଗରେ ସନ୍ତାନ ଜନ୍ମ ହୁଅନ୍ତି ନାହିଁ ।

ସେହି ମାଳିନୀ ନଦୀ କୂଳରେ ଭଗବାନ୍ କଣ୍ୱଙ୍କ ଆଶ୍ରମ । ସକାଳେ ନଦୀରେ ସ୍ନାନ କରିବା ପାଇଁ କୁଳପତି କଣ୍ୱ ପ୍ରତିଦିନ ଆସନ୍ତି । ଦିନେ ନିର୍ଜନ ବନରେ ବନ୍ଧ୍ୟପୁଷ୍ପ ତୁଲ୍ୟ ଅତ୍ୟନ୍ତ ସୁନ୍ଦର ସଦ୍ୟଜାତ କନ୍ୟାଟିଏ ପଡ଼ିଥିବାର ସେ ଦେଖିଲେ । ପିଲାଟିକୁ ଚାରିପାଖରୁ ଶକୁନ୍ତ (ପକ୍ଷୀ) ଘେରି ଠିଆହୋଇଥାନ୍ତି । କେହି କେହି ନିଜ ଡେଣା ମେଲାଇ ତାକୁ ଛାଇ ଦେଉଥାନ୍ତି । କେହି କେହି ତାକୁ ଡେଣାରେ ବିଞ୍ଚୁଥାଆନ୍ତି । କନ୍ୟାଟିକୁ ଦେଖି ମୁନିଙ୍କ ମନରେ ବଡ଼ ଦୟା ହେଲା । କରୁଣାବିଗଳିତ ହୋଇ ମୁନି ସେହି ଝିଅଟିକୁ ଉଠାଇ ନେଇ ଛାତିରେ ଲଗାଇ ନିଜ ଆଶ୍ରମକୁ ନେଇ ଆସିଲେ ।

ପାଖରେ ଥିବା ଜଣେ ବୁଢ଼ା ତପସ୍ୱିନୀଙ୍କ ଆଡ଼କୁ ହାତ ଦେଖାଇ ସଖୀ ପୁଣି କହିଲା—ଏ ଯେଉଁ ବୁଢ଼ା ତପସ୍ୱିନୀଙ୍କୁ ଦେଖୁଛନ୍ତି, ମୁନି କନ୍ୟାକୁ ଆଣି ଏହାଙ୍କୁ ବଢ଼ାଇ ଦେଇଥିଲେ । ସେ ନିଜର ଝିଅପରି କନ୍ୟାଟିକୁ ଲାଳନପାଳନ କଲେ । ଶକୁନ୍ତମାନେ ରକ୍ଷା କରିଥିବାରୁ ମୁନି କନ୍ୟାର ନାମ ଦେଲେ ଶକୁନ୍ତଳା । ଏ ସେହି ଶକୁନ୍ତଳା । ନିଜ ଝିଅପରି ମୁନି ଏହାଙ୍କୁ ପାଳିଥିବାରୁ ଶକୁନ୍ତଳା ମୁନିଙ୍କୁ ବାପା ବୋଲି ଡାକନ୍ତି । ମୁନି ଏହାଙ୍କୁ ପ୍ରାଣଠାରୁ ବଳି ଅଧିକ ସ୍ନେହ କରନ୍ତି । ଏବେ ଶକୁନ୍ତଳା ବଡ଼ ହୋଇଗଲାଣି । ତେଣୁ ମୁନି ଏହାର ବିବାହ କଥା ଭାବୁଛନ୍ତି ଓ ଯୋଗ୍ୟ ପାତ୍ର ମଧ୍ୟ ଖୋଜୁଛନ୍ତି ।

ଏକଥା ଶୁଣିବାମାତ୍ରେ ଶକୁନ୍ତଳା କୃତ୍ରିମ କ୍ରୋଧରେ ଆଖି ବଡ଼ ବଡ଼ କରି ସଖୀ ଆଡ଼କୁ ଚାହିଁଲା ଓ ସଖୀ ହାତକୁ ଚିପି ଦେଇ ଏସବୁ କଥା କହିବାକୁ ମନାକଲା । ସଖୀ ଖେଁ କରି ହସିଦେଲା । ଶକୁନ୍ତଳା ଲାଜେଇଗଲା । ନିଜର ମାନସିକ ଅବସ୍ଥା ଲୁଚାଇବା ପାଇଁ ଶକୁନ୍ତଳା କହିଲା—"ହେ ନରଦେବ ! କଣ୍ୱ ଭଗବାନ୍ ମୋର ପାଳିତ ପିତା ଅଟନ୍ତି । ମୁଁ ରାଜର୍ଷି ବିଶ୍ୱାମିତ୍ର ଓ ମେନକାଙ୍କ କନ୍ୟା ବୋଲି ତାଙ୍କଠାରୁ ଶୁଣିଥିଲି । ମୋର ମା' ଜନ୍ମବେଳୁ ମୋତେ ବଣରେ ଛାଡ଼ିଦେଇ ଚାଲିଯାଇଥିଲା । ଭଗବାନ୍ କଣ୍ୱ ହିଁ ମୋତେ ପାଳନ ପୋଷଣ କରିଛନ୍ତି । ମୋର ଜନ୍ମଦାତା ପିତାଙ୍କୁ ତ ମୁଁ କେବେହେଲେ ଦେଖି ନାହିଁ । ମୁଁ କଣ୍ୱ ମୁନିଙ୍କୁ ହିଁ ମୋର ସର୍ବସ୍ୱ ବୋଲି ଭାବୁଛି ।

ଆପଣ ମୋ' କଥା ସବୁ ଶୁଣିଲେ । ବର୍ତ୍ତମାନ ମୋର ପ୍ରାର୍ଥନା ଶୁଣନ୍ତୁ । ଜଙ୍ଗଲରେ ଆପେ ଆପେ ଜନ୍ମ ହେଉଥିବା ନୀବାର ଧାନର ଚାଉଳ ହିଁ ମୁନିମାନେ ରାନ୍ଧି ଖାଇଥାନ୍ତି । ଏହି ଚାଉଳରେ ମୁନିମାନେ ଦେବତା, ପିତୃ ଓ ଅତିଥିମାନଙ୍କୁ ତୃପ୍ତ କରିଥାନ୍ତି । ଏହି ଚାଉଳର ଅନ୍ନ ପ୍ରସ୍ତୁତ ହୋଇ ରହିଛି । ଆପଣ ତ ରାଜା, ପ୍ରତିଦିନ

ଛପନ ପ୍ରକାରର ବ୍ୟଞ୍ଜନ ଖାଉଥିବେ । ଏ ଅନ୍ନ ଆପଣଙ୍କୁ ଭଲ ଲାଗି ନ ପାରେ । କିନ୍ତୁ ଆପଣ ଆମ ପ୍ରତି ସ୍ନେହ ଦେଖାଇ ଏହାକୁ ଖାଇଦିଅନ୍ତୁ । ଆମର ଆତିଥ୍ୟକୁ ସ୍ୱୀକାର କରି ଆମକୁ କୃତାର୍ଥ କରନ୍ତୁ ।"

ରାଜା କହିଲେ—"ହେ ଦେବି ! ତୁମକୁ ଦେଖି ମୁଁ ସବୁକିଛି ପାଇସାରିଛି । ତୁମର ମିଠା କଥା ମୋତେ ପରମ ତୃପ୍ତି ଦେଇଛି । ତୁମକୁ ଯେତେ ଦେଖିଲେ ମଧ୍ୟ ଆହୁରି ଦେଖିବାକୁ ଇଚ୍ଛା ହେଉଛି । ତୁମଠାରୁ ସତ୍କାର ପାଇ ମୁଁ ସର୍ବଥା ସତ୍କୃତ ହୋଇଛି ।"

ଅତ୍ୟନ୍ତ ଉତ୍ସୁକତା ଓ ଅନୁରାଗପୂର୍ଣ୍ଣ ସ୍ୱରରେ ନଜର ସ୍ନେହଭରା ଦୃଷ୍ଟି ଲୁଚାଇ ଶକୁନ୍ତଳା କହିଲା—"ହେ କମଳ ନୟନ ! ବାପା ଆଶ୍ରମରେ ନ ଥିବାରୁ ଆପଣଙ୍କୁ ସତ୍କାର କରିବା ଦାୟିତ୍ୱ ମୋର । ଆପଣ ଆଦୌ ସଙ୍କୋଚ କରନ୍ତୁ ନାହିଁ । କଣ କଲେ ଆପଣଙ୍କୁ ସନ୍ତୋଷ ଲାଗିବ ସେଥିପାଇଁ ମୋତେ ଆଦେଶ ଦିଅନ୍ତୁ । ଏଠି ରାତିଟିଏ ରୁହନ୍ତୁ ବୋଲି ଆମର ଇଚ୍ଛା । ସକାଳ ସୁଦ୍ଧା ବାପା ଫେରିଆସିବେ । ତାଙ୍କୁ ସାକ୍ଷାତ କରି ଆପଣ ଫେରିଯିବେ । ଆପଣ ରାଜା, ତେଣୁ ଆପଣଙ୍କୁ ଆଉ ଅଧିକ କଣ କହି ଏଠାରେ ରଖାଇପାରିବୁ ? ଯଦି କିଛି ବିଶେଷ କାର୍ଯ୍ୟ ନ ଥିବ ତେବେ ଆପଣ ଏଠାରେ ଆଜି ରାତିଟି ରହିଯାଆନ୍ତୁ ।"

ରାଜା କହିଲେ—"ନାଁ, ସଙ୍କୋଚର ତ ପ୍ରଶ୍ନ ଉଠୁ ନାହିଁ । ଏଯାଏ ଯାହା ବା ନାମମାତ୍ର ସଙ୍କୋଚ ଥିଲା ତାହା ଦୂର ହୋଇଛି । ମୁଁ ତୁମକୁ ବ୍ରାହ୍ମଣ ତପସ୍ୱୀଙ୍କ କନ୍ୟା ବୋଲି ଭାବିଥିଲି । ତୁମେ ଜଣେ ରାଜର୍ଷିଙ୍କ କନ୍ୟା ବୋଲି ଜାଣିବା ପରେ ଆଉ ସଙ୍କୋଚ କଣ ? ମୁଁ ଏବେ ମୋର ମନ୍ତ୍ରୀ ଓ ପୁରୋହିତଙ୍କୁ ଡାକି ଆଣୁଛି । ସେମାନଙ୍କ ପରାମର୍ଶ ନେଇ ଯଦି ସମ୍ଭବ ହେବ ଏଠାରେ ତୁମର ଆତିଥ୍ୟ ଗ୍ରହଣ କରି ରାତିଟିଏ କଟାଇବି । ଏହି ଆଶ୍ରମରେ ରହିପାରିଲେ ମୁଁ ସୁଖୀ ହେବି ।"

ଏହା କହି ରାଜା ଆଶ୍ରମ ଦ୍ୱାରଯାଏ ଆସିଲେ । ସେଠି ତାଙ୍କର ମନ୍ତ୍ରୀ ଓ ପୁରୋହିତ ବସିଥିଲେ । ରାଜା କହିଲେ—"ଭଗବାନ୍ କଣ୍ୱ ଏଠାରେ ନାହାନ୍ତି । ଆଜି ରାତିକ ଏଠାରେ ରହି ଯିବାକୁ ଇଚ୍ଛା କରୁଛି । ତୁମେମାନେ ଶିବିରକୁ ଫେରିଯାଅ । ଋଷିଙ୍କ ଆଶ୍ରମଠାରୁ ଦୂରରେ ରହିବାକୁ ସମସ୍ତଙ୍କୁ ନିର୍ଦ୍ଦେଶ ଦେବାକୁ ସେନାପତିଙ୍କୁ କହିଦେବ । ଆମ ଯୋଗୁଁ ଋଷିମାନେ ଯେପରି କିଛି କଷ୍ଟ ନ ପାଆନ୍ତି ।"

ମନ୍ତ୍ରୀ କହିଲେ—"ଏଠାକୁ ମହାରାଜଙ୍କ ଅଙ୍ଗରକ୍ଷକ ଓ ଅନ୍ୟ ସୈନ୍ୟମାନଙ୍କୁ ପଠାଇଦେବି କି ?"

ରାଜା କହିଲେ—"ନା, କାହାକୁ ହେଲେ ଏଠାକୁ ପଠାଇବାର ଆବଶ୍ୟକତା ନାହିଁ । ଋଷି ଆଶ୍ରମରେ ଅଙ୍ଗରକ୍ଷକର ପ୍ରୟୋଜନ କ'ଣ ? ଏଠାରେ ତ ଋଷିମାନଙ୍କ ତପସ୍ୟା ସମସ୍ତଙ୍କୁ ରକ୍ଷା କରେ । ମୁଁ ଏଠି ଏକୁଟିଆ ରହିବି । ମୁଁ ଏଠି ଅଛି ବୋଲି କାହାକୁ କହିବା ମଧ୍ୟ ଦରକାର ନାହିଁ ।"

ମନ୍ତ୍ରୀ କହିଲେ—"ଯଥା ଆଜ୍ଞା ମହାରାଜ !"

ଏହା କହି ମହାରାଜଙ୍କୁ ଅଭିବାଦନ କରି ମନ୍ତ୍ରୀ ପୁରୋହିତଙ୍କ ସହିତ ଶିବିରକୁ ଚାଲିଗଲେ ।

ମହର୍ଷି ସୂତ କହିଲେ—"ମୁନିଗଣ ! ଶକୁନ୍ତଳାଙ୍କ ପ୍ରତି ରାଜା ଆସକ୍ତ ହୋଇ ପଡ଼ିଥିଲେ । ଶକୁନ୍ତଳା କ୍ଷତ୍ରିୟ କନ୍ୟା ବୋଲି ଜାଣିବା ପରେ ସେ ଖୁବ୍ ଖୁସି ହୋଇଥିଲେ । ତାଙ୍କର ପ୍ରତ୍ୟେକ ଭାବଭଙ୍ଗୀରୁ ଅନୁରାଗ ପ୍ରକାଶ ପାଉଥିଲା । ଏଣେ ଶକୁନ୍ତଳା ମଧ୍ୟ ଆଜିଯାଏ ଏପରି ସୁନ୍ଦର ପୁରୁଷ ଦେଖି ନ ଥିଲେ । ସେ ଆବାଲ୍ୟରୁ ମୃଗଶିଶୁମାନଙ୍କ ସହ ଖେଳିଥିଲେ । ତା' ଆଖିରେ ଥିଲା ଶିଶୁ ସୁଲଭ ସରଳତା । କିନ୍ତୁ ରାଜା ଦୁଷ୍ମନ୍ତଙ୍କୁ ଦେଖିବା ପରେ ତା'ର ବଡ଼ ବଡ଼ ଆଖି ଦୁଇଟିରେ ଅନୁରାଗର ଚିହ୍ନ ସ୍ପଷ୍ଟ ବାରି ହୋଇପଡ଼ିଲା । ତେଣୁ ମୁହଁରେ ଲଜ୍ଜା, ସଙ୍କୋଚ, ଅନୁରାଗ, ଉତ୍ସୁକତା ଆଦି ଭାବ ଫୁଟି ଉଠୁଥିଲା ଓ ଅପସରି ଯାଉଥିଲା । ଏହି ସମୟରେ ରାଜା ଆସି ଶକୁନ୍ତଳାଙ୍କ ନିକଟରେ ବସି ପଡ଼ିଲେ । ବର୍ତ୍ତମାନ ରାଜା ନିଜର ମନକଥା କହିବାକୁ ଆରମ୍ଭ କଲେ । ଆଶ୍ରମରେ ସେତେବେଳେ ଶକୁନ୍ତଳା, ତା'ର ଜଣେ ସଖୀ ଓ ବୃଦ୍ଧା ତାପସୀଙ୍କ ଛଡ଼ା ଅନ୍ୟ କେହି ନ ଥିଲେ ।

## ଛପ୍ପୟ

ଯୌବନ ଭୂପ ନିହାରି ଭୟେ ମୋହିତ ମୁନି କନ୍ୟା ।<br>
କୀୟେଁ ବେଗ ବିଲାସ ବିବସ ଅସୁ ନିଶା ନ ଜାନୀ ।।<br>
ଭୟୋ ଚେତ ଇକ ବିବସ ମେନକା ଲଗି ଉରକେଁ ।<br>
ଗଈ ସ୍ୱର୍ଗ ଇକ ସୁତା ସୁନ୍ଦରୀ ବନମହୁଁ ଜନକେଁ ।।<br>
କୁଳପତ କନ୍ୟା ବନ ଲଖୀ, ଘିରୀ ଶକୁନ୍ତନ ତେ ବିବଶ ।<br>
ତାତେଁ ନାମ ଶକୁନ୍ତଲା, ଧରୟୋ କଣ୍ୱ କନ୍ୟା ସରସ ।।



# ଦୁଷ୍ମନ୍ତ ଓ ଶକୁନ୍ତଳାଙ୍କ ଗାନ୍ଧର୍ବ ବିବାହ

ଉପପନ୍ନମିଦଂ ସୁଭ୍ରୁ ଜାତାୟାଃ କୁଶିକାନ୍ୱୟେ ।
ସ୍ୱୟଂ ହି ବୃଣୁତେ ରାଜ୍ଞାଂ କନ୍ୟକାଃ ସଦୃଶଂ ବରମ୍ ।।
ଓମିତ୍ୟୁକ୍ତେ ଯଥାଧର୍ମମୁପୟେମେ ଶକୁନ୍ତଳାମ୍ ।
ଗାନ୍ଧର୍ବବିଧିନା ରାଜା ଦେଶକାଳ ବିଧାନବିତ୍ ।।

ଶ୍ରୀ ଭା ୯ ସ୍କ, ୨୦ ଅ, ୧୫-୧୬ ଶ୍ଳୋ

## ଛପ୍‌ପୟ

କ୍ଷତ୍ରିୟ-କନ୍ୟା ଜାନ ନୃପତ ମନ ମାଁହି ସିହାୟେ ।
ଭୂପକାମ-ବଶ ଭୟେ ନୀତ କେ ବଚନ ସୁନାୟେ ।।
ମୈଂ ପୌରବ ତୁମ କୁଶିକ ବଂଶ କୀ ରାଜକୁମାରୀ ।
ବରଣ କରହୁ ପତ ମୋହିଁ ପ୍ରୀତ ଯଦ ହୋୟ ତୁମ୍ହାରୀ ।।
ବ୍ରାହ୍ମ, ଦୈବ, ଗାନ୍ଧର୍ବ, ଅର୍ଷ, ରାକ୍ଷସ, ଆସୁର, ଆର୍ଷ ବର, ।
ପ୍ରାଜାପତ୍ୟ, ପିଶାଚ ଯୌଁ,ବ୍ୟାହ ଅଷ୍ଟ ସନ୍ତାନକର ।।

ବିବାହ ଏକ ଧର୍ମୀୟ ସମ୍ବନ୍ଧ ଯେଉଁଥିରେ ଧର୍ମପ୍ରାପ୍ତି ଛଡ଼ା କାମ ସୁଖ ମଧ୍ୟ ମିଳିଥାଏ । ଧର୍ମହୀନ କାମ ନରକକୁ ନେଇଯାଏ । ଧର୍ମସମ୍ମତ କାମ ସୁଖକର ହୁଏ । ଏଥିରେ କେବଳ ସ୍ୱର୍ଗ ନୁହେଁ ଅପବର୍ଗ ମଧ୍ୟ ମିଳିଥାଏ । ଧର୍ମକୁ ବିରୋଧ ନ କରି ଅର୍ଥ ଓ କାମ ଭୋଗଦ୍ୱାରା ପରଲୋକରେ ମଧ୍ୟ ସୁଖ ହୁଏ । ଧର୍ମ ଛଡ଼ା ଅର୍ଥ ଓ କାମ ଏଠି ମଣିଷକୁ କ୍ଷଣିକ ସୁଖ ଦେଇପାରେ । କିନ୍ତୁ, ଏହାର ପରିଣାମ ଅତି ଦୁଃଖଦାୟକ ହୁଏ । କାମଭୋଗ ଆଡ଼କୁ ସ୍ୱତଃପ୍ରବୃତ୍ତ ହେବା ପ୍ରାଣୀମାନଙ୍କ ପାଇଁ ଅସ୍ୱାଭାବିକ ନୁହେଁ । ଏହାକୁ ଦମନ କରିବା ଅତ୍ୟନ୍ତ କଷ୍ଟକର କଥା । ଅତି କମ୍ ଲୋକ କାମ ପ୍ରବୃତ୍ତିକୁ ଦମନ କରିବାରେ ସମର୍ଥ ହୁଅନ୍ତି । ସେଥିପାଇଁ ସ୍ମୃତିକାରମାନେ ବିବାହ

ରୂପକ ଧାର୍ମିକ ବନ୍ଧନ ଧାରଣ କରିଛନ୍ତି । ପ୍ରକୃତି ଅନୁସାରେ ପଶୁପକ୍ଷୀ ବି କାମ ବ୍ୟବହାର କରନ୍ତି । କାମପ୍ରବୃତ୍ତି ସ୍ୱାଭାବିକ ଓ ଅନିବାର୍ଯ୍ୟ, ଏହା ବୁଝିପାରି ମୁନି ଋଷିମାନେ ବିବାହକୁ ବ୍ରାହ୍ମ, ଦୈବ, ଆର୍ଷ, ପ୍ରାଜାପତ୍ୟ, ଆସୁର, ଗାନ୍ଧର୍ବ, ରାକ୍ଷସ ଓ ପୈଶାଚ ନାମରେ ଆଠଭାଗରେ ବିଭକ୍ତ କରିଛନ୍ତି । ତନ୍ମଧ୍ୟରୁ କେତେକ ଉତ୍ତମ, କେତେକ ମଧ୍ୟମ ଓ ଅନ୍ୟ କେତେକ ଅଧମ ଶ୍ରେଣୀସ୍ଥ ବିବାହରୂପେ ବିବେଚିତ । କନ୍ୟାକୁ ବସ୍ତ୍ରଭୂଷଣରେ ମଣ୍ଡିତ କରି ଯୋଗୀ ବରକୁ ଘରକୁ ଡାକି ବିଧିପୂର୍ବକ ଦାନଦେବା ବ୍ରାହ୍ମ ବିବାହ ନାମରେ ଅଭିହିତ । ଏହା ସର୍ବଶ୍ରେଷ୍ଠ ବିବାହ । ଆଜିକାଲି ଏହି ବିବାହ ପ୍ରଚଳିତ । ଯଜ୍ଞ ସମୟରେ ଦକ୍ଷିଣାସ୍ୱରୂପ ନିଜ କନ୍ୟାକୁ ଅଳଂକୃତ କରି ବ୍ରାହ୍ମଣଙ୍କୁ ଦିଆଗଲେ ତାହାକୁ ଦୈବ ବିବାହ କୁହାଯାଏ । ଏବେ ତ ଯଜ୍ଞ ନାହିଁ; ତେଣୁ ଏପରି ବିବାହ ମଧ୍ୟ ଆଉ ହେଉନାହିଁ । ବରଠାରୁ ଗୋଟିଏ ବା ଦୁଇଟି ଗାଈ ନେଇ ଯେଉଁ କନ୍ୟାଦାନ କରାଯାଏ ତାହାକୁ ଆର୍ଷ ବିବାହ କହନ୍ତି । 'ଆମେ ଦୁହେଁ ଏକାଠି ରହି ଧର୍ମାଚରଣ କରିବା'—ଏପରି ପ୍ରତିଜ୍ଞା କରି ଯେଉଁ ବିବାହ କରାଯାଏ ତାହା ପ୍ରାଜାପତ୍ୟ ବିବାହ ନାମରେ ଅଭିହିତ । ଆଜିକାଲି ମୁଖ୍ୟତଃ ଏହି ବିବାହ ଅନୁଷ୍ଠିତ ହେଉଛି । କନ୍ୟାଗୋଷ୍ଠୀର ଲୋକଙ୍କୁ ଧନ ଦେଇ ଯେଉଁ ବିବାହ ହୁଏ ତାହାକୁ ଆସୁର ବିବାହ କହନ୍ତି । ଏ ପ୍ରକାର ବିବାହ ଆଜିକାଲି ଗରିବ ଲୋକଙ୍କ ମଧ୍ୟରେ ପ୍ରଚଳିତ ଅଛି । ଏହି ବିବାହ ଅତ୍ୟନ୍ତ ନୀଚ ଶ୍ରେଣୀସ୍ଥ ବିବାହ । ବରକନ୍ୟା ପରସ୍ପରକୁ ପସନ୍ଦ କରି ସ୍ୱେଚ୍ଛାରେ ଯେଉଁ ବିବାହ କରନ୍ତି ତାହାକୁ ଗାନ୍ଧର୍ବ ବିବାହ କୁହାଯାଏ । ଏହା ମୂଳରେ ଅଛି କାମଭାବ । ତେଣୁ ପଣ୍ଡିତମାନେ ଏହି ବିବାହକୁ ପ୍ରଶଂସା କରି ନାହାନ୍ତି । ପଢ଼ାଶୁଣା କରୁଥିବା ପିଲାଙ୍କ ମଧ୍ୟରେ ଆଜିକାଲି ଏହି ବିବାହର ବହୁ ପ୍ରଚଳନ ଦେଖାଯାଉଛି । କନ୍ୟାର ଇଚ୍ଛା ଥାଉ ବା ନ ଥାଉ, କନ୍ୟା ଘର ଲୋକଙ୍କୁ ମାରି, କନ୍ଦାଇ, ନାନାପ୍ରକାର ଦୁଃଖଯନ୍ତ୍ରଣା ଦେଇ କାନ୍ଦୁଥିବା କନ୍ୟାକୁ ବଳପୂର୍ବକ ନେଇଆସି ଯେଉଁ ବିବାହ ଅନୁଷ୍ଠିତ ହୁଏ ତାହାକୁ ରାକ୍ଷସ ବିବାହ କହନ୍ତି । ଆଜିକାଲି ଆଇନ୍‌ଦ୍ୱାରା ଏ ପ୍ରକାର ବିବାହ ନିଷିଦ୍ଧ ହୋଇଥିବାରୁ ଏହାର ବେଶୀ ପ୍ରଚଳନ ନାହିଁ । ସବୁଠାରୁ ଏହା ହେୟ ବିବାହ । ଶୋଇଥିବା ଅବସ୍ଥାରେ ବା ପ୍ରମତ୍ତ ଥିବା ଅବସ୍ଥାରେ ବା ଏକାନ୍ତରେ ଥିବା କନ୍ୟାକୁ ହରଣ କରିବା ଓ ବିବାହ କରିବା ଅତ୍ୟନ୍ତ ନୀଚଶ୍ରେଣୀସ୍ଥ ବିବାହ । ଏ ପ୍ରକାର ବିବାହକୁ ପୈଶାଚ ବିବାହ କହନ୍ତି । ବ୍ରାହ୍ମଣମାନଙ୍କ ପାଇଁ ଶେଷ ଦୁଇପ୍ରକାର ଅର୍ଥାତ୍ ରାକ୍ଷସ ଓ ପୈଶାଚ ବିବାହ ପୁରାପୁରି ନିଷିଦ୍ଧ । ଅନ୍ୟ ଛଅ ପ୍ରକାର ବିବାହ ଉତ୍ତରୋତ୍ତର ଭାବେ ଶ୍ରେଷ୍ଠ—ଅର୍ଥାତ୍ ଗାନ୍ଧର୍ବ ସବୁଠୁ ଅଧମ ବିବାହ । କିନ୍ତୁ କ୍ଷତ୍ରିୟମାନଙ୍କ ପାଇଁ ଗାନ୍ଧର୍ବ ବିବାହ ନିନ୍ଦନୀୟ ନୁହେଁ । କାରଣ କ୍ଷତ୍ରିୟମାନଙ୍କ ବିବାହରେ ସ୍ୱୟମ୍ବର ହୁଏ । କନ୍ୟା ଓ ବର ଦୁହେଁ ଏକମତ ହେଲେହିଁ ବିବାହ ଅନୁଷ୍ଠିତ ହୁଏ ।

ମହର୍ଷି ସୂତ କହିଲେ—"ମୁନିଗଣ ! ମନ୍ତ୍ରୀ ପୁରୋହିତ ଚାଲିଯିବା ପରେ ଶକୁନ୍ତଳାଙ୍କ ଏକୁଟିଆ ପାଇ ଦୁଷ୍ୟନ୍ତ ଅତ୍ୟନ୍ତ ସ୍ନେହପୂର୍ଣ୍ଣ ସ୍ୱରରେ କହିଲେ—ସୁନ୍ଦରୀ ! ତୁମେ ରାଜକୁମାରୀ, ବଣରେ ରହିବା ତୁମ ପକ୍ଷରେ ଠିକ୍ ହେବନାହିଁ । ରାଜପ୍ରାସାଦକୁ ସୁଶୋଭିତ କରିବା ପାଇଁ ତୁମର ଯୋଗ୍ୟତା ଅଛି ।"

ଲାଜ ଲାଜ ହୋଇ ଶକୁନ୍ତଳା କହିଲେ—"ମହାରାଜ ! ମୁଁ ତ ବଣରେହିଁ ଜନ୍ମ ହୋଇଛି । ବଣରେ ମୁଁ ବଢ଼ିଛି । ବଣର ପଶୁପକ୍ଷୀଙ୍କ ସହ ମୋର ଜୀବନ କଟିଛି । ରାଜପ୍ରାସାଦମାନଙ୍କରେ ରାଜାରାଣୀ ରହନ୍ତି । ଆମ ପରି ତପସ୍ୱିନୀମାନଙ୍କ ପାଇଁ ବଣ ହିଁ ସବୁଠାରୁ ଭଲ ।"

ରାଜା କହିଲେ—"ରାଜମହଲରେ ଥିବା ରାଣୀମାନେ ଅଗ୍ନି ଶିଖାରୁ ଆବିର୍ଭୂତ ହୋଇ ନ ଥାନ୍ତି । କ୍ଷତ୍ରିୟ କନ୍ୟା ଯେତେବେଳେ ରାଜାଙ୍କୁ ବିବାହ କରେ ସେତେବେଳେ ସେ ରାଣୀ ହୋଇଯାଆନ୍ତି । ମୁଁ ଏହି ସମଗ୍ର ଭୂମଣ୍ଡଳର ରାଜା । ତୁମେ ମୋତେ ବିବାହ କର । ତାହାହେଲେ ତୁମେ ମଧ୍ୟ ରାଣୀ ହେବ । ସୁବର୍ଣ୍ଣ ଓ ମଣିମୁକ୍ତା ଖଚିତ ଆଭୂଷଣରେ ତୁମକୁ ଦାସୀମାନେ ମଣ୍ଡନ କରିବେ । ପ୍ରତିଦିନ ତୁମକୁ ନୂଆ ନୂଆ ରେଶମଶାଢ଼ୀ ପିନ୍ଧାଇ ଦେବେ । ତୁମ ଦେହରେ ଅଙ୍ଗରାଗ ଲେପନ କରିବେ । ସୁବାସିତ ଜଳରେ ସ୍ନାନ କରାଇଦେବେ । ସବୁବେଳେ ତୁମର ଆଦେଶ ପାଳନ ପାଇଁ ନିକଟରେ ଠିଆହୋଇ ରହିବେ । ମୋର ସର୍ବସ୍ୱ ସହିତ ମୁଁ ମଧ୍ୟ ତୁମର ଅଧୀନ ହୋଇଯିବି ।"

ଏହା ଶୁଣିବା ପରେ ଶକୁନ୍ତଳା ଆହୁରି ଲାଜେଇଗଲେ । ତାଙ୍କ ମୁହଁ ଲାଲ ପଡ଼ିଗଲା । ପ୍ରସନ୍ନତାରେ ତାଙ୍କ ହୃଦୟ ପୂର୍ଣ୍ଣ ହୋଇ ଉଠିଲା । ଆଖିରେ ଅନୁରାଗ ବୋଲି ହୋଇଗଲା । କିଛି ସମୟ ପରେ ରହି ରହି ସେ କହିଲେ—"ହେ ନରଦେବ ! ଆପଣ ଜାଣନ୍ତି ବିବାହ ବିଷୟରେ ମୁଁ ସ୍ୱାଧୀନ ନୁହେଁ । କାରଣ ମୁଁ ପିତାଙ୍କ ଅଧୀନ । ମୋର ପିତା ଯାହା ସହିତ ମୋତେ ବିବାହ କରିଦେବେ ମୁଁ ତାଙ୍କର ସହିତ ଚାଲିଯିବି । ସ୍ୱାଧୀନଭାବେ କିଛି କହିବା ପାଇଁ ମୋର ଅଧିକାର ନାହିଁ ।"

ରାଜା ପଚାରିଲେ—"ତୁମର ପିତା ତୁମକୁ ବିବାହ ଦେବା ପାଇଁ ବାଗ୍‌ଦାନ କରିଛନ୍ତି କି ?

ଶକୁନ୍ତଳା କହିଲେ—"ମୋର ଯେତେଦୂର ମନେ ପଡ଼ୁଛି ଏ ପର୍ଯ୍ୟନ୍ତ ମୋର ପିତା ମୋ' ବିବାହ ବିଷୟରେ କାହାରି ସହିତ କଥାବାର୍ତ୍ତା କରି ନାହାନ୍ତି । ଯଦି ସେ ସେପରି କଥାବାର୍ତ୍ତା କରିଥାନ୍ତେ ତେବେ ମୋତେ ନିଶ୍ଚୟ ପଚାରିଥାନ୍ତେ । ସେ ମୋତେ ଖୁବ୍ ଆଦର କରନ୍ତି ।"

ରାଜା କହିଲେ—"ଅଚ୍ଛା, ତା'ହେଲେ କୁହ ମୋତେ ପତିରୂପେ ବରଣ କରିବାକୁ ତୁମର ଇଚ୍ଛା ହେଉଛି କି ନାହିଁ । ତୁମେ କ'ଣ ମୋତେ ତୁମର ଯୋଗ୍ୟ ବୋଲି ଭାବୁନାହଁ ?"

ଅତ୍ୟନ୍ତ ଲଜ୍ଜାକର ଶକୁନ୍ତଳା ସଙ୍କୋଚପୂର୍ଣ୍ଣ ସ୍ୱରରେ କହିଲେ—"ମହାରାଜ ! ଏପରି ପ୍ରଶ୍ନ ପଚାରି ମୋତେ ଆପଣ ଲଜ୍ଜା କାହିଁକି ଦେଉଛନ୍ତି ? ଆପଣଙ୍କ ନିକଟରେ ଆତ୍ମସମର୍ପଣ କରିବାକୁ ନିଜର ପରମ ସୌଭାଗ୍ୟ ବୋଲି ସଂସାରରେ କେଉଁ ଯୁବତୀ ଭାବିବ ନାହିଁ । ମର୍ତ୍ତ୍ୟଲୋକର ଲଳନାମାନଙ୍କ କଥା ଛାଡ଼ନ୍ତୁ ସ୍ୱର୍ଗର ଦେବକୁମାରୀମାନେ ମଧ୍ୟ ଆପଣଙ୍କୁ ନିଜର ପତିରୂପେ ପାଇବାକୁ ଗୌରବ ବୋଲି ମନେ କରିବା ସଙ୍ଗେ ସଙ୍ଗେ ଅଶେଷ ଆନନ୍ଦ ଲାଭ କରିବେ । କିନ୍ତୁ ମୁଁ ଇଚ୍ଛାକଲେ ମଧ୍ୟ ସବୁ କିଛି ହୋଇ-ପାରିବ ନାହିଁ । ମୁଁ ଅଧର୍ମକୁ ଓ ମୋର ପିତାଙ୍କୁ ବହୁତ ଭୟକରେ । ଧର୍ମବିରୁଦ୍ଧ କୌଣସି କାର୍ଯ୍ୟ ମୁଁ କରିପାରିବି ନାହିଁ । ନିଜର ପ୍ରାଣକୁ ମୁଁ ଆନନ୍ଦରେ ତ୍ୟାଗ କରିପାରେ; କିନ୍ତୁ ଧର୍ମକୁ କେବେହେଲେ ଛାଡ଼ି ପାରିବି ନାହିଁ ।"

ରାଜା କହିଲେ—"ଧର୍ମ ଛାଡ଼ିବାକୁ ମୁଁ ତୁମକୁ କହୁ ନାହିଁ । ତୁମେ ଯୁବତୀ ଓ ପ୍ରାପ୍ତ ବୟସ୍କା ଏବଂ ରାଜକୁମାରୀ ମଧ୍ୟ । ଯୁବତୀ କ୍ଷତ୍ରିୟ କନ୍ୟାମାନଙ୍କର ନିଜ ଇଚ୍ଛାରେ ପତି ବରଣ କରିବାର ପୂର୍ଣ୍ଣ ଅଧିକାର ଅଛି । ସେମାନଙ୍କ ପାଇଁ ଗାନ୍ଧର୍ବ ବିବାହ ଘୃଣ୍ୟ ନୁହେଁ ପ୍ରଶଂସନୀୟ, ଅଧର୍ମ ନୁହେଁ ଧର୍ମ, କନିଷ୍ଠ ନୁହେଁ ଗରିଷ୍ଠ, ଅଧମ ନୁହେଁ ଉତ୍ତମ, ଅଯଶସ୍କର ନୁହେଁ ଯଶସ୍କର, ଅକୀର୍ତ୍ତିକର ନୁହେଁ କୀର୍ତ୍ତିକର ଅଟେ । ତୁମେ ମୋ' ସହିତ ଗାନ୍ଧର୍ବ ବିଧି ଅନୁସାରେ ବିବାହ କରିପାରିବ । ମହାମୁନି କଣ୍ୱ ଧର୍ମଜ୍ଞ ଅଟନ୍ତି । ଏହି ବିବାହକୁ ସେ ନିଶ୍ଚୟ ଅନୁମୋଦନ କରିବେ । ଯଦି ମୋ' ଉପରେ ତୁମର କୃପା ଅଛି, ତାହାହେଲେ ଏବେ ତୁମେ ମୋ' ସହିତ ବିବାହ କରି ମୋତେ ସୁଖୀ କରାଇପାରିବ ।"

ଶକୁନ୍ତଳା କହିଲେ—"ମହାରାଜ ! ଯଦି ମୁଁ ସ୍ୱୟଂ ବର ବରଣ କରିବ ଓ ତାହା କରିବା ପାଇଁ ମୁଁ ସ୍ୱାଧୀନ ଅଟେ ଏବଂ ଏହି କାର୍ଯ୍ୟ ଧର୍ମ କି ନୀତି ବିରୁଦ୍ଧ ନୁହେଁ ତେବେ ମୁଁ ଆପଣଙ୍କୁ ମୋର ପତି ରୂପେ ବରଣ କରି ଅତ୍ୟନ୍ତ ଖୁସି ହୁଅନ୍ତି । କିନ୍ତୁ ଏଠାରେ ମନ୍ତ୍ରପାଠ କରିବା ପାଇଁ ପୁରୋହିତ ତ ନାହାନ୍ତି ।"

ରାଜା କହିଲେ—"ବିବାହ ମନ୍ତ୍ର ତ ମୁଁ ଜାଣେ । ନ ଜାଣିଥିଲେ ବି କିଛି ଅସୁବିଧା ନାହିଁ । କାରଣ ଗାନ୍ଧର୍ବ ବିବାହରେ ମନ୍ତ୍ର ନ ପଢ଼ିବା ଧର୍ମ ବିରୁଦ୍ଧ କାର୍ଯ୍ୟ ନୁହେଁ । ବର ଓ କନ୍ୟା ଦୁହେଁ ପ୍ରତିଜ୍ଞା କରି ପାଣି ଗ୍ରହଣ କରିବେ ଓ ପରସ୍ପରକୁ ଆତ୍ମସମର୍ପଣ କରିଦେବେ, ଏହା ହିଁ ଯଥେଷ୍ଟ ।"

ଶକୁନ୍ତଳା କହିଲେ—"ରାଜନ୍ ! ଯଦି ଏହା ଶାସ୍ତ୍ରୀୟ ଆଦେଶ ତେବେ ଆପଣଙ୍କ ପାଖରେ ଆତ୍ମସମର୍ପଣ କରିବା ପାଇଁ ମୋର କୌଣସି ଆପତ୍ତି ନାହିଁ । କିନ୍ତୁ ଆପଣଙ୍କୁ ଏକ ପ୍ରତିଜ୍ଞା କରିବାକୁ ପଡ଼ିବ ।"

ରାଜା ପଚାରିଲେ—"କି ପ୍ରତିଜ୍ଞା ?"

ଶକୁନ୍ତଳା କହିଲେ—"ରାଜାମାନଙ୍କର ଚିତ୍ତ ସବୁବେଳେ ଚଞ୍ଚଳ । ସେମାନଙ୍କର ଅନେକ ରାଣୀ ଥାଆନ୍ତି । ଆପଣ ପ୍ରତିଜ୍ଞା କରନ୍ତୁ ଯେ ମୋ' ଗର୍ଭରୁ ଯଦି ପୁତ୍ର ଜାତ ହେବ ତେବେ ସେ ଆପଣଙ୍କ ରାଜ୍ୟର ଉତ୍ତରାଧିକାରୀ ହେବ ?"

ରାଜା ଅତ୍ୟନ୍ତ ଆନନ୍ଦିତ ହୋଇ କହିଲେ—"ପ୍ରିୟେ ! ମୋତେ ଅବିଶ୍ୱାସ କାହିଁକି କରୁଛ ? କେବେ ତୁମର ପୁତ୍ର ହେବ ତାହା ଜଣା ନାହିଁ । ମୁଁ ଏବେ ମୋର ଶରୀର, ମନ, ଧନ, ରାଜ୍ୟ ଓ ସର୍ବସ୍ୱ ତୁମପାଖରେ ଅର୍ପଣ କରୁଛି । ମୁଁ ସତ୍ୟକୁ ସାକ୍ଷୀ ରଖି ପ୍ରତିଜ୍ଞା କରୁଛି, ତୁମର ଗର୍ଭରୁ ଯେଉଁ ପୁତ୍ର ଜାତ ହେବ ତାକୁ ହିଁ ମୁଁ ଦେଶର ଉତ୍ତରାଧିକାରୀ କରିବି । ମୁଁ ଆଜଯାଏ କେବେ ହେଲେ ମିଥ୍ୟା କଥା କହି ନାହିଁ । ଆଶା କରୁଛି, ମୋର ସତ୍ୟ ଉପରେ ତୁମର ବିଶ୍ୱାସ ହୋଇଯାଇଥିବ । ଏବେ ତୁମର କୋମଳ କରକୁ ମୋତେ ଦିଅ, ଦେଖ, ତୁମ ହାତର ସୁନ୍ଦର ଲାଲ ଲାଲ ନଖ ପଙ୍କ୍ତି, ଅତ୍ୟନ୍ତ କୋମଳ ମଣିବନ୍ଧକୁ ପଦ୍ମ ବୋଲି ଭାବି ମଧୁଲୋଲୁପ ଭ୍ରମରମାନେ କପରି ଅଖ ପାଖରେ ଘୂରି ବୁଲୁଛନ୍ତି ।"

ଏହା ଶୁଣି ଶକୁନ୍ତଳା ଅନୁରାଗ ପୂର୍ଣ୍ଣ ହୃଦୟରେ ପଦ୍ମଠାରୁ ବଳି କୋମଳ ହାତକୁ ମହାରାଜଙ୍କ ଆଡ଼କୁ ବଢ଼ାଇଲେ । ମହାରାଜ ସେହି ସୁକୁମାର କରକୁ କ୍ଷୁଧାର୍ତ୍ତ ବ୍ୟକ୍ତି ଖାଦ୍ୟକୁ ଗ୍ରହଣ କଲା ପରି, ତୃଷାର୍ତ୍ତ ଲୋକ ସ୍ୱଚ୍ଛ ସୁବାସିତ ପାନୀୟ ଜଳକୁ ଗ୍ରହଣ କରିବା ପରି ଲୋଭୀ ଧନରାଶିକୁ ଗ୍ରହଣ କଲା ପରି ଆଦର, ଉଲ୍ଲାସ ଓ ଅନୁରାଗର ସହିତ ଗ୍ରହଣ କଲେ । ତା'ପରେ ଦୁହେଁ ବେଦମନ୍ତ୍ର ଉଚ୍ଚାରଣ କରି ପରସ୍ପର ସହିତ ଧର୍ମପୂର୍ବକ ଆଜୀବନ ଏକତ୍ର ଅବସ୍ଥାନ କରିବେ ବୋଲି ପ୍ରତିଜ୍ଞା କଲେ । ସ୍ୱର୍ଗରେ ଥିବା ଦେବତା ଓ ପିତୃପୁରୁଷମାନେ ଏହି ମଙ୍ଗଳମୟ ବିବାହ ଦେଖି ଖୁସି ହେଲେ । ସେମାନେ ନବଦମ୍ପତିଙ୍କ ଉପରେ କଳ୍ପବୃକ୍ଷର ପୁଷ୍ପ ବୃଷ୍ଟି କରିଥିଲେ । ଆଶ୍ରମର ବୃକ୍ଷମାନେ ଶାଖା ଦୋହଲାଇ ଏହାକୁ ଅନୁମୋଦନ କରିଥିଲେ । ପବନ ଦେବତା ଦୁହିଁଙ୍କର ଉତ୍ତରୀୟ ବସ୍ତ୍ରକୁ ଉଡ଼ାଇ ଗଣ୍ଠି ପକାଇବାର ଉପକ୍ରମ କରିଥିଲେ । ଶକୁନ୍ତଳାର ସଖୀ ତା'ର ସାଙ୍ଗ ଏଥର ରାଜରାଣୀ ହୋଇଗଲା ବୋଲି ଭାବି ମନେ ମନେ ଭାରି ଖୁସି ହୋଇଥିଲା । କଲମ ଲତାକୁ ଲଗାଇଥିବା ବ୍ୟକ୍ତି ସେଥିରେ ଫୁଲ ଓ ଫଳ ଦେଖିଲେ ଯେପରି ଆନନ୍ଦିତ ହୁଏ, ସେହିପରି ବୃଦ୍ଧା ତାପସୀ ପ୍ରସନ୍ନ ହୋଇଥିଲେ । ଆଜି ତାର

ପରିଶ୍ରମର ଫଳ ସେ ପାଇଛନ୍ତି । ରାଜା ଭାବିଲେ, ଯାହାର ମୂଲ୍ୟ କଳନା କରିହେବ ନାହିଁ ସେପରି ବସ୍ତୁ ସେ ଲାଭକଲେ । ଶକୁନ୍ତଳା ଭାବିଲେ—"ମୋର ଜୀବନ ସାର୍ଥକ ହୋଇଗଲା ।"

ମହର୍ଷି ସୂତ କହିଲେ—"ମୁନିଗଣ ! ଏମନ୍ତ ଗାନ୍ଧର୍ବ ବିବାହ ପରେ ମହାରାଜ ପୁଷ୍ପହାର ପରିବର୍ତ୍ତେ ନିଜର ବିଶାଳ ବାହୁକୁ ଶକୁନ୍ତଳାଙ୍କ ଗଳାରେ ହାର କରି ଦେଲେ । ନବବଧୂକୁ ଉପହାର ସ୍ୱରୂପ ହାର ଦେବା ଉଚିତ । କିନ୍ତୁ ସେହି ହାର ତ ସେଠି ନ ଥିଲା, ତେଣୁ ସେ ନିଜର ବାହୁ ରୂପକ ହାରକୁ ପିନ୍ଧାଇ ଦେଇ ନିକଟସ୍ଥ ସଦନ କୁଞ୍ଜକୁ ଧର୍ମପତ୍ନୀ ଶକୁନ୍ତଳାକୁ ନେଇଗଲେ ।"

## ଛପ୍‌ପୟ

କରି ଗାନ୍ଧର୍ବ ବିବାହ ହୋହୁ ପତ୍ନୀ ତୁ ମେରୀ ।
ସବ ବିଧି ଇଚ୍ଛା କରୁଁ ସକଲ ପୂରନ ହୈଁ ତେରୀ ।।
ରାଜ, ପାଟ, ଧନ-ଧାମ, ବସ୍ତୁ ସବ ମେରୀ ଜୋ ହୈ ।
ଦେହ ପ୍ରାନ୍ ସର୍ବସ୍ୱ ଆଜ ତେଂ ତେରୀ ସୋ ହୈ ।।
ବୋଲୀ ସୋଚୀ ଶକୁନ୍ତଲା, ଯହ ଅଧର୍ମ ହୈ ନହିଁ ନୃପ ।।
କରୁଁ ବରନ ଯହ ମମ ତନୟ, ହୋହି ସକଲ ରୁବୋ ଅଧିପ ।।



# ପୂର୍ବବର୍ତ୍ତୀ ଶକୁନ୍ତଳା

ଅତ୍ରମୋଘବୀର୍ଯ୍ୟୋ ରାଜର୍ଷିର୍ମହିଷ୍ୟାଂ ବୀର୍ଯ୍ୟମାଦଧେ
ଶ୍ୱୋଭୂତେ ସ୍ୱପୁରଂ ଯାତଃ କାଳେନାସୂତ ସା ସୁତମ୍ ॥
(ଭାଗ—୯ସ୍କ, ୨୦ଅ, ୧୭ଶ୍ଳୋ)

## ଛପ୍ପୟ

ନୃପ ସ୍ୱୀକାର୍‌ୟୌ, ଭୟୌ ବ୍ୟାହ ଗାନ୍ଧର୍ବ ରୁରତ ତହଁ ।
ପତି ପତ୍ନୀ ବନ ଭୟେ, କରତ ଦୋଉ ରତି-ସୁଖ ମହଁ ॥
ମନ-ତନୟୌ ତନ ଅରପି ଅତିଥି କୁଁ ଅତି ସୁଖ ଦୀହେଁ ।
ରଜ ଅରୁ ବୀର୍ଯ୍ୟ ଅମୋଘ ଗରଭ ଆପନ ନୃପ କୀହ୍ନୋ ॥
ଭୟୌ ପ୍ରାତ ଅତି କଷ୍ଟ ତେଁ, ବିଲଗ ଭୟେ ଦୋଉ ବିକଳ ।
ରତି-ଶ୍ରମ ପ୍ରିୟା-ବିୟୋଗ ତେଁ, ଦୋଉନ କେ ସବ ଅଙ୍ଗ ଶିଥିଳ ।

ସବୁବେଳେ ଯେଉଁମାନେ ସତ ମିଛ କରି ଗୁଡ଼ାଏ ଏଣ୍ଡୁରିତିଣ୍ଡୁ କଥା କହନ୍ତି ସେମାନଙ୍କ କଥାର କିଛି ମହତ୍ତ୍ୱ ରହେନାହିଁ କି କୌଣସି ମୂଲ୍ୟ ରହେ ନାହିଁ । ଲୋକେ ତାଙ୍କ କଥାକୁ ବିଶ୍ୱାସ କରନ୍ତି ନାହିଁ । କିନ୍ତୁ ଯେଉଁମାନେ ମୌନ ଆଚରଣ କରି ବାଣୀକୁ ସଂଯତ ଭାବରେ ବ୍ୟବହାର କରନ୍ତି, ଅସମୟରେ ଅନାବଶ୍ୟକ କଥା କୁହନ୍ତି ନାହିଁ, ସେମାନଙ୍କର ବାଣୀ ଅମୋଘ ହୋଇଥାଏ । ଏପରି ମନସ୍ୱୀମାନେ ଶାପ ବା ବରଦାନ ଦେବାକୁ ସମର୍ଥ ହୁଅନ୍ତି । ସେହିପରି ଯେଉଁମାନେ କାମର ବଶୀଭୂତ ହୋଇ ବୃଥାରେ ରଜ ଓ ବୀର୍ଯ୍ୟକୁ ବ୍ୟୟ କରିଥାନ୍ତି, ତୁଚ୍ଛ ଇନ୍ଦ୍ରିୟ ସୁଖ ପାଇଁ ଧର୍ମାଧର୍ମ, ଗମ୍ୟାଗମ୍ୟ ବିଚାର କରନ୍ତି ନାହିଁ ସେମାନଙ୍କର ରଜ ବୀର୍ଯ୍ୟ ନିଷ୍ଫଳ ହୋଇଥାଏ, ବ୍ୟର୍ଥ ହୋଇଥାଏ ! କିନ୍ତୁ ଅନ୍ୟ ପକ୍ଷରେ ଯେଉଁମାନେ ସଦାଚାରର ପଥକୁ କେବେହେଲେ ପରିତ୍ୟାଗ କରନ୍ତି ନାହିଁ, ଧର୍ମବନ୍ଧନକୁ ଶିଥିଳ କରନ୍ତି ନାହିଁ, ଆର୍ଯ୍ୟ ସଂସ୍କୃତିକୁ ଉପେକ୍ଷା କରି କାମ ପରବଶ ହୋଇ କେବେହେଲେ କୌଣସି ପ୍ରକାର ଅନୁଚିତ କାର୍ଯ୍ୟ କରନ୍ତି ନାହିଁ, ସେମାନଙ୍କ ବୀର୍ଯ୍ୟ ଅମୋଘ ହୋଇଥାଏ । ଏପରି ମହାନ୍ ବ୍ୟକ୍ତିର ବୀର୍ଯ୍ୟ ଯେଉଁ କ୍ଷେତ୍ରରେ ପଡୁ ପଛକେ, କେବେହେଲେ ବ୍ୟର୍ଥ ହୁଏ ନାହିଁ । ସେହି କାରଣରୁ ରାଜର୍ଷି, ମହର୍ଷିମାନଙ୍କର ଅମୋଘ ବୀର୍ଯ୍ୟ ପଶୁ, ପକ୍ଷୀ ବା ବୃକ୍ଷ ଯେଉଁଠି ପଡ଼ିଲେ ବି ସେଠାରୁ ସନ୍ତାନ ଉତ୍ପତ୍ତି ହୋଇଥାଏ ।

ମହର୍ଷି ସୂତ କହିଲେ—"ମୁନିଗଣ ! ସାୟଂକାଳର ଗୋଧୂଳି ଲଗ୍ନରେ ଶକୁନ୍ତଳା ଓ ଦୁଷ୍ମନ୍ତଙ୍କ ପାଣିଗ୍ରହଣ ସଂସ୍କାର ସମ୍ପନ୍ନ ହେଲା । ଏହା ପରେ ରାଜାଙ୍କ ବାହୁପାଶରେ ଆବଦ୍ଧ ରହି ଅନୁରାଗ ପୂର୍ଣ୍ଣ ହୃଦୟରେ ଚନ୍ଦ୍ର ସ୍ୱରୂପା ଶକୁନ୍ତଳା ନିଜେ ବଢ଼ାଇଥିବା ଉପବନରେ ଭ୍ରମଣ କରିବାକୁ ଲାଗିଲେ । ବୃଦ୍ଧା ତାପସୀ କୁଟୀରରେ ରହିଯାଇଥିଲା । ସଖୀଗଣ ରାଜରାଣୀଙ୍କର ଅନୁଗମନ କରୁଥିଲେ । ସଖୀମାନେ କହୁଥିଲେ-"ମହାରାଜ ! ମୋ' ସଖୀ ଶକୁନ୍ତଳା ଏହି କଳିକାପୂର୍ଣ୍ଣ ମଲ୍ଲୀ ଲତାକୁ ଲଗାଇଥିଲା । ଲତାକୁଞ୍ଜ କରିବାରେ ତା'ର ବଡ଼ ଆଗ୍ରହ । ଆଗରେ ପୁଷ୍ପଭାର ଯୋଗୁଁ ନଇଁ ପଡ଼ିଥିବା ଯେଉଁ ସଘନ ମାଧବୀ କୁଞ୍ଜକୁ ଆପଣ ଦେଖୁଛନ୍ତି, ତାହାକୁ ମୋର ସଖୀ ଅତି ଯତ୍ନରେ ନିର୍ମାଣ କରିଛି । ପ୍ରଥମେ ମାଟିରେ ଖମ୍ବ ପୋତି, ତା'ର ପାଖରେ ସେ ଡାଳ ଲଗାଇ ଦେଇଥିଲା । ଡାଳରୁ ବାହାରିଥିବା ଶାଖାଗୁଡ଼ିକୁ ଖମ୍ବ ମାଧ୍ୟମରେ ବୃକ୍ଷଶାଖାକୁ ନିଆଗଲା । ବୃକ୍ଷ-ଶାଖାରେ ଲତାଗୁଡ଼ିକ ମାଡ଼ିଯାଇ ଏକ ସୁନ୍ଦର କୁଞ୍ଜ ସୃଷ୍ଟି ହୋଇଗଲା । ଗଛ ଉପରେ ଥିବା ଲତାରେ ଫୁଟିଥିବା ଫୁଲଗୁଡ଼ିକ ସତେ ଯେପରି ସେହି ଗଛରେ ଫୁଟିଛି, ଠିକ୍ ସେହିପରି ଦେଖାଯାଉଛି । ପଦ୍ମ ଫୁଲ ପାଇଁ ମୋ' ସଖୀର ବଡ଼ ଅନୁରାଗ । ଏ ଯେଉଁ ପୁଷ୍କରିଣୀ ଆଗରେ ଦେଖୁଛନ୍ତି, ତାକୁ ଆମେ ସମସ୍ତେ ମିଶି ଖୋଳିଛୁ । ମାଲିନୀ ନଦୀରୁ ପାଣିଧାର ଆଣି ଏହାକୁ ଜଳରେ ପୂର୍ଣ୍ଣ କରିଥିଲୁ । ଭଗବାନ୍ କଣ୍ୱଙ୍କ ଏହି ଦୂର ଦୂର ଜାଗାରୁ ନାନା ରଙ୍ଗର ପଦ୍ମ ମଗାଇଥିଲେ । ଏତେ ପ୍ରକାର ପଦ୍ମ ସହଜରେ ଗୋଟିଏ ଜାଗାରେ ମିଳେ ନାହିଁ ।

ମହାରାଜ ! ଦେଖୁଛନ୍ତି, ମାଛଗୁଡ଼ିକ କିପରି ଡ଼େଉଁଛନ୍ତି । ଜଳହିଁ ଏମାନଙ୍କର ଜୀବନଧାରା । ନିଜ ଜୀବନଧାରାର ବକ୍ଷସ୍ଥଳରେ ଏମାନେ ଏତେ ନିର୍ଭୟରେ ଖେଳୁଛନ୍ତି ଯେ ସେମାନଙ୍କ ବେଗରେ ପଦ୍ମଗୁଡ଼ିକ ମଧ୍ୟ ଦୋହଲି ଯାଉଛନ୍ତି । ଦେଖନ୍ତୁ, ସୂର୍ଯ୍ୟ ଅସ୍ତ ହେବାକୁ ଯାଉଥିବାରୁ ପଦ୍ମଗୁଡ଼ିକ ପାଖୁଡ଼ା ବନ୍ଦ କରିବାକୁ ଆରମ୍ଭ କଲେଣି । ହେଇ ଦେଖନ୍ତୁ, ଏକ ଅର୍ଦ୍ଧମୁକୁଳିତ କମଳ ପାଟକୁ ଭ୍ରମରଟିଏ ଆସି ତା' ଭିତରେ ପଶି ବନ୍ଦୀ ହୋଇଗଲା । ଵାରାରାତି ସେ କଳିକା କୋଳରେ ହିଁ ବନ୍ଦୀ ହୋଇ ରହିବ । ଉଡ଼ିଯିବାର ପ୍ରଶ୍ନ ନାହିଁ । ଆଗରେ ଯେଉଁ ଘନ କଦଳୀକୁଞ୍ଜ ଅଛି ତା' ଆଖପାଖରେ ମାଳତୀ ଲତାଗୁଡ଼ିକ କେଡ଼େ ଦକ୍ଷ ହୋଇ ବଢ଼ିଛନ୍ତି । ସଖୀ ଶକୁନ୍ତଳାଙ୍କ ପାଳିତ ହରିଣ ଏଇଠି ରହେ । ଏଇ ଯେଉଁ କଳା ଶିଙ୍ଗର ହରିଣ ଦେଖୁଛନ୍ତି, ତାର ଏକ ଇତିହାସ ଅଛି । ଦିନେ ଆମେ ସମସ୍ତେ ବନରେ ବୁଲୁଥିଲୁ । ଗୋଟିଏ ବ୍ୟାଧ ହରିଣୀଟିଏ ମାରିଦେଲା । ଏ ସେହି ହରିଣୀର ଶିଶୁ ଏକୁଟିଆ ଏ ପାଖ ସେପାଖ ହେଉଥିଲା । ଶକୁନ୍ତଳା ଆଦରରେ ଏହାକୁ କୋଳକୁ ଉଠାଇନେଲା । ଆଶ୍ରମକୁ ଆଣି ଦୁଧ ପିଆଇ ଏହାକୁ ବଡ଼ କଲା । ବଡ଼ ହେବାପରେ ତାକୁ ଏକ ହରିଣ ସହିତ ବିବାହ କରିଦେଲା । ବିବାହ ସମୟରେ ସେ ହରିଣୀ ବର ଦେଇଗଲା—'ଯେପରି ଏହି ଆଶ୍ରମରେ ତୁମେ ସହଚରୀ ସହିତ ମୋତେ ମିଳାଇଦେଲ ଠିକ୍ ସେହିପରି ଦିନେ ତୁମର ବନ୍ଧୁ ତୁମ ସହିତ ମିଳିତ ହେବେ ।'

ସେହି ବର ଆଜି ସଫଳ ହେଲା । ମୋର ଏବେ ଅନ୍ୟକାମ ଅଛି । ଏ ଯେଉଁ ହରିଣଛୁଆ ଗାଈ ଦେଖୁଛନ୍ତ ତାଙ୍କୁ ଅନ୍ୟ କେହି ଦୁହିଁ ପାରିବେ ନାହିଁ । ମୋତେ ହିଁ ତାଙ୍କୁ ଦୁହିଁବାକୁ ପଡ଼ିବ । ମୁଁ ବର୍ତ୍ତମାନ ଦୁଧ ଦୁହିଁବାକୁ ଚାଲିଲି । ଏହା କହି ସେ ଅନ୍ୟ-ମାନଙ୍କୁ ସାଙ୍ଗରେ ଡାକନେଇ ଚାଲିଗଲା । ଶକୁନ୍ତଳା ତାଙ୍କୁ ବହୁତ ଡାକିଲା—"ଆରେ ସତ୍ୟା ! ତୁ କୁଆଡେ ଯାଉଛୁ ? ମୋତେ ଏକୁଟିଆ ଛାଡ଼ି କାହିଁକି ଚାଲିଯାଉଛୁ । ଶୁଣିଯା ।"

ନଶୁଣିବା ପରି ହୋଇ ସତ୍ୟା କହିଲା—"ଶୁଣିବା ପାଇଁ ମୋର ବେଳ ନାହିଁ । ଏକୁଟିଆ କାହିଁକି । ଏବେ ତ ତୋର ରକ୍ଷାକର୍ତ୍ତା ଭର୍ତ୍ତା ମହାରାଜ ସଙ୍ଗରେ ଅଛନ୍ତି । ଏତିକି କହି ସଖୀ ଅନ୍ତରାଳକୁ ଚାଲିଗଲା । ମହାରାଜ ସେହି କଦଳୀକୁଞ୍ଜକୁ ଦେଖି ଖୁସିହେଲେ । ସେହିଠାରେ ସେ ରାତ୍ରିଯାପନ କଲେ । ଅମୋଘବୀର୍ଯ୍ୟ ରାଜର୍ଷି ସେହିଠାରେ ନିଜର ଧର୍ମପତ୍ନୀଙ୍କ ଗର୍ଭାଧାନ ସଂସ୍କାର କରିଥିଲେ ।"

ସକାଳ ହେଲା । ରାଜାଙ୍କ ଶରୀର ଶିଥିଳ ହୋଇଯାଇଥିଲା । ଲଜ୍ଜା, ସଙ୍କୋଚ, ଚିନ୍ତା ଓ ଭୟ ତାଙ୍କୁ ଗ୍ରାସ କରିବାକୁ ଲାଗିଲା । ମଣିଷ ଯେତେବେଳେ କାମର ପ୍ରବଳ ବେଗରେ ପଡ଼ିଯାଇଥାଏ ସେତେବେଳେ ବଡ଼ମାନଙ୍କ ପ୍ରତି ସଙ୍କୋଚ, ଧର୍ମ ଓ ଅଧର୍ମର ଭୟ, କର୍ତ୍ତବ୍ୟ ଅକର୍ତ୍ତବ୍ୟର ଜ୍ଞାନ ତା'ର ରହେ ନାହିଁ । କାମବେଗ ଶାନ୍ତ ହେଲାପରେ ତା'ର ବୁଦ୍ଧି ଆସେ । ରାଜା ଭାବିବାକୁ ଲାଗିଲେ—ଋଷି ଆଶ୍ରମକୁ ଆସି ମୁଁ କେଡ଼େ ଅନୁଚିତ କାର୍ଯ୍ୟ କଲି । ଋଷିଙ୍କ ବିନା ଅନୁମତିରେ ଶକୁନ୍ତଳାକୁ ମୋର ଏପରି ପ୍ରସ୍ତାବ ଦେବା ଉଚିତ ନଥିଲା । ମୁଁ ଛଳ କପଟପୂର୍ଣ୍ଣ, ସ୍ୱାର୍ଥମୟ ଧର୍ମକଥା କହି ସେହି ସରଳହୃଦୟା ଶକୁନ୍ତଳାକୁ ଠକି ଦେଲି । ମୁନି ଏସବୁ ଜାଣିବାପରେ ଯଦି ରାଗନ୍ତି ତେବେ ଅଭିଶାପ ଦେଇ ମୋର ରାଜ୍ୟକୁ ସମ୍ପୂର୍ଣ୍ଣ ଭସ୍ମସାତ୍ କରିଦେବେ । ଏପରି ଭାବନା ମନକୁ ଆସିବାରୁ ରାଜାଙ୍କ ମୁହଁ ରକ୍ତଶୂନ୍ୟ ହୋଇଗଲା । ସେ ଭୟଭୀତ ହୋଇ ଶକୁନ୍ତଳାଙ୍କୁ କହିଲେ— "ପ୍ରିୟେ ! ଏବେ ମୁଁ ରାଜଧାନୀକୁ ଫେରିଯିବାକୁ ଚାହୁଁଛି ।"

ଶକୁନ୍ତଳା ବିବଶିତା ପୂର୍ଣ୍ଣ ସ୍ୱରରେ କହିଲେ—"ଏବେ କାହିଁକି ? ବାପାତ ଏବେ ଆସୁଥିବେ । ତାଙ୍କୁ ଦେଖାକରି ଓ ତାଙ୍କ ଆଶୀର୍ବାଦ ନେଇଯିବେ ।"

ରାଜା କହିଲେ—"ଦେବି ! ରାଜକାର୍ଯ୍ୟ ବଡ଼ କଠିନ । ମୁନିଙ୍କ ଚରଣ ଧୂଳି ମୁଣ୍ଡରେ ଲଗାଇ କୃତାର୍ଥ ହେବା ମୋର ଇଚ୍ଛା ଥିଲା । କିନ୍ତୁ କାର୍ଯ୍ୟ ଭାରର ଗୁରୁତ୍ୱ ଦୃଷ୍ଟିରୁ ମୁଁ ନରୁପାୟ । ଆଉ କେବେ ଆସି ମୁନିଙ୍କୁ ଦର୍ଶନ କରିବି ।"

ଶକୁନ୍ତଳା ରାଜାଙ୍କ ଦୃଷ୍ଟି ସହିତ ନିଜର ଅନୁରାଗ ପୂର୍ଣ୍ଣ ଦୃଷ୍ଟି ମିଶାଇ ଓ ରାଜାଙ୍କ ବକ୍ଷଦେଶରେ ମୁଣ୍ଡ ରଖି କହିଲେ—"ଆପଣଙ୍କୁ ଛାଡ଼ି ମୁଁ କିପରି ରହିବି ?"

ରାଜା କହିଲେ—"ତୁମେ କିଛି ଚିନ୍ତା କରନାହିଁ । ଯିବାମାତ୍ରେ ମୁଁ ତୁମକୁ ନେବା ପାଇଁ ଚତୁରଙ୍ଗ ସେନା ଶୀଘ୍ର ପଠାଇଦେବି । ସେମାନଙ୍କ ସହିତ ମୋର ମନ୍ତ୍ରୀ ଓ ପୁରୋହିତ ଆସି ତୁମକୁ ରାଜରାଣୀ ପରି ବଡ଼ ଧୂମ୍‌ଧାମ୍‌ରେ ନେଇଯିବେ ।"

ଶକୁନ୍ତଳା କହିଲେ—"ମହାରାଜ ! ରାଜଧାନୀରେ ପହଞ୍ଚିବା ପରେ ଆପଣ ମୋତେ ଭୁଲିଯିବେ । ଆଶ୍ରମରେ କାହା ସହିତ ଦେଖା ହୋଇଥିଲା ତାହା କଣ ଆପଣଙ୍କର ମନେ ରହିବ ?"

ଶକୁନ୍ତଳାଙ୍କ ଓଠକୁ ଚେପିଧରି ରାଜା କହିଲେ—"ପ୍ରିୟେ ! ତୁମେ କିପରି ଏହା କହୁଛ ? ମୋତେ ଏପରି ଅବିଶ୍ୱାସ କାହିଁକି କରୁଛ ?"

ଏହା ଶୁଣିବା ମାତ୍ରେ ଶକୁନ୍ତଳାଙ୍କ ଦୁଇ ଆଖିରୁ ଝରଝର ହୋଇ ଲୋତକ ଧାର ବୋହିବାକୁ ଲାଗିଲା । ଏହା ଦେଖି ରାଜାଙ୍କ ହୃଦୟ ଦ୍ରବୀଭୂତ ହୋଇଗଲା । ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହେବାକୁ ଯାଉଥିବାର ଦେଖି ରାଜା ବାହାରିବାକୁ ପ୍ରସ୍ତୁତ ହେଲେ । ଶକୁନ୍ତଳା ମଧ୍ୟ ତାଙ୍କ ପଛେ ପଛେ ଚାଲିବାକୁ ଲାଗିଲେ । ତାଙ୍କୁ ଚାଲିବାରେ କଷ୍ଟ ହେଉଥାଏ । ବିରହ ଜନିତ ଦୁଃଖରେ ତାଙ୍କର ହୃଦୟ ଫାଟି ପଡୁଥାଏ । ପାଦ ଶିଥିଳ ହୋଇ ଯାଉଥିବାରୁ ସେ ବହୁ କଷ୍ଟରେ ଆଗକୁ ପାଦ ପକାଉଥାନ୍ତି । ରାଜା ଶକୁନ୍ତଳାଙ୍କୁ ଏକ ବୃକ୍ଷଚ୍ଛାୟା ତଳେ ଠିଆ କରାଇ କହିଲେ—"ଦେବି ! ତୁମକୁ କଷ୍ଟ ହେଉଛି । ଏଥିର ଆଉ ଆଗକୁ ଆସ ନାହିଁ ।" ଏହା କହି ରାଜା ତାଙ୍କୁ ଆଲିଙ୍ଗନ କରି ଆଗକୁ ଚାଲିଗଲେ । ଶକୁନ୍ତଳାଙ୍କ ମୁଣ୍ଡ ବୁଲାଇ ହେବାରୁ ସେଇଠି ବସି ପଡ଼ିଲେ । ସେତେବେଳକୁ ରାଜା ଦୂରକୁ ଚାଲିଯାଇଥିଲେ । ସେ ନିଜକୁ ବାରମ୍ବାର ଲୁଚାଇ ଲୁଚାଇ ଚାଲିଯାଉଥିଲେ । ଆଶ୍ରମର ଦ୍ୱାରଦେଶ ପାରହେବା ପରେ ସେ ଶୀଘ୍ର ଗତିରେ ଯାଇ ନିଜ ଶିବିରରେ ପହଞ୍ଚିଗଲେ ଓ ସୈନ୍ୟମାନଙ୍କୁ ଶୀଘ୍ର ରାଜଧାନୀ ଫେରିବା ପାଇଁ ଆଦେଶ ଦେଇ ନିଜେ ରଥରେ ବସି ରାଜଧାନୀ ପ୍ରତ୍ୟାବର୍ତ୍ତନ କଲେ ।

ବହୁ ସମୟ ପର୍ଯ୍ୟନ୍ତ ଶକୁନ୍ତଳା ସଘନ ବୃକ୍ଷ ଛାୟାରେ ଠିଆ ହୋଇ ରହିଲେ । କେତେବେଳେ ସେ ସେଇଠି ଶୋଇପଡ଼ିଲେ ତାହା ମଧ୍ୟ ଜାଣିପାରିଲେ ନାହିଁ । ସଚେତ ହେବା ପରେ ସେ ନିଜକୁ ଭୂମି ଉପରେ ଶୋଇଥିବାର ଦେଖି ଖୁବ୍ ଲଜ୍ଜିତା ହେଲେ । ସାରା ସଂସାର ତାଙ୍କୁ ଶୂନ୍‌ଶାନ୍ ଲାଗିଲା । ଅନ୍ୟମନସ୍କ ଭାବରେ ସେ ବହୁ କଷ୍ଟରେ ଉଠି ଠିଆହେଲେ ଓ ବଳ୍‌କଳ ବସ୍ତ୍ରରୁ ଧୂଳି ଝାଡ଼ିବାକୁ ଲାଗିଲେ । ଏହି ସମୟରେ ନିଜର ପ୍ରିୟ ସଖୀ ଅନସୂୟା ଓ ପ୍ରିୟମ୍ବଦା ହସି ହସି ଆସୁଥିବାର ଦେଖିଲେ । ଲଜ୍ଜାରେ ଶକୁନ୍ତଳା ତା'ଆଡ଼କୁ ଚାହିଁ ପାରିଲେ ନାହିଁ । ସଖୀ ସହିତ ନୀରବରେ ସେ ନିଜ କୁଟୀରକୁ ଗଲେ । ସଖୀ ତାଙ୍କୁ ସ୍ନାନ କରାଇ ଶୁଷ୍କ ବସ୍ତ୍ର ପିନ୍ଧାଇଦେଲା । କିନ୍ତୁ ଶକୁନ୍ତଳା ଚୁପ୍‌ଚାପ୍ ଗାଲରେ ହାତ ଦେଇ ବସି ରହିଲେ । କାହାର କହିଲେ ଆଗକୁ ଯିବାପାଇଁ ତାଙ୍କୁ ଲାଜ ଲାଗୁଥିଲା ।

କିଛି ସମୟ ପରେ କଣ୍ୱ ମୁନି ଟୋକେଇରେ ଫଳ, ଫୁଲ ଓ କୁଶବଡ଼ା ଧରି ଆସି ପହଞ୍ଚିଲେ । ସବୁଦିନ ପରି ସେ ପାଟି କଲେ—"ଝିଅ ଶକୁନ୍ତଳା !" ଏ ଡାକ ଶୁଣି ଶକୁନ୍ତଳାଙ୍କୁ ଅତ୍ୟନ୍ତ ସଙ୍କୋଚ ଲାଗିଲା । ସେ ବାହାରକୁ ଚାଲି ଆସିଲେ । କିନ୍ତୁ ସବୁଦିନ ପରି ଶକୁନ୍ତଳା ମୁନିଙ୍କ ପାଦ ଧୋଇଦେଲେନି କି ଫଳ ଟୋକେଇ ମଧ୍ୟ ମୁଣ୍ଡରୁ ଓହ୍ଲାଇ ତଳେ ରଖିଲେ ନାହିଁ । ଏହା ଦେଖି ସର୍ବଜ୍ଞ ମୁନି ସବୁ କଥା ଜାଣିପାରିଲେ । ଟୋକେଇକୁ

ବାରଣ୍ଡାରେ ରଖି ସେ କୁଟୀର ଭିତରକୁ ଗଲେ । ଶକୁନ୍ତଳା ଲାଜରେ ମୁହଁ ପୋତି ପଛେ ପଛେ ଗଲା । ମୁନି ତା' ମୁଣ୍ଡରେ ହାତ ଦେଇ କହିଲେ—"ଝିଅ ! କଣ ଏତେ ଘାବୁଛୁ ମନ ଭଲ ନାହିଁ କି ?"

ଏହା ଶୁଣିବାମାତ୍ରେ ଶକୁନ୍ତଳା ମୁନିଙ୍କ ପାଦତଳେ ଲୋଟି ପଡ଼ିଲା ଓ କାନ୍ଦିବାକୁ ଲାଗିଲା । ମୁନି ତାକୁ ତଳୁ ଉଠାଇ ଛାତିରେ ଲଗାଇଲେ ଓ କହିଲେ—"ଝିଅ ! ମୁଁ ଯୋଗ ଦୃଷ୍ଟିରେ ସବୁକଥା ଜାଣି ପାରିଛି । ତୁ ଧର୍ମ ବିରୁଦ୍ଧ କାର୍ଯ୍ୟ କରିନାହୁଁ । ରାଜର୍ଷି ଦୁଷ୍ମନ୍ତ ଜଣେ ଧର୍ମାତ୍ମା ପୁରୁଷ । ତାଙ୍କୁ ପତି ରୂପେ ବରଣ କରି ତୁ ଠିକ୍ କରିଛୁ ।"

ମୁନିଙ୍କ ଅନୁକୂଳ ମତ ଜାଣି ଶକୁନ୍ତଳା ଉଠିଲା ଓ ନିଜର ପାଳକ ପିତା ମୁନି କଣ୍ୱଙ୍କ ପାଦ ଧୋଇଦେଲା । ଫଳ ଟୋକେଇକୁ ନେଇ ଭିତରେ ରଖିଲା ଓ ନିଜର ଦୈନିକ କର୍ମରେ ଲାଗିଗଲା । ଏବେ ଶକୁନ୍ତଳାର ବାଳସୁଲଭ ଚପଳତା ଦୂର ହୋଇଗଲା । ସେ ଗର୍ଭବତୀ ହୋଇଥିଲା । ଶକୁନ୍ତଳା ପ୍ରତିଦିନ ଅପେକ୍ଷା କରୁଥିଲା—କେବେ ରାଜାଙ୍କ ସେନା ଆସିବ । କେବେ ମୁଁ ମୋର ପ୍ରାଣପ୍ରିୟଙ୍କ ଘରକୁ ଯିବି । କିନ୍ତୁ ଆଜି କାଲି କରି ଦିନ ଗଣୁ ଗଣୁ ଦୀର୍ଘ ତିନି ବର୍ଷ ବିତିଗଲା । ରାଜାଙ୍କର ସେନା ଆସିଲେ ନାହିଁ କି ରାଜାଙ୍କ ପାଖରୁ କୌଣସି ଖବର ମିଳିଲା ନାହିଁ । ଶକୁନ୍ତଳା ମଧ୍ୟ ଲାଜରେ ନିଜର ପିତାଙ୍କୁ କିଛି କହିପାରୁ ନଥିଲା ।

ମହର୍ଷି ସୂତ କହିଲେ—ମୁନିଗଣ ! ଶକୁନ୍ତଳାର ଆଶଙ୍କା ସତ୍ୟ ହେଲା । ରାଜା ରାଜଧାନୀରେ ପହଞ୍ଚିବା ପରେ ସବୁକିଛି ଭୁଲିଗଲେ । ଯଥା ସମୟରେ ଶକୁନ୍ତଳାଙ୍କର ପୁତ୍ର ସନ୍ତାନଟିଏ ଜନ୍ମ ହେଲା । ଶକୁନ୍ତଳାର ପୁଅକୁ ଦେଖି ଆଶ୍ରମବାସୀ ସମସ୍ତେ ଆନନ୍ଦିତ ହେଲେ । ନିଜେ ଭଗବାନ୍ କଣ୍ୱ ପିଲାଟିର ସମସ୍ତ ସଂସ୍କାର କରାଇଲେ । ଏଥର ଶକୁନ୍ତଳା ବାଳିକା ଅବସ୍ଥା ଛାଡ଼ି ପୁତ୍ରବତୀ ଜନନୀ ଅବସ୍ଥାରେ ଉପନୀତ ହୋଇଥିଲା ।

## ଛପ୍ପୟ

**କଣ୍ୱ-ଶାପ ତେଁ ଡରପି ପ୍ରିୟା ତୈଁ ଅନୁମତି ମାଁଗୀ ।**
**ମହିଷୀ ସମୁଝି ବିୟୋଗ ଦୁଃଖ ତେଁ ରୋବନ ଲାଗୀ ॥**
**ଦେ ଆଶ୍ୱାସନ ତୁରତ ନିକାସି ନିଜ ପୁର କୁଁ ଧାୟେ ।**
**ଇତନେ ମହଁ ଫଲ-ପୁଷ୍ପ ଲୟେ କୁଳପତି ମୁନି ଆୟେ ॥**
**ତବ ଶକୁନ୍ତଲା ଲାଜ-ବଶ, ମୁନି ସମୀପ ଆଇ ନହୀଁ ।**
**ସୋଚେ- ପିତୁ ହୋୱେଁ ନ ରୁସ, ପତି ପରମେଶ୍ୱର ଜପି କହୀଁ ॥**

# ଶକୁନ୍ତଳାର ପତି-ଗୃହ-ଯାତ୍ରା

କଣ୍ୱଃ କୁମାରସ୍ୟ ବନେ ଚକ୍ରେ ସମୁଚତାଃ କ୍ରିୟାଃ ।
ବଦଧ୍ୱା ମୃଗେନ୍ଦ୍ରାଂସ୍ତରସା କ୍ରୀଡ଼ନ୍ତି ସ୍ମ ସ ବାଲକଃ ॥
ତଂ ଦୁରତ୍ୟୟ ବିକ୍ରାନ୍ତମାଦାୟ ପ୍ରମଦୋତ୍ତମା ।
ହରେରଂଶାଂଶସମ୍ଭୂତଂ ଭର୍ତ୍ତୁରନ୍ତିକମାଗମତ୍ ॥
(ଭାଗ ୯ସ୍କ·୨୦ଅ, ୧୮-୧୯ଶ୍ଳୋ)

## ଛପପଦ

ମୁନି ଆଶ୍ୱାସନା ବଚନେ୍ନ ବ୍ୟାହୃ ଅନୁମୋଦନ କୀର୍ତ୍ତି ।
ପୁତ୍ରବତୀ ହୋ ପୁତ୍ରୀ ହରଷି କୁଳପତି ବର ଦୀର୍ତ୍ତି ॥
ସମୟ ପାଇକେ ପୁତ୍ର ଜନ୍ୟୋ ଋଷି ମୁନି ହରଷାୟେ ।
ଜାତ-କର୍ମ-ସଂସ୍କାର କଣ୍ୱ ବିଧିବତ୍ କରୱାୟେ ॥
ଅତି ସୁନ୍ଦର ଅତି ସ୍ୱସ୍ଥ ସୁତ, ଲଖି ପ୍ରମୁଦିତ ସବ, ଜନ ରହେଁ ।
କରେ ଦମନ ସିଂହାଦି କୋ, ସର୍ବ-ଦମନ ସବ ମୁନି କହେଁ ॥

ସଂସାର ସଂଯୋଗ ବିୟୋଗ ଶୃଙ୍ଖଳାରେ ଆବଦ୍ଧ ହୋଇ ରହିଅଛି । ଯେଉଁଠାରେ ଅନବରତ ଯିବା ଆସିବା ଲାଗିଛି ତାହାହିଁ ସଂସାର । ଯାହା ଏହି ଗମନାଗମନ ଦୂରରେ ତାହା ସଂସାରାତୀତ । ପ୍ରିୟର ସଂଯୋଗରେ ସମସ୍ତେ ସୁଖୀ ହୁଅନ୍ତି ଓ ପ୍ରିୟ ବିୟୋଗରେ ସମସ୍ତଙ୍କର ଆଖି ଓଦା ହୋଇଆସେ, ହୃଦୟ ଦ୍ରବୀଭୂତ ହୋଇଯାଏ । ଯାହାର ପ୍ରିୟ ଅପ୍ରିୟ ଜ୍ଞାନ ନାହିଁ ସେ ମହାପୁରୁଷ ନୁହେଁ ପୁରୁଷୋତ୍ତମ । ଯାହା ସଂଯୋଗରେ ଯେତିକି ଆନନ୍ଦ ମିଳେ ତା'ର ବିୟୋଗରେ ସେତିକି ଦୁଃଖ ହୁଏ । ପାଷାଣ ହୃଦୟ ବ୍ୟକ୍ତିର ବାଳକମାନଙ୍କ ପ୍ରତି କରୁଣାର୍ଦ୍ର ହେବାର ଦେଖାଯାଇଛି । ପ୍ରିୟ ବିୟୋଗରେ ସେମାନଙ୍କ ଆଖିରେ ଲୁହ ଆସିଯାଏ । ଜ୍ଞାନୀ ହୁଅନ୍ତୁ ବା ଅଜ୍ଞାନୀ ହୁଅନ୍ତୁ ସଂଯୋଗ ଓ ବିୟୋଗର ପ୍ରଭାବ ସମସ୍ତଙ୍କ ଉପରେ ପଡ଼ିଥାଏ । କିନ୍ତୁ ଏହି ପ୍ରଭାବକୁ ଭିନ୍ନ ଭିନ୍ନ ପ୍ରକୃତିର ଲୋକ ଭିନ୍ନ ଭିନ୍ନ ପ୍ରକାରେ ଅନୁଭବ କରିଥାଆନ୍ତି ।

ମହର୍ଷି ସୂତ କହିଲେ—"ମୁନିଗଣ ! ଶକୁନ୍ତଳା ପୁତ୍ରବତୀ ହୋଇଗଲା । ସେଥିପାଇଁ ଆଶ୍ରମବାସୀ ସମସ୍ତେ ଖୁସି ହେଲେ । ଶକୁନ୍ତଳାର ପୁଅ ଦେଖିବାକୁ ଖୁବ୍ ସୁନ୍ଦର

ହୋଇଥିଲା । ଖୁବ୍ ସୁସ୍ଥ ଓ ସବଳ ମଧ୍ୟ ଥିଲା । ତାର ଅଙ୍ଗ ପ୍ରତ୍ୟଙ୍ଗ ବେଶ୍ ଉଜ୍ଜ୍ୱଳ ଓ ଢଳ ଢଳ ହୋଇଥିଲା । ସେ ଜନନୀ ଗର୍ଭରେ ପୂରା ତିନି ବର୍ଷ ରହିଥିଲା । ଦେଖିବାକୁ ସେ ଠିକ୍ ସିଂହଛୁଆ ପରି ଦିଶୁଥିଲା । ଆଶ୍ରମରେ ରହି ପିଲାଟି ଧୀରେ ଧୀରେ ବଢ଼ିବାକୁ ଲାଗିଲା । ତା'ର କେଶ କୃଷ୍ଣ ଓ କୁଞ୍ଚିତ ଥିଲା । ଚଉଡ଼ା କପାଳ, ଧନୁଷାକାର ଭ୍ରୂ, ପଦ୍ମ ଫୁଲ ପରି ଆଖି ବଡ଼ ବଡ଼, ଶୁକର ନାସିକା ପରି ଧାର ନାକ, ସିଂହ ପରି କାନ୍ଧ, ହଣାଳା ଆଜାନୁଲମ୍ବିତ ବାହୁ, ଚଉଡ଼ା ଛାତି, ସିଂହ କଟି ପରି କଟି, ମାଂସଳ ଜଙ୍ଘ, ପାଦତଳ ରକ୍ତ ବର୍ଣ୍ଣ ଓ ସୁନ୍ଦର ନଖପଙ୍କ୍ତିରେ ପିଲାଟି ସର୍ବାଙ୍ଗ ସୁନ୍ଦର ହୋଇଥିଲା । ହାତରେ ତାର ଚକ୍ର ଚିହ୍ନ ଥିଲା । ଆଶ୍ରମବାସୀଙ୍କ ପାଇଁ ସେ ଏକ ଖେଳନା ହୋଇଥିଲା । ଯେଉଁ ମୁନି ଋଷି ତାକୁ ଦେଖୁଥିଲେ କୋଳକୁ ନେଇ ଗେଲ କରୁଥିଲେ । ନିଜ ମା' କୋଳରେ ରହିବାକୁ ସେ ସମୟ ପାଉ ନ ଥିଲା । ମା' କୋଳକୁ ଯେତେବେଳେ ସେ ଯାଉଥିଲା ସେତେବେଳେ ମା' କୋଳ ପୂରିଯାଉଥିଲା ।

ଦୁଧ ପିଇ ସାରିବା ସଙ୍ଗେ ସଙ୍ଗେ ସେ ତଳକୁ ଡେଇଁପଡ଼ି ଏପାଖ ସେପାଖ ଦୌଡ଼ିବାକୁ ଲାଗିବ । ଗୁହାଳକୁ ଯାଇ ବାଛୁରୀଙ୍କୁ କୁଣ୍ଢାଇ ପକାଇବ । ଗାଈମାନଙ୍କ ଲାଞ୍ଜ ଧରି ଓହଳି ପଡ଼ିବ, ଶିଙ୍ଗ ଧରି ଗାଈ ଉପରେ ଚଢ଼ିଯିବ । ସେ କାହାରିକୁ ଭୟ କରୁ ନ ଥିଲା । ଧୀରେ ଧୀରେ ସେ ବଡ଼ ହେଲା । ଆଶ୍ରମରେ ତାକୁ ଛ'ବର୍ଷ ପୂରିଗଲା । ଦେଖିବାକୁ ସେ ସିଂହ ପରି ଦିଶୁଥିଲା । ସିଂହ ଗର୍ଜ୍ଜନ ଶୁଣିବା ମାତ୍ରେ ସେ ସେଠାକୁ ଦୌଡ଼ି ଯାଇ ସିଂହ କାନ ଧରି ଘୋଷାରି ଆଣୁଥିଲା । ଦୁଇଟା ସିଂହ ପାଇଲେ ସେ ଦୁହିଁଙ୍କୁ ଲଢ଼ାଉଥିଲା । ବଣୁଆ ବାଘ ଉପରେ ଚଢ଼ି ଯାଉଥିଲା । ଦଉଡ଼ୁଥିବା ହରିଣକୁ ଧରି ପକାଉଥିଲା । ଗଛ ଉପରେ ଚଢ଼ି ଭାଲୁର କେଶକୁ ଧରି ଗଛ ଉପରୁ ତଳକୁ ଡେଇଁ ପଡୁଥିଲା । ସମସ୍ତେ ତାହାର ଅଲୌକିକ ପରାକ୍ରମ ଦେଖି ଚକିତ ହୋଇଯାଉଥିଲେ । ତେଣୁ ସମସ୍ତେ ତା'ର ନାମ ରଖିଲେ ସର୍ବଦମନ । କାରଣ ସେ ସବୁ ପଶୁଙ୍କୁ ଦମନ କରୁଥିଲା । ଭଗବାନ୍ କଣ୍ୱଙ୍କ ଚରଣରେ ତା'ର ଅନନ୍ୟ ଭକ୍ତି ଥିଲା । ତାଙ୍କର ପ୍ରତ୍ୟେକ ଆଦେଶକୁ ସେ ଅକ୍ଷରେ ଅକ୍ଷରେ ପାଳନ କରୁଥିଲା । ବଣୁଆ ଅରଣା ମଇଁଷିକୁ ଉପରକୁ ଉଠାଇ ଫିଙ୍ଗି ଦେଉଥିଲା । ଶକୁନ୍ତଳା ବାରମ୍ବାର କହୁଥିଲା—"ସର୍ବଦମନ ! ଦେଖ ତୁ ଯେପରି ଦୁଷ୍ଟ ହେଉଛୁ କେଉଁଦିନ ସେ ସିଂହ କି ବାଘ ତୋତେ ଆକ୍ରମଣ କରିବ ତାହା କହିହେବନି ।"

ସର୍ବଦମନ କହୁଥିଲା—"ମା' ! ମୁଁ କଣ କୌଣସି ସିଂହଠୁ କମ୍ ବଳଶାଳୀ ? ମୋତେ ସିଂହର ଦାନ୍ତ ଖୁବ୍ ଭଲଲାଗେ । ମୁଁ ତାକୁ ଧରି ତାର ଦାନ୍ତ ଗଣେ । ଦେଖ୍ ମୁଁ ଦୁଇଟା ସିଂହ ବାନ୍ଧି ରଖିଛି । ଏବେ ସେ ଦୁହିଁଙ୍କୁ ଲଢ଼ାଇବ ।"

ଶକୁନ୍ତଳା କହୁଥିଲେ—"ହେ ଭଗବାନ୍ ! ତୁ ତ ଏକ ବଡ଼ ପାଗଳା, ଫିଟାଇଦେ ଫିଟାଇଦେ ସିଂହଙ୍କୁ । ସେମାନଙ୍କୁ ଏପରି ବାନ୍ଧନ୍ତୁ ନାହିଁ ।" ମା'ଙ୍କ କଥା ମାନି

ସର୍ବଦମନ ସିଂହ ଦୁଇଟିକୁ ସିଖାଇ ଦେଉଥିଲା । ଏହିପରି ଅନେକ ପ୍ରକାର ପରାକ୍ରମ ଦେଖାଇ ସେହି ବାଳକ ସମସ୍ତଙ୍କୁ ଆଶ୍ଚର୍ଯ୍ୟ ଚକିତ କରିପକାଉଥିଲା ।

କେତେଦିନ ପରେ କୁଳପତି କଣ୍ୱ କହିଲେ—"ଝିଅ ! ରାଜା ତ ତୋତେ ଡାକିଲେ ନାହିଁ । ଠିକ୍ ଅଛି, ସେ ନ ଡାକିଲେ ବି ତୁ ତାଙ୍କ ମହଲକୁ ଚାଲିଯା ।"

ଶକୁନ୍ତଳା କହିଲେ—"ବାପା ! ରାଜା ଯଦି ମୋର ଖବର ନେବା ପାଇଁ ଆଗ୍ରହୀ ନୁହେଁ ତେବେ ମୁଁ ଆପଣଙ୍କ ପାଦ ପାଖରେ ରହି ଦିନ କଟାଇଦେବି । ଆପଣ ତ ଏଠାରେ ଦଶ ହଜାର ଲୋକଙ୍କୁ ପାଳନ କରୁଛନ୍ତି । ଆପଣଙ୍କୁ ମୁଁ କାହିଁକି ବୋଝ ପରି ଲାଗୁଛି ?"

କଣ୍ୱ ମୁନି କହିଲେ—"ଝିଅ ! ବାହାହୋଇ ଯାଇଥିବା ଝିଅମାନେ ବାପ ଘରେ ବେଶୀ ଦିନ ରହିବା ଉଚିତ ନୁହେଁ । ଏପରି ହେଲେ ସଂସାରରେ ଅପବାଦ ସୃଷ୍ଟି ହୁଏ ଅକୀର୍ତ୍ତି ହୁଏ । ପତି ଧନୀ ହେଉ ବା ଦରିଦ୍ର ହେଉ, ତାଙ୍କରି ଘର ହିଁ ସ୍ତ୍ରୀ ପାଇଁ ଶୋଭାକର । ପତି ଥିବାବେଳେ ବଡ଼ିଲା ଝିଅ ବାପ ଘରେ ବୋଝ ପରି ହୋଇଯାଏ । କେବଳ ପେଟ ପୂରାଇବା ଯଥେଷ୍ଟ ନୁହେଁ । ଗୃହସ୍ଥ ଧର୍ମ ମଧ୍ୟ ପାଳନ କରିବାକୁ ପଡ଼େ ।"

ଶକୁନ୍ତଳା କହିଲେ—"ସେଠାରୁ ତ କୌଣସି ଖବର ଆସିଲା ନାହିଁ । ବିନା ଡକରାରେ ସେଠାକୁ ଯିବା ଉଚିତ ନୁହେଁ ।

ମହର୍ଷି କଣ୍ୱ କହିଲେ—"ଝିଅ ! ତୋ' କହିବା ଠିକ୍ । ବିନା ଡକରାରେ ଗଲେ ଆଦର ମିଳେ ନାହିଁ, କିନ୍ତୁ ବାପ ଘର, ପତିଙ୍କ ଘର, ଗୁରୁଙ୍କ ଘର ଓ ନିଜର ମିତ୍ର ଘରକୁ ବିନା ନିମନ୍ତ୍ରଣରେ ଗଲେ କୌଣସି ଦୋଷ ନାହିଁ, କାରଣ ସେସବୁ ଠିକ୍ ନିଜର ଘର ପରି ବିବେଚିତ ହୁଏ ।"

ଶକୁନ୍ତଳା କହିଲା—"ଆପଣ ଯାହା ଆଦେଶ ଦେଉଛନ୍ତି ତାହା ଅନ୍ୟଥା ହେବ ନାହିଁ । କିନ୍ତୁ ମୁଁ ଆପଣଙ୍କୁ ଛାଡ଼ି ରହିବି କିପରି ?" ଏହା କହୁ କହୁ ଶକୁନ୍ତଳା କାନ୍ଦିବାକୁ ଲାଗିଲେ ।

ମୁନି ନିଜର ଦୁଇ ପାଞ୍ଚଜଣ ବୁଦ୍ଧିମାନ୍ ଶିଷ୍ୟଙ୍କୁ ଡାକି କହିଲେ—"ତୁମେମାନେ ଶକୁନ୍ତଳାକୁ ସାଙ୍ଗରେ ନେଇ ହସ୍ତିନାପୁରର ମହାରାଜ ଦୁଷ୍ମନ୍ତଙ୍କ ପ୍ରାସାଦରେ ପହଞ୍ଚାଇ ଦେଇଆସ ।"

ଏହା କହି ମୁନି ଶକୁନ୍ତଳାର ସଖୀଙ୍କୁ ଯିବାପାଇଁ ପ୍ରସ୍ତୁତ ହେବାକୁ କହିଲେ । ତପସ୍ୱୀମାନେ ଆଶିଷ ଦାନ କଲେ । ସେମାନଙ୍କ ମଧ୍ୟରୁ ଜଣେ ସର୍ବଦମନଙ୍କୁ କାଖେଇଲା । ସମସ୍ତେ ହସ୍ତିନାପୁର ଯାତ୍ରା ଆରମ୍ଭ କଲେ । ଶକୁନ୍ତଳାଙ୍କ ଆଖିରୁ ଲୁହ ବୋହିଚାଲିଥାଏ ।

ଯାହାଙ୍କୁ ସେ ଦେଖୁଥିଲେ ତାଙ୍କୁ ଧରପକାଇ ବାହୁନି ବାହୁନି କାନ୍ଦୁଥିଲେ । ଯେପରି ସେ ଚିରଦିନ ପାଇଁ କୁଆଡ଼େ ଚାଲିଯାଉଛନ୍ତି ସେହିପରି ଶକୁନ୍ତଳା ଅନୁଭବ କରୁଥିଲେ । ଆବେଗରେ ଗଳା ଫୁଲି ଉଠୁଥିଲା । ଆଶ୍ରମର ପ୍ରତ୍ୟେକ କଥାପ୍ରତି ଶକୁନ୍ତଳାଙ୍କର ମୋହ ହୋଇ ଯାଇଥିଲା । ଯେଉଁସବୁ ଗଛକୁ ଶ୍ରେଷ୍ଠବେଳକୁ ଲଗାଇଥିଲେ ସେଥିରେ ଫୁଲ ଫଳ ଧରି ସାରିଥିଲା । ଯେଉଁ ହରିଣକୁ କୋଳରେ ରଖି ତୃଷା ସାହାଯ୍ୟରେ ଦୁଧ ପିଆଇଥିଲେ ସେମାନଙ୍କର ବଡ଼ ବଡ଼ ଶିଙ୍ଗ ହୋଇଯାଇଥିଲା । ତଥାପି ସେମାନେ ଶକୁନ୍ତଳାଙ୍କୁ ପିଲଙ୍କ ପରି ଘେରି ହୋଇ ଠିଆ ହୋଇଥିଲେ ଓ ଚାହୁଁଥିଲେ । ସେମାନଙ୍କୁ ଆଉଁସି ଦେଉଥିଲେ, ଗେଲ କରୁଥିଲେ ଓ ସେମାନଙ୍କ ମୁହଁ ଉପରେ ନିଜର ମୁହଁ ରଖି କହୁଥିଲେ—ମୁଁ ଯାଉଛି ।

ଯେଉଁ ପକ୍ଷୀମାନଙ୍କୁ ନୀବାର ଚାଉଳ ଦେଖାଇ ସେ ପ୍ରତିଦିନ ଡାକୁଥିଲେ ସେମାନେ ଆଜି ମନକୁ ମନ ଗଛ ଉପରୁ ତଳକୁ ଓହ୍ଲାଇ ଆସିଥିଲେ । ତଳେ ବୁଣା ହୋଇଥିବା ଚାଉଳ ସେମାନେ ଖାଇ ନଥିଲେ । ଶକୁନ୍ତଳାଙ୍କୁ ନିର୍ନିମେଷ ଦୃଷ୍ଟିରେ ଚାହିଁ ରହି କାନ୍ଦୁଥିଲେ । ଆଶ୍ରମର ସାନ ସାନ ବ୍ରହ୍ମଚାରୀମାନେ ଆସି ଶକୁନ୍ତଳାଙ୍କୁ ଘେରି ଠିଆ ହେଲେ । ସେମାନେ ପରସ୍ପରକୁ ଚାହିଁ ପଚାରୁଥିଲେ—ନାନୀ ଆଜି କୁଆଡ଼େ ଯିବେ ?"

କେହି ଜଣେ କହିଲା—"ତା' ସ୍ୱାମୀଙ୍କ ଘରକୁ ଯାଉଛନ୍ତି । ପିଲମାନେ କହୁଥିଲେ —ଆମ ସମସ୍ତଙ୍କର ସ୍ୱାମୀ ଓ ଭଗବାନ୍ ତ ହେଉଛନ୍ତି ମହର୍ଷି କଣ୍ୱ ।"

ଅନ୍ୟଜଣେ କହିଲା—"ଆମର ନୁହେଁ, ନାନୀ ତାଙ୍କ ଶାଶୁ ଘରକୁ ଯାଉଛନ୍ତି ।"

ଅନ୍ୟ ପିଲମାନେ ପଚାରିଲେ—"ଶାଶୁଘରୁ ନାନୀ କେବେ ଫେରିବେ ?"

କେହି ଜଣେ କହିଲା—"ଏଥର ଆଉ ଫେରି ଆସିବେ କାହିଁକି ? ଫେରିବା ପାଇଁ କଣ କିଏ ଶାଶୁ ଘରକୁ ଯାଏ ?"

ଏହା ଶୁଣିବାମାତ୍ରେ ପିଲମାନେ କାନ୍ଦିବାକୁ ଆରମ୍ଭ କଲେ । ଶକୁନ୍ତଳା ସେମାନଙ୍କ ମୁହଁରେ ଚୁମା ଦେଇ ଆଖିରୁ ଲୁହ ପୋଛି ଦେଇ କହିଲେ—"ଭାଇ ! ମୁଁ ଶୀଘ୍ର ଫେରି ଆସିବି ।"

ପିଲମାନେ କହିଲେ—"ନାନୀ, ଆମେ ବି ତୁମ ସାଙ୍ଗରେ ଯିବୁ ।"

ଶକୁନ୍ତଳା କହିଲେ—"ଭାଇମାନେ ! ବହୁତ ଦୂର ବାଟ ଯିବାକୁ ହେବ । ତୁମେ ସମସ୍ତେ ଗଲେ ଥକି ପଡ଼ିବ ।"

ପିଲମାନେ ପଚାରିଲେ—"ସର୍ବଦମନ କପରି ଯାଉଛି ? ଆମେ ସବୁ ତା ସାଙ୍ଗରେ ଯିବୁ ।"

ଅନ୍ୟ ଜଣେ ଋଷି, ପିଲମାନଙ୍କୁ ବୁଝାଇ କହିଲେ—"ପିଲେ ! ଆମେ ସମସ୍ତେ ଯେତେବେଳେ ଯିବୁ ସେତେବେଳେ ତୁମେ ସବୁ ଆମ ସହିତ ଯିବ ।"

ଭଗବାନ୍ କଣ୍ୱ ବା ଉମ୍ଭାଭ ଯିବା ପାଇଁ କହୁଥିଲେ । ତାଙ୍କ ହୃଦୟ ମଧ୍ୟ ଭାରି ହୋଇଆସୁଥିଲା । ବାହାରକୁ ସେ କାନ୍ଦୁ ନଥିଲେ । କିନ୍ତୁ ତାଙ୍କ ହୃଦୟ ତରଳି ଯାଇଥିଲା । ଭିତରେ ଭିତରେ ସେ କାନ୍ଦୁଥିଲେ । ତାଙ୍କ ମୁଖମଣ୍ଡଳରେ ତାହା ପରିଷ୍କାର ଫୁଟି ଉଠୁଥିଲା । ତାଙ୍କ କଥା ଗୁଡ଼ିକ ସ୍ପଷ୍ଟ ହେଉ ନଥିଲା । ବଡ଼ କଷ୍ଟରେ ସେ ଯାହାକିଛି କହୁଥିଲେ ।

ମୁନି ଅନେକଥର ଯିବାପାଇଁ କହିବା ପରେ ଗଣ୍ଠିଲି ପୁଟୁଳି ଉଠେଇ ଶିଷ୍ୟମାନେ ଚାଲିବାକୁ ଆରମ୍ଭ କଲେ । ଶକୁନ୍ତଳା ପିତା କଣ୍ୱଙ୍କ ପାଦ ଛୁଇଁବା ପରେ ତାଙ୍କୁ କୁଣ୍ଢେଇ ପକାଇଲା ଓ ଅବୋଧ ବାଳିକା ପରି କାନ୍ଦିବାକୁ ଲାଗିଲା । ମୁନି ତା'ର ମୁଣ୍ଡକୁ ଆଉଁସି 'ଝିଅ ! କାନ୍ଦନା କାନ୍ଦନା' ବୋଲି ବାରମ୍ବାର କହୁଥିଲେ । ଆମେ ବେଳେ ବେଳେ ତୋ' ଘରକୁ ଯିବୁ । ସେ ଦେଖିଲେ ଶକୁନ୍ତଳାର କେଶ ଓଦା ହୋଇଯାଇଛି । ତା'ର କୁଞ୍ଚିକୁଞ୍ଚିଆ କେଶରେ ଅଶ୍ରୁଧାର ବିନ୍ଦୁ ବିନ୍ଦୁ ହୋଇ ପଡ଼ୁଛି । ମୁନି ଜାଣିନଥିଲେ ଯେ ସେ ସବୁ ତାଙ୍କର ଅଶ୍ରୁବିନ୍ଦୁ ଥିଲା ।

କୌଣସି ପ୍ରକାରେ ସେ ଶକୁନ୍ତଳାକୁ ନିଜଠାରୁ ଅଲଗା କରିଥିଲେ । ପିଲାମାନେ କାନ୍ଦୁଥିଲେ । ହରିଣ ପଛେ ପଛେ ଦୌଡ଼ୁଥିଲା । ଶକୁନ୍ତଳାଙ୍କ ଶାଢ଼ୀକୁ ସେ ଦାନ୍ତରେ କାମୁଡ଼ିଥିଲା । ପକ୍ଷୀମାନେ ଆଗେ ଆଗେ ଚାଲିଥିଲେ । ତପସ୍ୱିନୀମାନେ ଶକୁନ୍ତଳାକୁ ଧରି ଆଖିରୁ ଲୁହ ପୋଛୁ ପୋଛୁ ସାଙ୍ଗରେ ଚାଲୁଥାନ୍ତି । କଣ୍ୱମୁନି ମଧ୍ୟ ବାଟ ବତାଇଦେବା ପାଇଁ ଆଶ୍ରମର ଦ୍ୱାରଦେଶଯାଏ ଆସିଲେ । ଆଶ୍ରମରେ ତ ମାଲିନୀ ନଦୀର ଧାର ପ୍ରବାହିତ ହେଉ-ଥିଲା । ଆଜି ଆଉ ଏକ ଧାର ସମସ୍ତଙ୍କୁ ସାଙ୍ଗରେ ଭସାଇ ନେଇ ବହିବାକୁ ଲାଗିଲା । ସମସ୍ତଙ୍କ ଆଖିରୁ ଅବାରିତ ଅଶ୍ରୁଧାର ପ୍ରବାହିତ ହେଉଥିଲା । ସମସ୍ତେ ବିଷର୍ଣ୍ଣ ମନରେ ଶକୁନ୍ତଳାର ଅନୁଗମନ କରୁଥିଲେ ।

ଆଶ୍ରମର ଦ୍ୱାରଦେଶରେ ଠିଆ ହୋଇ ମୁନି କହିଲେ—"ଝିଅ ! ଦଶ ଦିକ୍‌ପାଳ ତୋତେ ରକ୍ଷା କରନ୍ତୁ । ବନର ଅଧିଷ୍ଠାତ୍ରୁ ଦେବ ତୋର ଅନୁକୂଳ ହୁଅନ୍ତୁ । ମାର୍ଗରେ ଅନୁକୂଳ ପବନ ପ୍ରବାହିତ ହେଉ । ତୋତେ ପଥଚଲା ଶ୍ରମ ନଲାଗୁ । ସମସ୍ତ ଦେବ ଦେବୀ ତୋର ମଙ୍ଗଳ କରନ୍ତୁ । ହଉ, ଏଥର ଯା ।" ଏତକ କହି ମୁନି ତାଙ୍କ ଝିଅର ଶିର ଆଘ୍ରାଣ କଲେ । ତାଙ୍କ ପାଦ ଛୁଉଁଥିବା ସର୍ବଦମନକୁ ଉଠାଇ ତାର ଆରକ୍ତ ମୁଖକୁ ଅନେକଥର ଗେଲ କଲେ । ଏହି ସମୟରେ ସମସ୍ତଙ୍କ ହୃଦୟ ବିଗଳିତ ହୋଇଯାଇଥିଲା । ପରିସ୍ଥିତି ଅତ୍ୟନ୍ତ କରୁଣ ହେବାକୁ ଯାଉଥିବାରୁ ମୁନି ଫେରିଆସିଲେ । ଶକୁନ୍ତଳା କାନ୍ଦୁଥିଲେ ଓ ପଛକୁ ବାରମ୍ବାର ବୁଲି ବୁଲି, ଆଗକୁ ଯାଉଥିଲେ । ତାଙ୍କର ପାଦ ଆଗକୁ ଯାଉ ଥିଲା, କିନ୍ତୁ ଦୃଷ୍ଟିଥିଲା ପଛରେ । ମନ କେତେବେଳେ ଆଶ୍ରମକୁ ଚାଲି ଆସୁଥିଲା ତ କେତେବେଳେ ରାଜପ୍ରାସାଦ ଆଡ଼କୁ ଚାଲିଯାଉଥିଲା । ଏହିପରି ଅନେକ ସ୍ମୃତିର ବୋଝ

ସାଙ୍ଗରେ ନେଇ ସେ ଯାଉଥିଲେ । ଶକୁନ୍ତଳା ଦୂରକୁ ଗ୍ଲିଯିବା ପରେ ମୁନି ଆଶ୍ରମକୁ ଲେଉଟି ଆସିଲେ ।

କଣ୍ୱମୁନିଙ୍କ ଆଶ୍ରମରେ ହଜାର ହଜାର ତପସ୍ୱୀ ଓ ତପସ୍ୱିନୀ ରହୁଥିଲେ । ସେମାନେ ସମସ୍ତେ ଥିଲେ, କିନ୍ତୁ ଏକା ଶକୁନ୍ତଳା ନଥିଲା । ସେଥିପାଇଁ ସମଗ୍ର ଆଶ୍ରମ ଶୂନ୍‌ଶାନ୍ ଲାଗୁଥିଲା । ମୁନିଙ୍କ ମନରେ ବାରମ୍ବାର ଶକୁନ୍ତଳାର ସ୍ମୃତି ଜାଗ୍ରତ ହେଉଥିଲା । ସେ ଲତାକୁ କେତେ ଭଲ ପାଉଥିଲା । ଏହି ଅଶୋକ ଗଛକୁ ସେ ନିଜର ଜନ୍ମଦିନ ଲଗାଇଥିଲା । ଏହିସବୁ ପଦ୍ମଫୁଲ ଗୁଡ଼ିକୁ ଆଣିବା ପାଇଁ ସେ ମୋ' ପାଖରେ କେତେ ଜିଦ୍ କରୁଥିଲା । ଏହି ହରିଣ ପାଇଁ ମୋ'ଠାରୁ ସେ ବହୁତ ଗାଳି ଶୁଣିଥିଲା । ତଥାପି ସେ ତାକୁ ପାଖରେ ଶୁଆଉଥିଲା । ପକ୍ଷୀମାନଙ୍କର ପାଣି ପିଇବାକୁ ସୁବିଧା ହେବ ବୋଲି ଗଛରେ ସେ ଏହି ପାତ୍ରଗୁଡ଼ିକ ବାନ୍ଧି ଦେଇଥିଲା । ପ୍ରତିଦିନ ମନେ ପକାଇ ସେ ଏଥିରେ ପାଣି ରଖୁଥିଲା । ସବୁ ଗଛରେ ପାଣି ଦେଇ ସାରିବା ପରେ ସେ ଖାଇବାକୁ ଆସୁଥିଲା । ଏହି ଫୁଲଗୁଡ଼ିକ ସେ କେତେ ଆନନ୍ଦ ଓ ଉଲ୍ଲାସ ସହକାରେ ତୋଳୁଥିଲା । ମୋର ପୂଜା ପାଇଁ ସେ କେତେ ସୁନ୍ଦର ସୁନ୍ଦର ମାଳା ଗୁନ୍ଥି ଦେଉଥିଲା । ଖାଇବା ପାଇଁ ସେ କେତୋଟି ଶ୍ରେଷ୍ଠ ଶ୍ରେଷ୍ଠ କନ୍ଦମୂଳ ତିଆରି କରିଥିଲା । ମୁନି ଏହିପରି କଥାସବୁ ଭାବୁ ଭାବୁ ସନ୍ଧ୍ୟା ହୋଇଗଲା । ଆଜି ସେ ମଧ୍ୟାହ୍ନକୃତ୍ୟ କରି ନଥିଲେ କି କିଛି ଖାଇନଥିଲେ । ଏହିପରି କେତେଦିନ ଯାଏ ଆଶ୍ରମରେ ଶକୁନ୍ତଳାର ବିୟୋଗ ଦୁଃଖରେ ସମସ୍ତେ ଦୁଃଖିତ ହୋଇ ଥିଲେ ।

ମୁନିଙ୍କ ଶିଷ୍ୟମାନେ ସର୍ବଦମନ ଓ ଶକୁନ୍ତଳାଙ୍କୁ ନେଇ ଦୁଷ୍ମନ୍ତଙ୍କ ରାଜଧାନୀରେ ପହଞ୍ଚିଗଲେ । ସେମାନେ ନିର୍ଭୀକଭାବେ ରାଜପ୍ରାସାଦ ଭିତରକୁ ପ୍ରବେଶ କଲେ । ରାଜକର୍ମଚାରୀମାନଙ୍କ ଦ୍ୱାରା ସେମାନେ ରାଜାଙ୍କ ପାଖକୁ କହିପଠାଇଲେ—"ଆମେମାନେ ଭଗବାନ୍ କଣ୍ୱଙ୍କ ଆଶ୍ରମରୁ ଆସିଛୁ, ଶକୁନ୍ତଳାଙ୍କୁ ରାଜପ୍ରାସାଦରେ ପହଞ୍ଚାଇ ଦେବାପାଇଁ ସେ ଆମକୁ ଆଦେଶ ଦେଇଛନ୍ତି । ସେଥିପାଇଁ ସର୍ବଦମନ ସହ ଶକୁନ୍ତଳାଙ୍କୁ ଆମେ ସାଙ୍ଗରେ ନେଇଆସିଛୁ ।"

ଏହି ସମ୍ବାଦ ପାଇବା ପରେ ରାଜା କେବଳ ମୁନିମାନଙ୍କୁ ପାଖକୁ ଡାକିଲେ । ମୁନିମାନେ ରାଜାଙ୍କର ଜୟଜୟକାର କଲେ ଓ ଆଶୀର୍ବାଦ ଦେଲେ । କୁଳପତିଙ୍କ ପକ୍ଷରୁ ମହାରାଜାଙ୍କୁ କୁଶଳ ପ୍ରଶ୍ନ ପଚାରିଲେ ଏବଂ ସର୍ବଦମନ ସହ ଶକୁନ୍ତଳାଙ୍କୁ ଆଣିଥିବା କଥା କହିଲେ ।

ସବୁକଥା ଶୁଣି ରାଜା କହିଲେ—"ମୁନିଗଣ ! ଆପଣମାନେ ବିଶ୍ରାମ କରନ୍ତୁ । କାଲି ରାଜସଭାରେ ମୁଁ ଏକଥା ବିଚାର କରିବି । ଆପଣମାନେ ଯଜ୍ଞଶାଳାକୁ ଯାଇ ସେଠାରେ ପ୍ରସାଦ ସେବନ କରି ରାତ୍ରିକ ଅବସ୍ଥାନ କରନ୍ତୁ ।"

ମୁନିମାନେ କହିଲେ—"ଶକୁନ୍ତଳା ଆମଠାରୁ ବୟସରେ ସାନ । ଆମେ ତା' ପାଖରେ କପରି ପ୍ରସାଦ ଗ୍ରହଣ କରିବୁ ? ଆପଣମାନଙ୍କ ଇଚ୍ଛା ଯେତେବେଳେ ହେବ ସେତେବେଳେ ବିଚାର କରନ୍ତୁ । ଶକୁନ୍ତଳାକୁ ରାଜପ୍ରାସାଦରେ ପହଞ୍ଚାଇ ଦେବାପାଇଁ ହିଁ ଭଗବାନ୍ କଣ୍ୱ ଆମକୁ ଆଦେଶ ଦେଇଥିଲେ । ଆମେ ତାହା ପାଳନ କରିଛୁ ଓ ଆପଣଙ୍କୁ ମଧ୍ୟ ଜଣାଇ ଦେଇଛୁ । ଏଥର ଆମକୁ ବିଦାୟ ଦିଅନ୍ତୁ । ଏହା କହି ପୁନର୍ବାର ରାଜାଙ୍କୁ ଜୟଧ୍ୱନି କରି ଶକୁନ୍ତଳାଙ୍କୁ ରାଜମହଲରେ ଛାଡ଼ିଦେଇ ତପସ୍ୱୀମାନେ ଫେରିଗଲେ ଓ କୁଳପତି କଣ୍ୱଙ୍କୁ କହିଲେ—ଭଗବାନ୍ ! ଆପଣଙ୍କ ଆଦେଶ ଅନୁସାରେ ଶକୁନ୍ତଳା ଓ ସର୍ବଦମନଙ୍କୁ ରାଜପ୍ରାସାଦରେ ଛାଡ଼ି ରାଜାଙ୍କୁ ସବୁକଥା ଜଣାଇ ଆସିଛୁ । ଏହାଶୁଣି କୁଳପତି ସନ୍ତୋଷ ଲାଭ କଲେ ।

ମହର୍ଷିସୂତ କହିଲେ—"ମୁନିଗଣ ! ରାଜମହଲରେ କେହିହେଲେ ଶକୁନ୍ତଳାର ସତ୍କାର କଲେ ନାହିଁ, ରାଜଦ୍ୱାର ସମ୍ମୁଖରେ ହିଁ ସେ ବସି ରହିଲେ ।"

## ଛପ୍ପୟ

ସୁତ ଶକୁନ୍ତଳା ସହିତ ପଠାଇ ପୁନି ପତିଗୃହ ମୁନି ।
ଦୁଃଖିତ ନିହାରତ ଚଲୀ ଲତା ତରୁ ଖଗମୃଗ ପୁନି ପୁନି ।।
କୁଳପତି କରୁଣା କରି ହୃଦୟ ତେତିଂ ସୁତା ଲଗାଇ ।
ପିତୃଗୃହ ତେଁ ହେଁ, ବିଦା ରାଜମହଲନି ମହଁ ଆଇ ।।
ସଭାଭବନ ମହଁ ଆଇକେଁ, ନୃପ କୁଁ ନିଜ ପରିଚୟ ଦୟୋ ।
ସୁନି ଅବାକ୍ ସେ ରହେ ନୃପ, ଅତି ବିସ୍ମୟ ସବକୁଁ ଭୟୋ ।।

# ପତିଦ୍ୱାରା ଶକୁନ୍ତଳାଙ୍କ ଅପମାନ

ଯଦା ନ ଜଗୃହେ ରାଜା ଭାର୍ଯ୍ୟାପୁତ୍ରାବନିନ୍ଦିତୌ ।
ଶୃଣ୍ୱତାଂ ସର୍ବଭୂତାନାଂ ଖେ ବାଗାହାଶରୀରିଣୀ ॥
ମାତା ଭସ୍ତ୍ରା ପିତୁଃ ପୁତ୍ରୋ ଯେନ ଜାତଃ ସ ଏବ ସଃ ।
ଭରସ୍ୱ ପୁତ୍ରଂ ଦୁଷ୍ୟନ୍ତ ମାବମଂସ୍ଥାଃ ଶକୁନ୍ତଳାମ୍ ॥

(ଭାଗ-୯-ସ୍କ, ୨୦-ଅ, ୨୦-୨୧ଶ୍ଳୋ)

ରାଜା ବୋଲେ କୌନ କହାଁ କୀ ହୈ ତୂ ନାରୀ ।
ଜାନ ନହୀଁ ପହିଚାନ ବନେ ତୂ ବହି ହମାରୀ ।
ହୈ ଶକୁନ୍ତଳା କ୍ରୁଦ୍ଧ କହେ କାୟର ତୁମ୍ ଭୂପତି
କରିବେ ଛଳ ବ୍ୟବହାର ବନେ ଅବ ଇତ ସେରେ ଅତି ।
କର ଗାନ୍ଧର୍ବ ବିବାହ ବନ, ଗର୍ଭ କରଯ୍ୟୋ ଆପନ ତହାଁ ।
କଣ୍ୱାଶ୍ରମ ମହଁ ଜନେ ସୁତ, ହୈ ସମୁପସ୍ଥିତ ଯହ ଯହାଁ ॥

ସମ୍ମାନିତ ଓ ପ୍ରତିଷ୍ଠିତ ଲୋକମାନଙ୍କୁ ଲୋକସଂଗ୍ରହ ଓ ସମାଜରେ ନିଜର ମର୍ଯ୍ୟାଦା ଓ ପ୍ରତିଷ୍ଠା ଅକ୍ଷୁର୍ଣ୍ଣ ରଖିବା ପାଇଁ ଜାଣିଶୁଣି ଅନେକ କଠିନ କାର୍ଯ୍ୟ କରିବାକୁ ପଡିଥାଏ । ସତୀ ଶିରୋମଣି ଜନକନନ୍ଦିନୀ ସୀତାଙ୍କୁ ଗଙ୍ଗାଜଳ ପରି ପବିତ୍ର ବୋଲି କ'ଣ ଭଗବାନ ଶ୍ରୀରାମଚନ୍ଦ୍ର ଜାଣି ନ ଥିଲେ । ତଥାପି ଲଙ୍କା ବିଜୟ ପରେ ସେ ତାଙ୍କୁ ଅନେକ କଟୁକଥା କହିଥିଲେ ଓ ଅଗ୍ନିରେ ପ୍ରବେଶ କରି ନିଜ ଶୁଦ୍ଧତାର ପରିଚୟ ଦେବା ନିମିତ୍ତ ତାଙ୍କୁ ବାଧ୍ୟ କରିଥିଲେ । ବୈଦେହୀ, ପତି ଆଜ୍ଞା ଶିରୋଧାର୍ଯ୍ୟ କରିଥିଲେ ଓ ଅଗ୍ନିରେ ପ୍ରବେଶ କରି ନିଜ ପବିତ୍ରତାର ପ୍ରମାଣ ଦେଇଥିଲେ । ଅଗ୍ନିଦେବ ନିଜେ କହିଲେ—ଏ ନିର୍ଦ୍ଦୋଷ । ଶ୍ରୀରାମ ଏହାଙ୍କୁ ଗ୍ରହଣ କର । ତଥାପି ଅଯୋଧ୍ୟା ଫେରି ଆସିବାର କେତେଦିନ ପରେ ସେ ସତୀଙ୍କୁ ପରିତ୍ୟାଗ କରିଥିଲେ । 'ଧୋବୀ' କଥାକୁ ଅନୁକରଣ କରି ପ୍ରଜାମାନଙ୍କ ମଧ୍ୟରେ କଦାଗ୍ରହର ପ୍ରସାର ନ ହେଉ' ଏହାହିଁ ତାଙ୍କର ବିଚାର ଥିଲା । ଯେଉଁମାନଙ୍କର ଲୋକଙ୍କ ସହିତ ସବୁବେଳେ ସମ୍ପର୍କ ରହେ ସେମାନଙ୍କୁ ଲୋକମାନଙ୍କ ଆଗରେ ନିଜର ସ୍ଥିତି ସବୁବେଳେ ସ୍ପଷ୍ଟ ରଖିବାକୁ ପଡିଥାଏ । ସେ ତାହା

ନ କଲେ ଜନମତ ତାଙ୍କ ବିରୁଦ୍ଧରେ ଯିବ । ଲୋକଙ୍କ ଭିତରେ ତାଙ୍କର ଆଦର ସମ୍ମାନ ରହିବ ନାହିଁ ଏବଂ ଲୋକଦୃଷ୍ଟିରେ ସେ ତଳକୁ ପଡ଼ିଯିବେ ।

ମହର୍ଷି ସୂତ କହିଲେ—"ମୁନିଗଣ ! ମହର୍ଷି କଣ୍ୱଙ୍କର ଶିଷ୍ୟମାନେ ଚାଲିଯିବା ପରେ ଶକୁନ୍ତଳା ନିଜର ସଖୀ ପାଖରେ ଥିବା ଅତିଥିଶାଳାରେ ଯାଇ ରହିଲେ । ହୃଦୟ ତାଙ୍କର ଓଲଟ ପାଲଟ ହୋଇଯାଉଥିଲା । ଆଶ୍ରମରେ ସେ ସ୍ୱାଧୀନ ଭାବେ ବଢ଼ିଥିଲେ । ଜଙ୍ଗଲର ହରିଣୀ ପରି ସେ ଜୀବନ ଯାପନ କରିଥିଲେ । ଆଜି ରାଜମହଲରେ ସେ ନିଜକୁ ବନ୍ଦୀ ପ୍ରାୟ ଅନୁଭବ କଲେ । ସାରାରାତି ସେ ଖାଲି କାନ୍ଦିବାରେ ଲାଗିଲେ । ସର୍ବଦମନ କ୍ଳାନ୍ତ ହୋଇ ଶୋଇ ପଡ଼ିଥିଲା । କିନ୍ତୁ ଶକୁନ୍ତଳାଙ୍କ ଆଖିରେ ନିଦ ନ ଥିଲା । ସାରାରାତି ସେ ଚିନ୍ତା, ଉଦବେଗ୍ନତା ଓ ବିକଳତାରେ କଟାଇ ଦେଲେ ।

ସକାଳ ହେଲା, ନିତ୍ୟକର୍ମ ଶେଷ କରି ଶକୁନ୍ତଳା ସନ୍ତ୍ରୀମାନଙ୍କ ମାଧ୍ୟମରେ ରାଜାଙ୍କୁ କିଛି ନିବେଦନ କରିବାକୁ ଇଚ୍ଛା କରୁଛି ବୋଲି ଖବର ପଠାଇଲେ । ସନ୍ତ୍ରୀପାଳ ରାଜାଙ୍କୁ ଏହି ଖବର ଦେଲେ । ରାଜା ଖବର ପାଇ ସନ୍ତ୍ରୀଦ୍ୱାରକୁ ତାଙ୍କୁ ଡ଼କାଇଲେ । ଲାଜ ଲାଗୁଥିଲେ ବି ଅନନ୍ୟୋପାୟ ହୋଇ ସେ ସମସ୍ତଙ୍କ ଆଗକୁ ଗଲେ । ରାଜା ଶକୁନ୍ତଳାଙ୍କ ପ୍ରତି ଆଦର ପ୍ରଦର୍ଶନ କଲେ ନାହିଁ କି ବସିବା ପାଇଁ ମଧ୍ୟ କହିଲେ ନାହିଁ କି କୁଶଳ ପ୍ରଶ୍ନ ପଚାରିଲେ ନାହିଁ । ଅପରାଧିନୀ ପରି ଶକୁନ୍ତଳା ସେଠାରେ ଠିଆ ହୋଇରହିଲେ । ତା'ପରେ ରାଜା ତାଙ୍କୁ ଚିହ୍ନି ନ ଥିବା ପରି ପଚାରିଲେ—ତୁମେ କିଏ ? କେଉଁଠାରୁ ଆସିଛ ? କାହାର ଝିଅ ।

ଶକୁନ୍ତଳା କହିଲେ—ରାଜନ୍ ! ଆପଣ ମୋତେ ଭୁଲିଯାଇଛନ୍ତି ପ୍ରାୟ । ମୁଁ ହେଉଛି ଭଗବାନ କଣ୍ୱଙ୍କର ପାଳିତା ପୁତ୍ରୀ । ମହର୍ଷି ବିଶ୍ୱାମିତ୍ରଙ୍କ ଦ୍ୱାରା ମେନକାଙ୍କ ଗର୍ଭରୁ ମୋର ଜନ୍ମ । ମୋର ନାମ ଶକୁନ୍ତଳା ।

ରାଜା ଗମ୍ଭୀର ହୋଇ ପଚାରିଲେ—ତୁମେ କଣ ଚାହୁଁଛ ? ଏଠାକୁ କାହିଁକି ଆସିଛ ?

ଶକୁନ୍ତଳା କହିଲେ—ମହାରାଜ . ଆପଣ ମୋତେ ନ ଜାଣିଥିବା ପରି କାହିଁକି କଥାବାର୍ତ୍ତା କରୁଛନ୍ତି ? କଣ୍ୱାଶ୍ରମରେ ଆପଣ ବାଧ୍ୟପୂର୍ବକ ମୋ' ସହିତ ଗାନ୍ଧର୍ବ ବିବାହ କରିଥିଲେ । ଆପଣଙ୍କ ଔରସରୁ ମୋର ଏହି ପୁତ୍ର ଜନ୍ମ ହୋଇଅଛି । ଭଗବାନ୍ କଣ୍ୱଙ୍କ ଆଜ୍ଞା ଅନୁସାରେ ମୁଁ ଏଠାକୁ ଆସିଛି । ଆପଣ ଏହି ପୁତ୍ରକୁ ଯୁବରାଜ ପଦରେ ଅଭିଷିକ୍ତ କରନ୍ତୁ ।

ରାଜା କହିଲେ—ଆରେ ଏ କେଉଁଠିକାର ଠକ ଏଠାକୁ ଚାଲି ଆସିଛି । କିଏ ତୁମକୁ ଶିଖେଇ ପଢ଼େଇ ଏଠାକୁ ପଠାଇଛି ? ମୁଁ ତ ଆଗରୁ ତୁମକୁ ଦେଖି ନାହିଁ । ଚିହ୍ନା ପରିଚୟ ନାହିଁ । ତଥାପି ତୁମେ ଆସି ମୋର ସ୍ତ୍ରୀ ବୋଲି ଦାବି କରୁଛ ?

ଏହା ଶୁଣି ଶକୁନ୍ତଳାର ଦୁଇ ଓଠ କମ୍ପିବାକୁ ଲାଗିଲା । ରାଗି ଯିବାରୁ ତା'ର ମୁହଁ ତମ୍ ତମ୍ ହୋଇଗଲା । କୁଟିଳ ସିଂହ ପରି ସେ ସଭାକୁ ଚାହିଁବାକୁ ଲାଗିଲା । ଶକୁନ୍ତଳା କହିଲା—ରାଜନ୍ ! ଆପଣ ଧର୍ମାତ୍ମା ହୋଇ ଏପରି ଅଧର୍ମ କଥା କିପରି କହୁଛନ୍ତି ? ଧର୍ମର ଦୋହାଇ ଦେଇ ମୋତେ ଠକାଇ ଆପଣ ମୋର ପାଣିଗ୍ରହଣ କଲେ । ମୋର କନ୍ୟାତ୍ୱ ନଷ୍ଟ କଲେ । ଧର୍ମର ଶପଥ ନେଇ ମୋର ସନ୍ତାନକୁ ରାଜ୍ୟାଧିକାରୀ କରିବେ ବୋଲି ପ୍ରତିଜ୍ଞା କଲେ । ଚତୁରଙ୍ଗ ସେନା ପଠାଇ ମୋତେ ଆପଣଙ୍କ ମହଲକୁ ଆଣିବେ ବୋଲି କହିଲେ । ଆଉ ଏବେ ଛଳନାପୂର୍ଣ୍ଣ କଥା କହୁଛନ୍ତି । ଆମର ବିବାହ ଏକାନ୍ତରେ ହୋଇଛି, କେହି ଦେଖି ନାହାଁନ୍ତି । ତେଣୁ ମୁଁ ଠକ ଦେଉଛି ବୋଲି ଆପଣ ଭାବୁଛନ୍ତି କି ? ଭୁଲିଯାଆନ୍ତୁ ନାହିଁ ସମସ୍ତଙ୍କ ଅନ୍ତଃକରଣରେ ସର୍ବାନ୍ତର୍ଯାମୀ ଭଗବାନ ସବୁକିଛି କହୁଛନ୍ତି । ଆଦିତ୍ୟ, ପୃଥ୍ୱୀ, ଜଳ, ଅଗ୍ନି, ବାୟୁ, ଆକାଶ, ଗ୍ରହ, ନକ୍ଷତ୍ର, ଦେବତା, ଦିନ, ରାତି ତଥା ଦୁଇ ସନ୍ଧ୍ୟା—ଏମାନେ ପ୍ରାଣୀର ସବୁ ଭଲମନ୍ଦ କର୍ମକୁ ଦେଖୁଛନ୍ତି । ଧର୍ମକୁ ଡରନ୍ତୁ । ଅଧର୍ମର ଆଶ୍ରୟ ନିଅନ୍ତୁ ନାହିଁ ।

ରାଜା କହିଲେ—ତୁ ବଡ଼ ଧର୍ମଚାରିଣୀ ଚାଲିଆସିଛୁ । ତୁ ଯାହାର ଝିଅ ବୋଲି କହୁଛୁ, ସେ କ୍ଷତ୍ରିୟରୁ ବ୍ରାହ୍ମଣ ହେବା ପାଇଁ ଚେଷ୍ଟା କରୁଛି । ଯାହାକୁ ତୁ ନିଜର ମା' ବୋଲି କହୁଛୁ, ସେ ସ୍ୱର୍ଗର ବାରଙ୍ଗନା । ତା'ର ଅନେକ ପତି । ଜଣାପଡୁଛି ତୁ ସତରେ ତା'ରି ଝିଅ । ତପସ୍ୱୀମାନଙ୍କ ପରି ତୁ ବଳ୍କଳ ବସ୍ତ୍ର ପିନ୍ଧିଛୁ । ତାକୁ ଦେଖାଇ ତୁ ନିଜର ପାପ ଲୁଚାଇବାକୁ ବସିଛୁ । କେଜାଣି କେଉଁଠୁ ଏ ପିଲାକୁ ନେଇ ଆସିଛୁ ? ଏଣେ କହୁଛୁ ସେ ମୋର ପୁଅ । ସମସ୍ତଙ୍କ ଆଗରେ ଏପରି ମିଥ୍ୟାକଥା କହିବାକୁ ତୋତେ ଲଜ୍ଜା ଲାଗୁନାହିଁ ।

ଶକୁନ୍ତଳା ଧୈର୍ଯ୍ୟଧରି ନିର୍ଭୟ ହୋଇ କହିଲା—ରାଜନ୍ ! ଜଣେ ଅବଳା ପ୍ରତି ଏପରି କ୍ରୂର ବ୍ୟବହାର ଦେଖାଉଥିବାରୁ ଅପଣଙ୍କୁ ଲଜ୍ଜା ଲାଗିବା ଉଚିତ୍ । ନିଜର ଧର୍ମ-ପତ୍ନୀକୁ ଆପଣ ବାରବନିତା କହୁଛନ୍ତି ? ରାଜନ୍ ! ମୁଁ ଜନ୍ମହେବାଠାରୁ ଧର୍ମାଚରଣ କରିଆସିଛି । ମୁଁ ଆପଣଙ୍କୁ ଜାଣି ନଥିଲି । ଆପଣ ହିଁ ମୋତେ ଗାନ୍ଧର୍ବ ବିବାହର ଧର୍ମ ଓ ନିୟମ କହିଥିଲେ । ତାହାକୁ ଧର୍ମସମ୍ମତ ଭାବି ମୁଁ ଗ୍ରହଣ କଲି । ଆପଣ ଚାଲି ଆସିବା ପରେ ମୋର ପିତା ଭଗବାନ୍ କଣ୍ୱ ଏହି ବିବାହକୁ ଅନୁମୋଦନ କଲେ । ସେ ଆଶୀର୍ବାଦ ଦେଇଥିଲେ—ତୋର ପୁତ୍ର ସମସ୍ତ ଭୂଖଣ୍ଡର ଚକ୍ରବର୍ତ୍ତୀ ରାଜାହେବ । ସେହି ତପଃପୂତ ମହର୍ଷିଙ୍କ ବାକ୍ୟ କଣ ମିଥ୍ୟା ହୋଇଯିବ ? ଧର୍ମାବତାର ! ମୁଁ ପୁଣି ଥରେ ନିବେଦନ କରୁଛି ଧର୍ମ ଦୃଷ୍ଟିରୁ ମୁଁ ଆପଣଙ୍କ ପତ୍ନୀ । ଏହି ପୁତ୍ର ଆପଣଙ୍କର ହିଁ ପୁତ୍ର । ଏହାକୁ ଆଦର କରନ୍ତୁ, କୋଳକୁ ନେଇ ଆଶ୍ୱାସନା ଦିଅନ୍ତୁ । କେତେବେଳୁ ସେ ଆପଣଙ୍କ ପାଖକୁ ଯିବାପାଇଁ ଅତି ଉତ୍କଣ୍ଠିତ ଭାବେ ଆପଣଙ୍କୁ ଚାହିଁ ରହିଛି ।

ମହାରାଜ ଦୁଷ୍ମନ୍ତ କହିଲେ—ହେ ତପସ୍ୱିନି ! ତୁମ କଥାରେ ଟିକିଏ ହେଲେ ବି ସତ୍ୟତା ଅଛି ବୋଲି ମୋର ମନେ ହେଉନି । ଏହା ପୂର୍ବରୁ ମୁଁ ତୁମକୁ କେବେହେଲେ

ଦେଖିନାହିଁ । କେବେ ଦେଖିଛି ବୋଲି ଆଜି ମୋ ମନେ ପଡ଼ୁନାହିଁ । ତୁମେ ଧର୍ମଚାରିଣୀ ହୁଅ ବା ଅଧର୍ମଚାରିଣୀ ହୁଅ, ତୁମ ସହିତ ମୋର କୌଣସି ସମ୍ପର୍କ ନାହିଁ । ତୁମର ଏହି ଦୁଷ୍ଟପୁଷ୍ଟ ପିଲା ମଧ୍ୟ ମୋର ପ୍ରୟୋଜନ ନାହିଁ । ତୁମର ଯୁଆଡ଼େ ଇଚ୍ଛା ସେଆଡ଼େ ଯାଇପାର । ଯଦି ରହିବାର ଇଚ୍ଛା ତା'ହେଲେ ରହିପାର । ଏତକ କହି ରାଜା ନୀରବ ହୋଇଗଲେ ।

ଏହା ଶୁଣି ଶକୁନ୍ତଳା କାନ୍ଦି କାନ୍ଦି କହିଲେ—ରାଜନ୍ ! ଆପଣ ଏପରି ନଜାଣିବା ପରି କାହିଁକି ହେଉଛନ୍ତି । ଆଶ୍ରମରେ ଘଟିଥିବା କଥା ଆପଣ କେବେ ଭୁଲି ନଥିବେ । ଶୋଇବା ଲୋକକୁ ଉଠାଇ ଦେଇହେବ, କିନ୍ତୁ ଚେଇଁରହି ଶୋଇବା ଅଭିନୟ କରୁଥିବା ଲୋକକୁ କିପରି ଉଠାଯାଇ ପାରିବ ? ଆପଣ ଭୁଲିଯାଇଥିଲେ ମନେ ପକାଇ ଦିଆଯାଇପାରନ୍ତା ? କିନ୍ତୁ ଆପଣ ତ ଜାଣି ଜାଣି ନ ଜାଣିଲା ପରି ହେଉଛନ୍ତି ।

ମୁଁ ଆପଣଙ୍କର ପତ୍ନୀ । ଆପଣ ମୋ' ଗର୍ଭରେ ବୀର୍ଯ୍ୟ ସ୍ଥାପନ କରିଛନ୍ତି, ଏଥିରେ ସନ୍ଦେହ ନାହିଁ, ଏ ପୁତ୍ର ଆପଣଙ୍କର । ଋଷିମାନେ କହନ୍ତି, ପୁରୁଷ ନିଜେ ବୀର୍ଯ୍ୟ ମାଧ୍ୟମରେ ସ୍ତ୍ରୀ ଗର୍ଭରେ ପ୍ରବେଶ କରେ । ସେଥିପାଇଁ ପୁତ୍ରବତୀ ସ୍ତ୍ରୀକୁ ଜାୟା କୁହାଯାଏ । ପୁତ୍ରବତୀ ନାରୀକୁ କେବେହେଲେ ଅପମାନିତ କରିବା ଉଚିତ ନୁହେଁ । ମାତା ପରି ସେ ସର୍ବଦା ସମସ୍ତଙ୍କର ସମ୍ମାନନୀୟା ।

ମହାରାଜ ! ମୋ' କୁଳକୁ ଆପଣ କାହିଁକି ନିନ୍ଦା କରୁଛନ୍ତି ? କ୍ଷତ୍ରିୟମାନଙ୍କ ମଧ୍ୟରେ କୁଶିକ ବଂଶ ସର୍ବଶ୍ରେଷ୍ଠ । ବିଶ୍ୱାମିତ୍ର ସବୁ ମୁନିଙ୍କ ମଧ୍ୟରେ ଶ୍ରେଷ୍ଠ । ସ୍ୱର୍ଗରେ ଉର୍ବଶୀ, ପୂର୍ବଚିତ୍ତି, ସହଜନ୍ୟା, ମେନକା, ବିଶ୍ୱାଚୀ ଓ ଘୃତାଚୀ ନାମରେ ଛଅ ଜଣ ମୁଖ୍ୟ ଅପ୍‌ସରା ଅଛନ୍ତି । ସେମାନଙ୍କ ମଧ୍ୟରୁ ମେନକା ବ୍ରହ୍ମାଙ୍କଠାରୁ ସୃଷ୍ଟି ହୋଇଛନ୍ତି । ତେଣୁ ସେ ସର୍ବଶ୍ରେଷ୍ଠା । ତାଙ୍କର ଗର୍ଭରୁ ମୁଁ ଜନ୍ମ ହୋଇଛି । ପୂର୍ବ ଜନ୍ମରେ ମୁଁ ନିଶ୍ଚୟ କୌଣସି ଘୋର ପାପକର୍ମ କରିଥିଲି । ସେଥିପାଇଁ ମୋର ଜନନୀ ମୋତେ ଅନ୍ୟାନ୍ୟ ସାଧାରଣ ଶିଶୁପରି ହିମାଳୟର ପାଦଦେଶରେ ଛାଡ଼ିଦେଇ ଚାଲିଗଲେ । ବାଲ୍ୟକାଳରେ ମୁଁ ପିତାମାତାଙ୍କ ଦ୍ୱାରା ପରିତ୍ୟକ୍ତା ହେଲି । ବର୍ତ୍ତମାନ ଯୌବନ ଅବସ୍ଥାରେ ମୋର ପତି ମୋତେ ତ୍ୟାଗ କରୁଛନ୍ତି । ମୋ' ଭାଗ୍ୟରେ କେବଳ ଦୁଃଖ ହିଁ ଲେଖାଅଛି । ତାକୁ ମୁଁ ସାରାଜୀବନ ଭୋଗ କରିବି । କିନ୍ତୁ ଆପଣ ଏହି ବାଳକକୁ ଗ୍ରହଣ କରନ୍ତୁ । ଏହାକୁ ଆପଣଙ୍କ ରାଜ୍ୟର ଅଧିକାରୀ କରନ୍ତୁ ।

ରାଜା କହିଲେ—ତପସ୍ୱିନୀ ! ତୁମେ ଅତି ନିର୍ଲଜ୍ଜ ପରି ଜଣାପଡୁଛ । ଆଉ କାହାର ଔରସ ଜାତ ପୁତ୍ରକୁ ବାରମ୍ବାର ମୋର ପୁତ୍ରବୋଲି କହୁଛ । ଏଥିରେ ତୁମର ଲଜ୍ଜିତା ହେବା ଉଚିତ । ମୁଁ ଆଗରୁ କହୁଛି ଏବଂ ଏବେବି କହୁଛି ତୁମ ସହିତ କି ତୁମର ଏ ପୁତ୍ର ସହିତ ମୋର କୌଣସି ସମ୍ପର୍କ ନାହିଁ । ତୁମେ ଯଥାଶୀଘ୍ର ଏଠାରୁ ଚାଲିଯାଅ ।

ଅପମାନରେ ଶକୁନ୍ତଳାଙ୍କ ମୁଣ୍ଡ ତଳକୁ ହୋଇଗଲା । ଆଖିରୁ ଧାର ଧାର ଲୁହ ବହିବାକୁ ଲାଗିଲା । କ୍ରୋଧ ଓ ଲଜ୍ଜାରେ ଦେହ ଥରିଲା । ସେ ରାଜାଙ୍କର ଏପରି

ଦୁର୍ବ୍ୟବହାରକୁ ସହି ପାରଲେ ନାହିଁ । ଶକୁନ୍ତଳା କହିଲେ—ମହାରାଜ ! ମୁଁ ଫେରି-ଯାଉଛି । କେଉଁ ମୁହଁରେ ମୁଁ ଏବେ କଣ୍ୱଙ୍କ ଆଶ୍ରମକୁ ଯିବି ? ମୋତେ ବଡ଼ ଦୁଃଖ ଲାଗୁଛି । ତଥାପି ସେ ମୋର ପିତା । ମୋର ଜୀବନ ଥିବାଯାଏ ସେ ମୋତେ ଭରଣ ପୋଷଣ କରିବେ । ଆପଣ ଆଜ ଆପଣଙ୍କ ପୁତ୍ରକୁ ନ ନେଇପାରନ୍ତି, କିନ୍ତୁ ଦିନେ ସେ ଏ ସମସ୍ତ ଭୂମଣ୍ଡଳର ସମ୍ରାଟ ନିଶ୍ଚୟ ହେବ । ଦେବତା ଓ ଋଷିମାନଙ୍କ ବାକ୍ୟ କେବେହେଲେ ଅନ୍ୟଥା ହେବ ନାହିଁ । ହଉ ଠିକ୍ ଅଛି । ଭଗବାନ ଆପଣଙ୍କର ମଙ୍ଗଳ କରନ୍ତୁ । ଏହା କହି ଶକୁନ୍ତଳା ଫେରିବାକୁ ବସିଲେ ।

ମହର୍ଷି ସୂତ କହିଲେ—ମୁନିଗଣ ! ଶକୁନ୍ତଳା ଫେରିବାକୁ ବାହାରିବାମାତ୍ରେ ଏକ ଆକାଶବାଣୀ ଶୁଣାଗଲା । ବାଣୀ କେଉଁଠୁ ଆସୁଥିଲା ତାହା କେହି ଜାଣି ପାରିଲେ ନାହିଁ । ତାହା ଥିଲା ଅଶରୀରୀ ବାଣୀ । ସମସ୍ତେ ଶୁଣୁଥିଲେ । ଆକାଶବାଣୀ କହିଲା—ହେ ରାଜ-ରାଜେଶ୍ୱର ଦୁଷ୍ମନ୍ତ ! ମାତା ଏକ ପ୍ରକାର ଚର୍ମର ପାତ୍ର । ଯଦି କେହି ଚର୍ମ ପାତ୍ରରେ କୌଣସି ଜିନିଷ ରଖିବ, ତେବେ ତାହା ଚର୍ମପାତ୍ରର ନୁହେଁ, ରଖିଥିବା ଲୋକର ଯେପରି ହେବ, ସେହିପରି ପତ୍ନୀ ଉଦରରେ ବୀର୍ଯ୍ୟ ସ୍ଥାପନ କରିଥିବା ବ୍ୟକ୍ତି ସନ୍ତାନର ପିତା ହେବ । କାରଣ ସେ ନିଜେ ପତ୍ନୀ ଗର୍ଭରୁ ଉତ୍ପନ୍ନ ହୋଇଥାଏ । ସେଥିପାଇଁ ପୁତ୍ରବତୀ ପତ୍ନୀର ସଂଜ୍ଞା ଜାୟା ହୁଏ । ଆତ୍ମାରୁ ଉତ୍ପନ୍ନ ହୋଇଥିବାରୁ ପୁତ୍ର ଓ ପିତା ମଧ୍ୟରେ କୌଣସି ଭେଦ୍ ରହେ ନାହିଁ । ପିତା ହିଁ ନୂଆ ନୂଆ ରୂପ ନେଇ ପୁତ୍ର ରୂପେ ଜନ୍ମ ହୁଅନ୍ତି । ଏ ପୁତ୍ର ଆପଣଙ୍କର । ଆପଣ ଏହାର ଭରଣ ପୋଷଣ କରନ୍ତୁ, ଶକୁନ୍ତଳାଙ୍କୁ ସମ୍ମାନ ଦିଅନ୍ତୁ । ଏପରି ସତୀ ସାଧ୍ୱୀ ପତ୍ନୀକୁ ତ୍ୟାଗ କରିବା ସର୍ବଥା ଅନୁଚିତ । ଏ ବାଳକକୁ ସାଧାରଣ ବାଳକ ବୋଲି ଭାବନ୍ତୁ ନାହିଁ । ଆପଣଙ୍କ ପରେ ଏ ସମ୍ପୂର୍ଣ୍ଣ ଭୂମଣ୍ଡଳର ସମ୍ରାଟ ହେବ । ରାଜନ ! ଆପଣ ଆମର ଆଦେଶରେ ଏହାର ଭରଣ ପୋଷଣ କରନ୍ତୁ । ସେଥିପାଇଁ ଏହାର ନାମ 'ଭରତ' ହେବ । ସଂସାରରେ ଏହି ବାଳକ ଭରତ ନାମରେ ବିଖ୍ୟାତ ହେବ । ଏତିକି କହି ଆକାଶବାଣୀ ନୀରବ ହୋଇଗଲା ।

ଏହାପରେ ରାଜା ନିଜର ମନ୍ତ୍ରୀ, ପୁରୋହିତ, ସଭାସଦ୍ ଓ ଅନ୍ୟାନ୍ୟ ପ୍ରଜାମାନଙ୍କୁ କହିଲେ—ଆପଣମାନେ ସମସ୍ତେ ସବୁକଥା ଶୁଣିଲେ । ଏବେ ସମସ୍ତଙ୍କର ଏ ମୋର ପୁତ୍ର ବୋଲି ବିଶ୍ୱାସ ହୋଇଥିବ । ମୁଁ ଏବେ ଭଲଭାବେ ଜାଣିପାରୁଛି ଯେ ଏ ମୋ'ର ବୀର୍ଯ୍ୟରୁ ଜାତ ହୋଇଛି ।

ଏହା ଶୁଣି ପୁରୋହିତ ପଚାରିଲେ—ମହାରାଜ ! ଆପଣ ତାହାହେଲେ ଦେବୀ ଶକୁନ୍ତଳାଙ୍କୁ କାହିଁକି ସ୍ୱୀକାର କଲେ ନାହିଁ । ନିଜ ପୁଅକୁ କୋଳକୁ ନେଇ କାହିଁକି ଆଦର କଲେ ନାହିଁ ।

ରାଜା କହିଲେ—ମୋର ଓ ଶକୁନ୍ତଳାର ବିବାହ ଏକାନ୍ତରେ ହୋଇଥିଲା । ଏହା କେହି ଜାଣି ନ ଥିଲେ । ଯଦି ମୁଁ ଶକୁନ୍ତଳା ଓ ଭରତକୁ ସଙ୍ଗେ ସଙ୍ଗେ ସ୍ୱୀକାର

କରିଥାନ୍ତି ତେବେ ଆପଣମାନେ ସମସ୍ତେ ମୋତେ ସନ୍ଦେହ କରିଥାନ୍ତେ, ଲୋକେ ଅନେକ ପ୍ରକାର ଅପବାଦ ଦେଇଥାଆନ୍ତେ । ଫଳରେ ଏ ମୋର ଶୁଦ୍ଧ ସନ୍ତାନ ବୋଲି ଅନେକ ସ୍ୱୀକାର କରି ନ ଥାନ୍ତେ । କିନ୍ତୁ ବର୍ତ୍ତମାନ ଆକାଶବାଣୀ ଆପଣମାନଙ୍କୁ ସମସ୍ତଙ୍କୁ ସବୁକଥା ପରିଷ୍କାର କରି କହିଦେଲା ।

ସମସ୍ତେ ଏକ ସ୍ୱରରେ କହିଲେ—ମହାରାଜ ! ଶକୁନ୍ତଳାଙ୍କ ଗର୍ଭରୁ ଜାତ ଆପଣଙ୍କ ସନ୍ତାନ ନିର୍ଦ୍ଦୋଷ । ଆପଣ ପୁଣି ବାଳକ ରୂପେ ଅବତୀର୍ଣ୍ଣ ହୋଇଥିବାର ମନେ ହେଉଛି । ଏହା ହାତରେ ଚକ୍ର ଚିହ୍ନ ଅଛି । ତେଣୁ ଏ ନିଶ୍ଚୟ ସସାଗର ଧରାର ଏକାଙ୍ଗ ଚକ୍ରବର୍ତ୍ତୀ ହେବ । ଆପଣ ଏହାକୁ ପାଖକୁ ନିଅନ୍ତୁ ଓ ଯୁବରାଜ ପଦରେ ଅଭିଷିକ୍ତ କରନ୍ତୁ ।

ସମସ୍ତଙ୍କର ସମ୍ମତି ପାଇବା ପରେ ମହାରାଜ ଦୁଷ୍ମନ୍ତ ଶକୁନ୍ତଳା ଓ ସର୍ବଦମନଙ୍କୁ ପାଖକୁ ଡାକିଲେ । ପୁଅକୁ କୋଳକୁ ନେଇ ସେ ତା'ର ମସ୍ତକ ଆଘ୍ରାଣ କଲେ ଓ କୋଳ କଲେ । ପୁଅର ସ୍ପର୍ଶରେ ତାଙ୍କର ସର୍ବାଙ୍ଗ ପୁଲକିତ ହୋଇ ଉଠିଲା । ସଂସାରରେ ଯେତେ ବସ୍ତୁ ସ୍ପର୍ଶମାନେ ସୁଖ ଦିଅନ୍ତି ତନ୍ମଧ୍ୟରେ ପୁତ୍ରର ସ୍ପର୍ଶ ସର୍ବଶ୍ରେଷ୍ଠ । ଆଜି ମହାରାଜ ନିଜକୁ କୃତକୃତ୍ୟ ମନେ କଲେ । ନିଜେ ପିତୃଋଣରୁ ମୁକ୍ତ ହେଲେ ବୋଲି ଭାବିଲେ । ଏହାପରେ ସେ ପୁରୋହିତଙ୍କୁ ଡାକି ଶାସ୍ତ୍ରୋକ୍ତ ବିଧାନ ଅନୁସାରେ ପିତୃପୁରୁଷଙ୍କୁ ଶ୍ରାଦ୍ଧ ଦାନ କଲେ । ବ୍ରାହ୍ମଣମାନେ ସ୍ୱସ୍ତିବାଚନ କଲେ । ଗନ୍ଧର୍ବମାନେ ମଙ୍ଗଳଗାନ କଲେ । ସୂତ, ମାଗଧ, ବନ୍ଦୀମାନେ ସ୍ତୁତିପାଠ କଲେ ଓ ବିନମ୍ର ବଚନ ଶୁଣାଇଲେ । ବଡ଼ ଆଡ଼ମ୍ବରରେ ରାଜା ପୁତ୍ରକୁ ଯୁବରାଜ ପଦରେ ଅଭିଷିକ୍ତ କଲେ ।

ମହର୍ଷି ସୂତ କହିଲେ—ମୁନିଗଣ ! ଏହି ସର୍ବଦମନ ପରେ ଭରତ ନାମରେ ସଂସାରରେ ପ୍ରସିଦ୍ଧି ଲାଭ କଲେ । ଭରତଙ୍କ ପରି ଉଦାର ଓ ଯଶସ୍ୱୀ ସମ୍ରାଟ ଆଉ କିଏ ହେବେ ? ତାଙ୍କରି ନାମ ଅନୁସାରେ ଏ ଦେଶକୁ ଭାରତବର୍ଷ ନାମରେ ନାମିତ କରାଯାଇଛି ।

## ଛପ୍ପୟ

ପୁନି ଶକୁନ୍ତଲା ଶପଥ କରୀ ଭୂପତି ନହିଁ ମାନୀ ।
ହୋ ନିରାଶ ଜବ ଚଲୀ ଭଈ ତବ ନଭ ତେଁ ବାନୀ ॥
ମାତା ଧାରଣ କରେ ପିତା କୀ ବସ୍ତୁ କହାଓ୍ୱୈ ।
ପତି ହୀ ବନି କେ ପୁତ୍ର ନାରୀ କେ ତନ ତେଁ ଆଓ୍ୱୈ ॥
ଯହ କୁମାର ତୁମରୋ ତନୟ, ଭୂପ ଭରନ୍ତ କାକୋ କରୋ ।
ପିତର ସହିତ ପୁଂ ନରକତେଁ, ପାର୍ ଜାଇ ସୁଖତେଁ ତରୋ ॥

●

# ଦୁଷ୍ମନ୍ତପୁତ୍ର ଭରତ

ଭରତସ୍ୟ ମହତ୍କର୍ମ ନ ପୂର୍ବେ ନା ପରେ ନୃପାଃ ।
ନୈବାପୁର୍ନୈବ ପ୍ରାପ୍ସ୍ୟନ୍ତି ବାହୁଭ୍ୟାଂ ତ୍ରିଦିବଂ ଯଥା ॥

(ଭାଗ--୯ସ୍କ, ୨୦ଅ, ୨୯ଶ୍ଳୋ)

## ଛପ୍ପୟ

ସ୍ୱୀକାର୍‌ୟୋ ସୂତ ନୃପତ ପ୍ରଜା ଅନୁମୋଦନ କୀହ୍ନୋ ।
ଜାନି-ବୁଝିକେ-ଭୂପ ପୁତ୍ର ଅପନୋ ନହିଁ ଚୀହ୍ନୋ ॥
ସବ କୁଁ ଭଇ ପ୍ରତୀତ ନିରଖି ସୁତ ବ ସହୁଁ ସିହାୟୋ ।
ଘର ଘର ମଙ୍ଗଳ ଭୟୋ ବାଜ ମହୁଁ ବଜେ ବଧାୟୋ ॥
ସର୍ବଦମନ ଯୁବରାଜ କର, ନାମ ଭରତ ନୃପନେ ଧର୍‌ୟୋ ।
ଭରତ ବଂଶ ଜିନ ତେଁ ଚଲ୍ୟୋ, ଜଗ ଉଜ୍ଜ୍ୱଳ ଯଶ ତେଁ କର୍‌ୟୋ ॥

ଧାର୍ମିକ ସଂସ୍କାର ମଙ୍ଗ ଗୁଣରୁ ହିଁ ଆସିଥାଏ । ବାଲ୍ୟକାଳରେ ବାଳକେଯେଉଁ ବାୟୁମଣ୍ଡଳରେ ବଢ଼ିଥାଏ ସେହିପ୍ରକାର ପ୍ରଭାବ ତା'ର ଜୀବନସାରା ରହେ । ମାତା ପିତାଙ୍କ ଘରର ତଥା ଆଖପାଖର ସଂସ୍କାର ବାଳକର କୋମଳ ସ୍ୱଭାବ ଉପରେ ଅଳଭ ଦାଗ ଛାଡ଼ି-ଯାଏ । ସେ ଦାଗ ଜୀବନସାରା ଥାଏ । ସେଥିପାଇଁ ପୂର୍ବକାଳରେ ପୁଅକୁ ବାଲ୍ୟକାଳରେ ଗୁରୁକୁଳରେ ଛାଡ଼ିଦେଇ ଆସୁଥିଲେ । ସେଥିପାଇଁ ଆଶ୍ରମର ଧର୍ମୀୟ ବାତାବରଣ ଓ ସରଳ ଜୀବନ ଯାପନର ପ୍ରଭାବ ଶିଷ୍ୟ ଉପରେ ପଡ଼ୁଥିଲା । ଯେଉଁ ମହାପୁରୁଷମାନଙ୍କ ଜନ୍ମ ଅରଣ୍ୟରେ ବା ଗ୍ରାମରେ ହୋଇଥାଏ, ସେମାନେ ଅନ୍ୟର ସୁଖ ଦୁଃଖକୁ ସହଜରେ ଅନୁଭବ କରିପାରନ୍ତି, କାରଣ ସେ ପ୍ରକାର ସୁଖଦୁଃଖ ସମ୍ବନ୍ଧରେ ସେମାନଙ୍କର ଅନୁଭୂତ ଥାଏ ।

ମହର୍ଷି ସୂତ କହିଲେ —ମୁନିଗଣ ! ଆକାଶବାଣୀ ଶୁଣି ଓ ପ୍ରଜାମାନଙ୍କର ଅନୁମତି ନେଇ ଦୁଷ୍ମନ୍ତ ଶକୁନ୍ତଳାଙ୍କୁ ପତ୍ନୀରୂପେ ପୁଣି ସ୍ୱୀକାର କଲେ । ତାଙ୍କୁ ସାମ୍ରାଜ୍ଞୀ କରିବା ସଙ୍ଗେ ସଙ୍ଗେ ପୁତ୍ରକୁ ଯୁବରାଜ ପଦରେ ଅଭିଷିକ୍ତ କଲେ । ଶକୁନ୍ତଳା ରାଣୀ ହେବା ପରେ ଦିନେ ରାଜାଙ୍କୁ ପଚାରିଲେ—ମହାରାଜ ! ଆପଣ କଣ ସତରେ ପୂର୍ବର ସବୁକଥା ଭୁଲି ଯାଇଥିଲେ ? ମୋତେ ବିବାହ କରିଥିବା କଥା କଣ ଆପଣଙ୍କର ମନେ ନ ଥିଲା ?

ରାଜା ହସି ହସି କହିଲେ—କିଏ କେବେ ବିବାହ କଥା ଭୁଲିଯାଇପାରେ ? ମୋର ସବୁକଥା ଭଲଭାବେ ମନେଥିଲା । ତୁମପାଖରେ ଯେଉଁ ପ୍ରତିଜ୍ଞା କରିଥିଲି ତାହା ମଧ୍ୟ ମୋର ମନେଥିଲା ।

ଶକୁନ୍ତଳା ପଚାରିଲେ—ତେବେ ଆପଣ ଜାଣି ଜାଣି ନ ଜାଣିବାର ଢଙ୍ଗ କାହିଁକି କରୁଥିଲେ ? ଆପଣ ମୋତେ ଓ ଆପଣଙ୍କର ପୁଅକୁ ତିରସ୍କାର କଲାବେଳେ ଦୁଃଖିତ ହେଉ ନ ଥିଲେ ?

ଅତ୍ୟନ୍ତ ସ୍ନେହପୂର୍ଣ୍ଣ ସ୍ୱରରେ ରାଜା କହିଲେ—ପ୍ରିୟେ ! ମହତ୍ତ୍ୱପୂର୍ଣ୍ଣ ସ୍ଥାନରେ ଥିବା ପୁରୁଷମାନଙ୍କୁ ସମସ୍ତଙ୍କର ସମ୍ମତି, ସହଯୋଗ ଓ ସହାନୁଭୂତିକୁ ନେଇ କାର୍ଯ୍ୟ କରିବାକୁ ପଡ଼ିଥାଏ । ତୁମର ମୋର ବିବାହ ଏକାନ୍ତରେ ହୋଇଥିଲା । ମୁଁ ଯଦି ତୁମକୁ ସଙ୍ଗେ ସଙ୍ଗେ ସ୍ୱୀକାର କରିଥାନ୍ତି ତେବେ ନାନାପ୍ରକାର ଅପବାଦ ଲୋକଙ୍କ ମଧ୍ୟରେ ପ୍ରଚାରିତ ହୋଇ-ଥାନ୍ତା । କିଏ କହିଥାନ୍ତା—ରାଜାଙ୍କର ଏ ପତ୍ନୀ ନୁହେଁ । ଏ ମଧ୍ୟ ରାଜାଙ୍କର ପୁତ୍ର ନୁହେଁ । ସୁନ୍ଦରୀ ଦେଖି ରାଜା ରକ୍ଷିତା ସ୍ତ୍ରୀଟିଏ ରଖିନେଲେ । ଅନ୍ୟ କିଏ କହିଥାନ୍ତା—ରାଜାଙ୍କର ଏ ନାରୀ ସହିତ ଅନୁଚିତ ସମ୍ବନ୍ଧ ଅଛି । ଏ ପୁତ୍ର ହେଉଛି ରାଜାଙ୍କ ବ୍ୟଭିଚାରର ଫଳ । କିଏ କ'ଣ କହିଥାନ୍ତା ତାର ଠିକଣା ନାହିଁ । ଏ ସଂସାର ବହୁମୁଖୀ । ପରର ଛିଦ୍ର ଅନ୍ୱେଷଣ କରିବା ଲୋକଙ୍କର ସ୍ୱାଭାବିକ ପ୍ରବୃତ୍ତି । ସତ୍ୟକଥା କିପରି ପ୍ରକାଶ କରିବ ତାହା ହିଁ ମୋର ଚିନ୍ତାର ବିଷୟ ଥିଲା । ଦୁଃଖ ଓ ଚିନ୍ତାରେ ମୁଁ ବିବ୍ରତ ହେଉଥିବା ସମୟରେ ଆକାଶବାଣୀ ଶୁଣାଗଲା । ସମସ୍ତେ ଜାଣିଲେ ଯେ ତୁମର ମୋର ସମ୍ବନ୍ଧ ଧର୍ମସମ୍ମତ ଆଉ ଏ ପୁତ୍ର ଧର୍ମତଃ ମୋର ପୁତ୍ର । ଏହିଭଳିଭାବେ ତୁମେ ଓ ମୁଁ ଉଭୟ ନିର୍ଦ୍ଦୋଷ ପ୍ରମାଣିତ ହେଲେ । ଏହା କରି ନ ଥିଲେ ସଂସାରରେ ଆମ ଦୁହିଁଙ୍କର ଅପବାଦ ରହିଥାନ୍ତା । ସେଥିପାଇଁ ମୁଁ ଜାଣି ଜାଣି ତୁମ ସହିତ ନିଷ୍ଠୁର ବ୍ୟବହାର କରିଥିଲି । ତୁମେ ମୋର ପ୍ରିୟତମା ପତ୍ନୀ । ମୋର ସେହି ଦୁର୍ବ୍ୟବହାର କଥା ତୁମେ ଭୁଲିଯାଅ । ତୁମର କଲ୍ୟାଣ ପାଇଁ ମୁଁ ସେପରି ନିଷ୍ଠୁର ହୋଇ ଥିଲି ।

ଏହା ଶୁଣି ଶକୁନ୍ତଳାଙ୍କ ଦୁଇଆଖିରୁ ପ୍ରେମାଶ୍ରୁ ଧାର ପ୍ରବାହିତ ହେଲା । ସେ ସ୍ୱାମୀଙ୍କ ପାଦତଳେ ପଡ଼ି କାନ୍ଦି କାନ୍ଦି କହିଲେ—ପ୍ରାଣନାଥ ! ମୋର ମଙ୍ଗଳ ପାଇଁ ଆପଣ ଏସବୁ କରିଥିଲେ । କିନ୍ତୁ ଅଳ୍ପବୁଦ୍ଧି ହେତୁ ମୁଁ ଏସବୁ କଥା ବୁଝି ପାରି ନ ଥିଲି । କ୍ରୋଧବଶତଃ ମୁଁ ଆପଣଙ୍କୁ ନ କହିବା କଥା କହିଛି । ମୁଁ ମୋର ପ୍ରାଣନାଥ ପରମେଶ୍ୱରଙ୍କର ଅପମାନ କଲି । ସେଥିପାଇଁ ମୁଁ କେଉଁ ନରକକୁ ଯିବି ଜାଣେନାହିଁ । ମୋର ଅଜ୍ଞାନକୃତ ଅପରାଧକୁ କ୍ଷମା ଦେବାପାଇଁ ଆପଣଙ୍କୁ ପ୍ରାର୍ଥନା କରୁଛି ।

ନିଜର ପ୍ରିୟତମାଙ୍କୁ ବଳପୂର୍ବକ ଉଠାଇ ନେଇ ଗ୍ରୀବାରେ ଗ୍ରୀଧିର ମହାରାଜ କହିଲେ—ପ୍ରିୟେ ' ତୁମେ ଯାହାସବୁ କହିଥିଲ ଜଣେ ସତୀ, ସାଧ୍ୱୀ ନାରୀ ପକ୍ଷରେ ସେପରି

କହିବା ଅତି ସ୍ୱାଭାବିକ । ମୁଁ ଯେପରି କଠୋର ହୋଇଥିଲି ତୁମର ସେହିପରି କହିବା ଯଥାର୍ଥ ହୋଇଛି । ତୁମର ଦୁଃଖ କାହିଁକି, ମୁଁ ତ ହୃଦୟର ସହିତ ସେସବୁ କଥାକୁ ବହୁ ପୂର୍ବରୁ କ୍ଷମା କରିସାରିଛି । ତୁମେ ପ୍ରସନ୍ନ ହୁଅ, ସେସବୁ କଥା ଭୁଲିଯାଅ । ତାହା ନାଟକ ପରି ଏକ ଅଭିନୟ ଥିଲା, ସ୍ୱପ୍ନ ପରି ମିଥ୍ୟା ଥିଲା । ଏଥର ମୋ' ସହିତ ତୁମେ ସଂସାରର ସମସ୍ତ ସୁଖ ଭୋଗକର ଏବଂ ନିଜ ପୁଅକୁ ଯୁବରାଜ ପଦରେ ଅଭିଷିକ୍ତ ହେବାର ଦେଖି ଆନନ୍ଦ ଅନୁଭବ କର ।

ଏହିପରି ଦୁହେଁ ପ୍ରେମପୂର୍ଣ୍ଣ କଥାବାର୍ତ୍ତା ଦ୍ୱାରା ଆନନ୍ଦରେ ମଗ୍ନ ହୋଇଗଲେ ଏବଂ ଆନନ୍ଦରେ ସାଂସାରିକ ସୁଖଭୋଗ କରିବାକୁ ଲାଗିଲେ । ବେଳେ ବେଳେ ଶକୁନ୍ତଳାଙ୍କୁ ରଥରେ ବସାଇ ରାଜା କଣ୍ୱାଶ୍ରମ ବୁଲିବାକୁ ଗଲେ । ରାଣୀ ହେବା ପରେ ବି ଶକୁନ୍ତଳାଙ୍କର ଟିକିଏ ହେଲେ ଅଭିମାନ ନ ଥିଲା । ସେ ଆଶ୍ରମର ସମସ୍ତଙ୍କ ସହିତ ପୂର୍ବପରି ମିଶୁଥିଲେ ଓ ସ୍ନେହ କରୁଥିଲେ । ଭଗବାନ କଣ୍ୱ ମଧ୍ୟ ବେଳେ ବେଳେ ରାଜାଙ୍କୁ ନିମନ୍ତ୍ରଣ କରୁଥିଲେ ଏବଂ ରାଜାଙ୍କ ବିନୀତ ନିମନ୍ତ୍ରଣକୁ ମଧ୍ୟ ଭଗବାନ କଣ୍ୱ ସ୍ୱୀକାର କରୁଥିଲେ । ପରେ ଭରତ ବଡ଼ ହେବାରୁ ତାଙ୍କ ଉପରେ ରାଜ୍ୟଭାର ସମର୍ପଣ କରି ମହାରାଜ ଦୁଷ୍ମନ୍ତ ଶକୁନ୍ତଳାଙ୍କୁ ସାଙ୍ଗରେ ନେଇ ବନ ଗମନ କଲେ ଏବଂ ବନରେ ବାନପ୍ରସ୍ଥ ଧର୍ମ ଆଚରଣ କରି ରହିଲେ ଓ ଶେଷରେ ପରମ ପଦ ଲାଭକଲେ ।

ମହାରାଜା ଦୁଷ୍ମନ୍ତଙ୍କ ପରେ ଏହି ସପ୍ତଦ୍ୱୀପବତୀ ବସୁନ୍ଧରାର ସ୍ୱାମୀ ହେଲେ ଦୁଷ୍ମନ୍ତଙ୍କ ପୁତ୍ର ଭରତ । ସେ ବଡ଼ ଧର୍ମାତ୍ମା ଥିଲେ । ଋଷିମାନେ ରାଜା ଭରତଙ୍କୁ ଭଗବାନଙ୍କର ଅବତାର ବୋଲି କହିଛନ୍ତି ।

ମହାରାଜା ଭରତଙ୍କ ଦକ୍ଷିଣ ହସ୍ତରେ ଚକ୍ରଚିହ୍ନ ଥିଲା ଓ ପାଦରେ ପଦ୍ମକୋଶ ସୁଶୋଭିତ ଥିଲା । ସମଗ୍ର ପୃଥିବୀର ରାଜାମାନେ ଓ ବ୍ରାହ୍ମଣମାନେ ତାଙ୍କୁ ରାଜରାଜେଶ୍ୱର ପଦରେ ବିଧିବତ୍ ଅଭିଷେକ କରିଥିଲେ । ମହାରାଜ ଭରତ ଅଙ୍ଗିରା ପୁତ୍ର ଉତଥ୍ୟଙ୍କ ପତ୍ନୀ ମମତାଙ୍କ ଗର୍ଭରୁ ଉତ୍ପନ୍ନ ମହର୍ଷି ଦୀର୍ଘତମାଙ୍କୁ ନିଜର ପୁରୋହିତ କରିଥିଲେ । ସମସ୍ତ ଭୂମଣ୍ଡଳ ତାଙ୍କର ଅଧୀନ ଥିଲା । ସେ ବୈଭବ କିପରି ପ୍ରକାଶ କରିବେ ଓ କେଉଁ କାର୍ଯ୍ୟରେ ନିଜର ଶକ୍ତି ବିନିଯୋଗ କରିବେ, ସେହି କଥା ଭାବି ଧର୍ମାର୍ଜନକୁ ନିଜର ପରମ କର୍ତ୍ତବ୍ୟ ବୋଲି ସ୍ଥିର କଲେ । ସେ ଯଜ୍ଞ ଅନୁଷ୍ଠାନ କରିବାରେ ମନ ଦେଲେ । ପ୍ରଥମେ ଗଙ୍ଗାନଦୀ କୂଳରେ ସେ ଅଶ୍ୱମେଧ ଯଜ୍ଞ ଆରମ୍ଭ କଲେ । ଏହିପରି ପଞ୍ଚାବନଟି ଯଜ୍ଞ ସେ ଗଙ୍ଗାକୂଳରେ କରିଥିଲେ । ଗଙ୍ଗାନଦୀ କୂଳ ଛାଡ଼ି ସେ ଯମୁନା ନଦୀକୂଳରେ ଯଜ୍ଞ କଲେ । ଭଗବତୀ କାଳିନ୍ଦୀଙ୍କ କୂଳରେ ସେ ଅଠସ୍ତରିଟି ଯଜ୍ଞ କରିଥିଲେ । ଏହି ଯଜ୍ଞଗୁଡ଼ିକରେ ସେ କେତେ ଧନ ବ୍ୟୟ କଲେ, କେତେ ଦାନ ଦେଲେ ତାହାର ଠିକଣା ନ ଥିଲା । ତାଙ୍କର ଅଗ୍ନିଚୟନ ଅନୁଷ୍ଠାନ ବଡ଼ ଧୂମ୍‌ଧାମ୍‌ରେ ଅନୁଷ୍ଠିତ ହେଉଥିଲା । ଏହି କର୍ମରେ ପ୍ରଥମେ ବ୍ରାହ୍ମଣମାନଙ୍କୁ

ଗୋଦାନ ଦିଆଯାଉଥିଲା । ସହସ୍ର ସହସ୍ର ବ୍ରାହ୍ମଣଙ୍କୁ ସେ ଯଜ୍ଞକାର୍ଯ୍ୟରେ ବରଣ କରୁଥିଲେ । ପ୍ରତ୍ୟେକ ବ୍ରାହ୍ମଣଙ୍କୁ ଗୋଟିଏ କରି ବଦ୍ଧଗାଈ ଦିଆଯାଉଥିଲା ।

ଶୌନକ ପଚାରିଲେ—ମହାଶୟ ! ଗୋଟି ବଦ୍ଧରେ କେତେ ଗାଈ ଥାଆନ୍ତି ?

ମହର୍ଷି ସୂତ କହିଲେ—ମହାଭାଗ ! ଚଉଦ ଲକ୍ଷ୍ୟ ଗାଈଙ୍କର ଏକଶହ ଭାଗକୁ ଏକ ବଦ୍ଧ କହନ୍ତି । ଏଥିରେ ତେର ହଜାର ଚଉରାଶି ଗାଈ ଥାନ୍ତି । ଅନ୍ୟ କେତେକ କହନ୍ତି ଗାଈଙ୍କ ଦଳ ଉପରେ ଠେଙ୍ଗାଟିଏ ଫୋପାଡ଼ି ଦେଲେ ଠେଙ୍ଗାଟି ଯେତେ ଗାଈଙ୍କୁ ଡେଇଁଯିବ ସେତିକ, ଗାଈଙ୍କୁ ନେଇ ଏକ ବଦ୍ଧ ହେବ । ମୋଟାମୋଟି ଭାବେ ହଜାରେ ଗାଈଙ୍କ ଗୋଠକୁ ଏକ ବଦ୍ଧ କୁହାଯାଏ । ସେ ସମୟରେ ଗୋଧନ ହିଁ ଏକମାତ୍ର ଧନ ଥିଲା । ପ୍ରତ୍ୟେକ କର୍ମରେ ପ୍ରଥମେ ଗୋଦାନ କରାଯାଉଥିଲା, ତା'ପରେ ଯାଇ ଅନ୍ୟ କାର୍ଯ୍ୟ ଅନୁଷ୍ଠିତ ହେଉଥିଲା । ମହାରାଜ ଭରତ ଯଜ୍ଞରେ ନିଜର ବୈଭବ ଏହିପରି ପ୍ରଦର୍ଶନ କରିଥିଲେ । ତାଙ୍କ ଐଶ୍ୱର୍ଯ୍ୟକୁ ଦେଖି ଅନ୍ୟ ରାଜାମାନେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ପଡ଼ୁଥିଲେ । ଦେବତାମାନଙ୍କ ଯଜ୍ଞରେ ବି ଏପରି ଐଶ୍ୱର୍ଯ୍ୟ ଦେଖିବାକୁ ମିଳୁ ନ ଥିଲା । ଯଜ୍ଞ ଯୂପରେ ସେ ତେତିଶ ଶହ ଘୋଡ଼ା ବାନ୍ଧି ସମସ୍ତଙ୍କୁ ବିସ୍ମିତ କରିଦେଇଥିଲେ । ସୋମ ଯଜ୍ଞରେ ଅନୁଷ୍ଠିତ ମଷ୍ଣାର ନାମକ କାର୍ଯ୍ୟରେ ସେ ବ୍ରାହ୍ମଣମାନଙ୍କୁ ଚଉଦ ଲକ୍ଷ ହାତୀ ଦାନ କରିଥିଲେ । ସେ ହାତୀ ସାଧାରଣ ହାତୀ ନୁହେଁ, ସେମାନଙ୍କ ରଙ୍ଗ କଳା ଥିଲା । ସେମାନେ ପର୍ବତ ସଦୃଶ୍ୟ ବିଶାଳକାୟ ଥିଲେ । ଦାନ୍ତ ସଫା ଥିଲା । ସୁବର୍ଣ୍ଣ ଆଭୂଷଣରେ ମଣ୍ଡିତ ହୋଇଥିଲେ । ପିଠିରେ ସୁବର୍ଣ୍ଣ କଳାକାମ ହୋଇଥିବା ରେଶମ ବସ୍ତ୍ର ପଡ଼ିଥିଲା ଓ ସେମାନେ ସୁନା ଜଞ୍ଜିରରେ ବନ୍ଧା ହୋଇଥିଲେ । ଚାଲିବାବେଳେ ସେମାନେ ପର୍ବତ ଚାଲିଲା ପରି ଦେଖା-ଯାଉଥିଲେ । ଏହିପରି ସମ୍ରାଟ ଭରତଙ୍କର ସବୁ କାର୍ଯ୍ୟ ଅଦ୍ଭୁତ ପ୍ରକାର ଥିଲା । ଯଜ୍ଞରେ ଯେପରି ଦାନ ଦକ୍ଷିଣାଦି ସେ ଦେଇଥିଲେ ଅନ୍ୟ କେହି ସେପରି ଦେଇପାରିବ ନାହିଁ ।

ସେ ସମୟରେ ବ୍ରାହ୍ମଣମାନଙ୍କ ପ୍ରତି ବିଦ୍ୱେଷ ଆଚରଣ କରୁଥିବା ହୂଣ, କିରାତ, ଯବନ, ଅନ୍ଧ୍ର, କଙ୍କ, ଖଶ, ଶକ ପ୍ରଭୃତି ବହୁ ଅନାର୍ଯ୍ୟ ରାଜା ପୃଥିବୀରେ ଥିଲେ । ସମ୍ରାଟ୍ ଭରତ ସେମାନଙ୍କୁ ବିନାଶ କରିଥିଲେ । ଅନାର୍ଯ୍ୟମାନଙ୍କ ଆଧିପତ୍ୟକୁ ସେ ପୃଥିବୀରୁ ମୂଳୋତ୍ପାଟନ କରିଥିଲେ । ତାଙ୍କ ସାମ୍ରାଜ୍ୟରେ କେହି ଧର୍ମ ବିରୋଧୀ ନାସ୍ତିକ ବା ନୀଚ ରାଜା ନ ଥିଲେ । ଅସୁରମାନେ ତାଙ୍କ ସମୟରେ ପୃଥିବୀ ଛାଡ଼ି ପାତାଳକୁ ପଳାଇଯାଇ-ଥିଲେ । ସେମାନେ ପାତାଳରେ ସ୍ୱର୍ଗପରି ସୁଖଭୋଗ କରି ରହିଥିଲେ । ଭରତ ରାଜା ହେବା ପୂର୍ବରୁ ଅସୁରମାନେ ସ୍ୱର୍ଗ ଆକ୍ରମଣ କରି ଦେବାଙ୍ଗନାମାନଙ୍କୁ ରସାତଳକୁ ନେଇ ଯାଇଥିଲେ । ସେମାନେ ରସାତଳରେ ବନ୍ଦିନୀ ହୋଇ ଦୁଃଖରେ ସମୟ କାଟୁଥିଲେ । ମହାରାଜା ଭରତ ରସାତଳ ଆକ୍ରମଣ କରି ଅସୁରମାନଙ୍କୁ ପରାସ୍ତ କରି ସେହି ଦେବାଙ୍ଗନା-ମାନଙ୍କୁ ସ୍ୱର୍ଗକୁ ଫେରାଇ ନେଇଯାଇଥିଲେ ।

ମହାରାଜ ଭରତ ମନର ଅଭିଳାଷ ପୂର୍ଣ୍ଣ ହେବାଯାଏ ସଂସାର ସୁଖଭୋଗ ପୂର୍ବକ ଇଚ୍ଛାନୁସାରେ ଦାନଧର୍ମ କଲେ, ଯାଚକମାନଙ୍କ ମନୋରଥ ପୂର୍ଣ୍ଣ କଲେ ଏବଂ ଅନୁପମ ଦ୍ରବ୍ୟ ଐଶ୍ୱର୍ଯ୍ୟଯୁକ୍ତ ଅନେକ ଯଜ୍ଞ କଲେ । ଦେବଗଣଙ୍କୁ ହବ୍ୟ, ପିତୃପୁରୁଷଙ୍କୁ କବ୍ୟ, ଅତିଥି, ଅଭ୍ୟାଗତ, ବିପ୍ର ଗୁରୁଜନ ଓ ଆଶ୍ରିତମାନଙ୍କୁ ଦାନ, ମାନ ସତ୍କାରରେ ସନ୍ତୁଷ୍ଟ କଲେ । ଲୋକପାଳମାନଙ୍କ ପରି ଅନୁପମ ଐଶ୍ୱର୍ଯ୍ୟ ଭୋଗକାରୀ ସମ୍ରାଟ୍ ଭରତ ସର୍ବବିଧ ସୁଖକର ସାମଗ୍ରୀକୁ ଯଥାଯୋଗ୍ୟ ପାତ୍ରଙ୍କୁ ବିତରଣ କଲେ । ଏହିପରି ସତେଇଶ ସହସ୍ର ବର୍ଷ ପର୍ଯ୍ୟନ୍ତ ସସାଗରା ପୃଥିବୀକୁ ଧର୍ମପୂର୍ବକ ଶାସନ କରିଥିଲେ । ଶେଷରେ ବିଷୟ ସୁଖପ୍ରତି ତାଙ୍କର ବୈରାଗ୍ୟ ଜାତ ହେଲା । ସୁନ୍ଦରୀ ସମ୍ପତ୍ତି, ଅପ୍ରତିହତ ଓ ଅଟଳ ଶାସନ, ସବୁଠାରୁ ପ୍ରିୟ ନିଜର ପ୍ରାଣ, ମିଥ୍ୟା, ନଶ୍ୱର ତଥା କ୍ଷଣଭଙ୍ଗୁର ବୋଲି ଭାବି ସେ ବିଚାରିଲେ—ପର୍ଯ୍ୟାପ୍ତ ଉପଭୋଗରେ ସୁଖ ନାହିଁ କି ଶାନ୍ତି ନାହିଁ । ଏହି ଉପଲବ୍ଧି ଆସିବା ପରେ ସେ ସମସ୍ତ ସଂସାର ସୁଖରୁ ବିରତ ହେଲେ ।

ମହର୍ଷି ସୂତ କହିଲେ—ମୁନିଗଣ ! ମହାରାଜ ଭରତଙ୍କ ପରେ ତାଙ୍କର ଦତ୍ତକ ପୁତ୍ର ବିତଥ ରାଜା ହୋଇଥିଲେ ।

ଶୌନକ ପଚାରିଲେ—ମହାଭାଗ ! ଏ ବିତଥ କିଏ ? ସେ କାହାର ପୁତ୍ର ? ମହାରାଜା ଭରତ ତାଙ୍କୁ ଚାହିଁକି ଦତ୍ତକ ପୁତ୍ର କଲେ ? ଦୟା କରି ଆମକୁ ସେସବୁ କଥା କହନ୍ତୁ ।

ଏହା ଶୁଣି ସୂତ ନ ଶୁଣିଲା ପରି ହୋଇ କହିଲେ—ମହାଶୟ ! ବଡ଼ଲୋକଙ୍କର ବଡ଼ କଥା । ବିତଥଙ୍କର ଜନ୍ମ କିପରି ହେଲା ତାହା ନ କହିଲେ ଭଲ । ତେବେ ମୁଁ ଭରତ-ବଂଶ କଥା କହୁଛି । ସେହି ପ୍ରସଙ୍ଗରେ ମୁଁ ଭରତପୁତ୍ର ବିତଥଙ୍କ ଉତ୍ପତ୍ତି କଥା ସଂକ୍ଷେପରେ କହିବି । ଆପଣମାନେ ବର୍ତ୍ତମାନ ଭରତବଂଶ କଥା ମନଦେଇ ଶୁଣନ୍ତୁ ।

## ଛପ୍‌ପୟ

ଭରତ ସରିସ ଜଗ ମାହିଁ ବୀର କୋ ଜ୍ଞାନୀ ଦାନୀ ।
ପରମ ଯଶସ୍ୱୀ ଯୁଦ୍ଧକ୍ଷେତ୍ର ମହଁ ଅତି ହି ମାନୀ ॥
ଅଗଣିତ ଦୀନ୍ହେ ଦାନ ଅଶ୍ୱ ଭୂ, ରଥ, ଗଜ, ଗୋଧନ ।
କୀନ୍ହେ ରଘୁବଂଶ ବାହ୍ୟ ଭିତରୀ ମନ ଇନ୍ଦ୍ରିୟ ଗନ ॥
ଭୋଗେ ସବ ସଂସାର ସୁଖ, ତୋଉ ତୁଷ୍ଟ ନ ନୃପ ଭୟେ ।
ଭୋଗ ସକଲ ମିଥ୍ୟା ସମୁଝି, ଉପରତ ତନ ତେଁ ହ୍ୱୈ ଗୟେ ॥



# ଭରତ ବଂଶ କଥା

ବିତଥସ୍ୟ ସୁତୋ ମନ୍ୟୁର୍ବୃହତ୍କ୍ଷେତ୍ରୋ ଜୟସ୍ତତଃ ।
ମହାବୀର୍ଯ୍ୟୋ ନରୋ ଗର୍ଗଃ ସଂକୃତିସ୍ତୁ ନରାତ୍ମଜଃ ॥

(ଭାଗ-୯ସ୍କ-୨୧ଅ, ୧ଶ୍ଳୋ)

## ଛପପଦ୍ମ

ନୃପ ବିଦର୍ଭ କୀ ସୁତା ସୁନ୍ଦରୀ ରାଜଦୁଲାରୀ ।
ପତ୍ନୀ ଜନକୀ ତୀନ ସୁଶୀଲା ଅତି ସୁକୁମାରୀ ॥
ତିନ୍ ତେଁ ଜେ ସୁତ ଭୟେ ଭରତ ଅନୁରୂପ ନ ମାନେ ।
ତ୍ୟାଗେ ପତ୍ନୀ ବଂଶ ବିତଥ ଲଖି ନୃପ ଖିସିୟାନେ ॥
ସବୀ ମମତା ଗର୍ଭ ତେଁ, ପୈଦା ସୁରଗୁରୁ କର୍ୟୋ ସୁତ ।
ତ୍ୟାଗି ଦୟୋ ପିତୁ ମାତୁ ନେ, ମରୁତ ଉଠାୟୋ ଶିଶୁ ଭରତ ॥

ଦେବତା ହୁଅନ୍ତୁ, ମନୁଷ୍ୟ ହୁଅନ୍ତୁ, ଋଷି ମୁନି ଯେ କେହି ହୁଅନ୍ତୁ କାମାବେଗ ସମୟରେ କାହାର କର୍ତ୍ତବ୍ୟାକର୍ତ୍ତବ୍ୟ ଜ୍ଞାନ ରହେନାହିଁ । ଯାହା ପାଖରେ ଯଥେଷ୍ଟ ପରିମାଣରେ ଭୋଗ ସାମଗ୍ରୀ ଥାଏ, ତାକୁ ଅଭାବର ଅନୁଭବ ଜଣାପଡ଼େ ନାହିଁ । ଘରେ ଖାଇବା ପିଇବାର ସାମଗ୍ରୀ ବିପୁଳ ମାତ୍ରାରେ ଥିଲେ ଲୋକ ମନ୍ଦାଗ୍ନି ପୀଡ଼ିତ ହୁଏ । ତାକୁ ଭୋକ କି ଶୋଷ କିଛି ଲାଗେ ନାହିଁ । ଯେତେବେଳେ ଅନ୍ନ କ୍ଷୟ ହୋଇଯାଏ, ସେତେବେଳେ ଜଠରାଗ୍ନି ପ୍ରଦୀପ୍ତ ହୁଏ, ଭୋକ ବେଶୀ ଲାଗେ । ଧନୀ ଲୋକେ ଦରିଦ୍ରଙ୍କ ସ୍ଥିତି ଅନୁଭବ କରି ପାରନ୍ତି ନାହିଁ । ଯେଉଁମାନେ ବିଷୟୀ, ଅହୋରାତ୍ର ବିଷୟରେ ଲିପ୍ତ ରହିଥାନ୍ତି, ସେମାନେ କାମବେଗ କଥା କଣ ଜାଣିବେ ? ସେମାନେ କୁକୁର, ଘୁଷୁରି ପାରାପରି ଦିନରାତି ବିଷୟଭୋଗରେ ମାତିଥାନ୍ତି । କିନ୍ତୁ ଯେଉଁମାନେ ବିଷୟଠାରୁ ଦୂରରେ ରହି ଜିତେନ୍ଦ୍ରିୟ ହେବା ପାଇଁ ଚେଷ୍ଟା କରୁଥାନ୍ତି, ବିଷୟ ଆଗରେ ବାସନା କେତେ ପ୍ରବଳ ହୁଏ, ତାହା ସେହିମାନେ ହିଁ ବୁଝିପାରନ୍ତି । ସାଧାରଣ ଲୋକେ ନିଜର ପାପକୁ ଲୁଚାଇବାବେଳେ ମହାପୁରୁଷମାନେ ନିଜର ଦୁର୍ବଳତାକୁ ସମସ୍ତଙ୍କ ଆଗରେ ପ୍ରକାଶ କରିଦିଅନ୍ତି । ଏହା ହିଁ ସେମାନଙ୍କ ଚରିତ୍ରର ବୈଶିଷ୍ଟ୍ୟ ।

ମହର୍ଷି ସୂତ କହିଲେ—ମୁନିଗଣ ! ଦୁଷ୍ମନ୍ତଙ୍କ ପୁତ୍ର ରାଜର୍ଷି ଭରତଙ୍କର ତିନିରାଣୀ ଥିଲେ । ସେହି ତିନିଜଣଯାକ ଥିଲେ ବିଦର୍ଭ ଦେଶର ମହାରାଜଙ୍କ କନ୍ୟା । ରାଜା ସେମାନଙ୍କୁ ଖୁବ୍ ସ୍ନେହ କରୁଥିଲେ । ସେମାନେ ପ୍ରତ୍ୟେକେ ତିନୋଟି ଲେଖାଏ ପୁତ୍ରର ଜନନୀ ହୋଇଥିଲେ । କିନ୍ତୁ କୌଣସି ପୁତ୍ରକୁ ରାଜା ନିଜର ଅନୁରୂପ ଗୁଣସମ୍ପନ୍ନ ବୋଲି ଦେଖିଲେ ନାହିଁ । ସେମାନେ ନିଜର ପୁଅ ନୁହଁନ୍ତି ବୋଲି ରାଜାଙ୍କର ଧାରଣା ହେଲା । ରାଣୀମାନେ ଭୟରେ ରାଜାଙ୍କ ସନ୍ଦେହ ଓ କୋଧକୁ ଡରି ପୁଅମାନଙ୍କୁ ମାରିପକାଇଲେ । ଏହା ଫଳରେ ରାଜା ଅନପତ୍ୟ ହୋଇଗଲେ । ତାଙ୍କର କେହି ସନ୍ତାନ ରହିଲେ ନାହିଁ । ବଂଶ ପରମ୍ପରାକୁ ଅକ୍ଷୁଣ୍ଣ ରଖିବା ପାଇଁ ରାଜା ମରୁତ୍‌ଗଣଙ୍କ ଉଦ୍ଦେଶ୍ୟରେ ଏକ ବଡ଼ ଯଜ୍ଞ କଲେ । ସନ୍ତାନ କାମନାରେ ସେ ମରୁଦ୍‌ଗଣଙ୍କୁ ପ୍ରାର୍ଥନା କଲେ । ସନ୍ତୁଷ୍ଟ ହୋଇ ମରୁଦ୍‌ଗଣ ରାଜାଙ୍କୁ ଏକ ସୁନ୍ଦର ପୁତ୍ର ଆଣି ଦେଲେ । ସେହି ପୁତ୍ର ବୃହସ୍ପତିଙ୍କ ଔରସରେ ବୃହସ୍ପତିଙ୍କ ବଡ଼ଭାଇ ଉତଥ୍ୟଙ୍କ ପତ୍ନୀ ମମତାଙ୍କ ଗର୍ଭରୁ ଜାତ ହୋଇଥିଲା । ନିଜ ପତି ଉତଥ୍ୟଙ୍କ ଔରସରୁ ମମତାଙ୍କର ଯେଉଁ ପୁତ୍ର ଜାତ ହେଲା ବୃହସ୍ପତିଙ୍କ ଅଭିଶାପ ଯୋଗୁ ସେ ଜନ୍ମାନ୍ଧ ହୋଇ ଜନ୍ମ ଗ୍ରହଣ କଲା । ସେଥିପାଇଁ ତାଙ୍କର ନାମ ଦୀର୍ଘତମା ଦିଆଯାଇଥିଲା । ମମତା ଓ ବୃହସ୍ପତି ମିଳନରୁ ଯେଉଁ ପୁତ୍ର ହୋଇଥିଲା ଦୁଇଜଣଙ୍କଠାରୁ ଜନ୍ମ ହୋଇଥିବାରୁ ସେ 'ଦ୍ୱାଜ' ନାମରେ ପରିଚିତ ହେଲା । ମମତା ବୃହସ୍ପତିଙ୍କୁ କହିଲେ—ହେ ବୃହସ୍ପତି ! ତୁମେ ଏହି ଦ୍ୱାଜର ଭରଣ ପୋଷଣ କର ।

ବୃହସ୍ପତି କହିଲେ—ଏହାର ଭରଣ ପୋଷଣ ତୁମେ କର । ଏପରି ଉଭୟେ ପରସ୍ପରକୁ କହି କେହିହେଲେ ସେହି ପୁଅର ଭରଣ ପୋଷଣ ଦାୟିତ୍ୱ ନେଲେ ନାହିଁ । ଦେବଗୁରୁ ଭଗବାନ୍ ବୃହସ୍ପତିଙ୍କ ଔରସରୁ ଜନ୍ମଗ୍ରହଣ କରିଥିବାରୁ ସେହି ପୁଅଟି ଅତି ସୁନ୍ଦର ଓ ପରମ ତେଜସ୍ୱୀ ହୋଇଥିଲା । ମାତା ପିତା କେହି ତା'ର ପାଳନ ଦାୟିତ୍ୱ ନ ନେଇ 'ଦ୍ୱାଜ'କୁ ବଣରେ ଛାଡ଼ିଦେଇ ଚାଲିଗଲେ । ମରୁତମାନେ ତା'ର ଭରଣ ପୋଷଣ କଲେ । ସେଥିପାଇଁ ଭରଦ୍ୱାଜ ନାମରେ ସେହି ପିଲା ପରିଚିତ ହେଲା ।

ମରୁତଗଣ ପ୍ରସନ୍ନ ହୋଇ ସେହି ଭରଦ୍ୱାଜକୁ ନେଇ ସମ୍ରାଟ ଭରତଙ୍କୁ ଦେଲେ । ଅତି ସୁନ୍ଦର ଓ ତେଜସ୍ୱୀ ପିଲାଟିଏ ପାଇ ଭରତ ପରମ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ତାକୁ ନିଜର ପୁତ୍ର ରୂପେ ଗ୍ରହଣ କଲେ । ତା'ର ଅନ୍ୟ ନାମ ଥିଲା ବିତଥ । ଯେ ଅନ୍ୟାସ୍ତ୍ର ଆଚରଣରୁ ଜନ୍ମ ହୋଇଥାଏ ତାକୁ ବିତଥ କହନ୍ତି । ଭରତ ବଂଶ ବିତଥ ଅର୍ଥାତ୍ ଉଚ୍ଛିନ୍ନ ହେବାକୁ ଯାଉଥିବାବେଳେ ପୁତ୍ରପ୍ରାପ୍ତି ହେଲା । ସେଥିପାଇଁ ମଧ୍ୟ ସେ ବିତଥ ନାମରେ ଅଭିହିତ ହେଲା । ମହାରାଜ ତାକୁ ଯୁବରାଜ ପଦରେ ଅଭିଷେକ କଲେ । ପରେ ସେହି ପୁଅ ଉପରେ ରାଜ୍ୟଭାର ସମର୍ପଣ କରି ଭରତ ବନ ଗମନ କରିଥିଲେ ।

ମହାରାଜ ଭରତ ନିଜର ପିତା, ପିତାମହଙ୍କ ଅମଳରୁ ଚାଲିଆସିଥିବା ପରମ୍ପରା ଅନୁସାରେ ଧର୍ମପୂର୍ବକ ରାଜ୍ୟଶାସନ କରିବାକୁ ଲାଗିଲେ । ମନ୍ୟୁ ନାମରେ ତାଙ୍କର ପୁଅଟିଏ ।

ମହାରାଜ ମନ୍ୟୁଙ୍କର ମଧ୍ୟ ଶରୀରରେ ଥିବା ପାଞ୍ଚ ଇନ୍ଦ୍ରିୟ ପରି ଯଥା ସମୟରେ ପାଞ୍ଚ ପୁଅ ଜନ୍ମ ହେଲେ । ସେମାନଙ୍କର ନାମ ହେଲା ବୃହତ୍‌କ୍ଷତ୍ର, ଜୟ, ମହାବୀର୍ଯ୍ୟ, ନର ଓ ଗର୍ଗ । ଏମାନଙ୍କ ମଧ୍ୟରୁ ଚତୁର୍ଥ ପୁତ୍ର ନରଙ୍କ ଔରସରୁ ସଂକୃତି ନାମକ ପୁତ୍ର ଜନ୍ମ ହୋଇଥିଲା । ସଂକୃତିଙ୍କର ଗୁରୁ ଓ ରନ୍ତିଦେବ ନାମରେ ଦୁଇପୁଅ ହୋଇଥିଲେ । ଏ ଦୁହିଁଙ୍କ ମଧ୍ୟରେ ମହାରାଜା ରନ୍ତିଦେବ ପରମ ଧାର୍ମିକ ଓ ଯଶସ୍ୱୀ ଥିଲେ । ରାଜର୍ଷି ରନ୍ତିଦେବଙ୍କର ଯଶକୀର୍ତ୍ତି ଅଦ୍ୟାବଧି ତ୍ରିଲୋକରେ କୀର୍ତ୍ତିତ ହେଉଛି । ସେ ନିଜ ରାଜ୍ୟର ସମସ୍ତ ଆୟ ବିତରଣ କରିଦେଉଥିଲେ । ତାଙ୍କ ବଡ଼ଭାଇ ଗୁରୁ ଏହା ଜାଣିପାରି ତାଙ୍କୁ ରାଜପଦରୁ ବାହାର କରିଦେଲେ ଓ ତାଙ୍କ ପାଇଁ ମାସିକ ବୃତ୍ତି ଙ୍କର୍ତ୍ତିଦେଲେ । ସେ ଥିଲେ ଈଶ୍ୱର ବିଶ୍ୱାସୀ । ବିନା ଉଦ୍‌ଯୋଗରେ ଯାହା ମିଳିବ ସେଥିରେ ଜୀବନ ଯାପନ କରିବା ପାଇଁ ସେ ପ୍ରତିଜ୍ଞା କରିଥିଲେ । ସେ କାହାକୁ କିଛି ମାଗୁ ନ ଥିଲେ କି ଖାଇବା ପାଇଁ ଖାଦ୍ୟ ସଂଗ୍ରହ କରୁ ନ ଥିଲେ । ଏପରି କଠୋର ବ୍ରତ ଯୋଗୁଁ ଦୈବବଶତଃ ଥରେ ତାଙ୍କୁ ଅଠଚାଳିଶ ଦିନ ବିନା ଅନ୍ନଜଳରେ ଅତିବାହିତ କରିବାକୁ ପଡ଼ିଥିଲା ।

ଏହା ଶୁଣି ଶୌନକ କହିଲେ—ମହାଶୟ ! ରନ୍ତିଦେବ କିପରି ଓ କାହିଁକି ଅଠଚାଳିଶ ଦିନ ବିନା ଅନ୍ନ ଜଳରେ ରହିଲେ ତାହା ଦୟା କରି ବିସ୍ତାର ପୂର୍ବକ ଆମକୁ କହନ୍ତୁ ।

ମହର୍ଷି ସୂତ କହିଲେ—ଠିକ୍ ଅଛି । ପରମ ଯଶସ୍ୱୀ ମହାଭାଗ୍ୟଶାଳୀ ମହାରାଜ ରନ୍ତିଦେବଙ୍କ କଥା କହୁଛି, ଆପଣମାନେ ପ୍ରେମପୂର୍ବକ ମନ ଦେଇ ଶୁଣନ୍ତୁ ।

## ଛପ୍‌ପୟ

ଦୟୋ ମରୁତ୍‌ଗଣ ଲାଇ ଭରତ ନେ ସୁତ ନିଜ ଜାନେୟା ।
ପାୟୋ ମରୁତ ପ୍ରସାଦ ବଂଶ ନିଜ ଉଜ୍ଜ୍ୱଲ ମାନେୟା ॥
ବିତଥ ନାମ ତେଁ ଖ୍ୟାତ ଜଗତମହଁ ଭୟେ ଭରତସୁତ ।
ତ୍ୟାଗି ରାଜ ପରିବାର ଗୟେ ବନ ନରପତି ତପହିତ ॥
ବନ ଶକୁନ୍ତଲା ସଙ୍ଗ ମହଁ, ଢହେଁ କରେଁ ତପ ଟେକ ମନ ।
ମିଥ୍ୟା ସମୁଝି ପ୍ରପଞ୍ଚ ସବ, ଯୋଗ ମାର୍ଗ ତେଁ ତକେୟା ତନ ॥



## ମହାରାଜ ରନ୍ତିଦେବଙ୍କ କଥା

ରନ୍ତିଦେବସ୍ୟ ହି ଯଶ ଇହାମୁତ୍ର ଚ ଗୀୟତେ ।
ବିୟଦ୍‌ବିତ୍ତସ୍ୟ ଦଦତୋ ଲବ୍‌ଧଂ ଲବ୍‌ଧଂ ବୁଭୁକ୍ଷତଃ ॥
ନିଷ୍କିଞ୍ଚନସ୍ୟ ଧୀରସ୍ୟ ସକୁଟୁମ୍ବସ୍ୟ ସୀଦତଃ ।
ବ୍ୟତୀୟୁରଷ୍ଟଚତ୍ୱାରିଂଶଦହାନ୍ୟପିବତଃ କିଲ ॥

(ଭାଗ-୯-ସ୍କ, ୨୧-ଅ, ୨-୩ଶ୍ଳୋ)

ଭଇଲେ ବିତଥ ଜେ ମନ୍ୟୁ ପାଞ୍ଚ ସୁତ ତିନଜେ ସୁନ୍ଦର ।
ବୃହତ୍‌କ୍ଷେତ୍ର, ଜୟ, ଗର୍ଗ, ଭଇଲେ ନର ମହାବୀର୍ଯ୍ୟବର ॥
ନରସୁତ ସଂକୃତି ଭଇଲା ତାସୁତ ଦ୍ୱି ଜଗଭୂଷଣ ।
ପ୍ରଥମ ଭଇଲା ଗୁରୁ ରନ୍ତିଦେବ ଦୁସର ଜନାର୍ଦ୍ଦନ ॥
ବିନୁ ପୁରୁଷାରଥ ଦୈବବଶ, ମିଳନ୍ତି ଅଯାଚିତ ଜୋ ଅଶନ ।
ଦେଇ ଅଭ୍ୟାଗତ ଅତିଥି କୁଁ, ପାଉଁ ହୋଇ ସନ୍ତୁଷ୍ଟ ମନ ॥

ଭଗବତ୍ ପ୍ରାପ୍ତିର ଏକମାତ୍ର ଉପାୟ ହେଉଛି ସବୁଠାରେ ଓ ସମସ୍ତଙ୍କ ଭିତରେ ଭଗବାନଙ୍କୁ ଦେଖିବା ଓ ଅନୁଭବ କରିବା ଯାହାଦ୍ୱାରା କୌଣସି ଭେଦ ଭାବନା ରହେ ନାହିଁ । ଭେଦଭାବ ଥିଲେ ଭଗବାନଙ୍କୁ ପାଇହେବ ନାହିଁ । ଯେଉଁଠି ହେଲେ ହେଉ, ଯେଉଁ ଉପାୟରେ ହେଉ ସାଧନାରେ ନିଷ୍ଠା ରହିଲେ ଭଗବାନ ପ୍ରକଟ ହୋଇଯିବେ । ମନ ଏକାଗ୍ର ହୋଇଗଲେ, ଚିତ୍ତବୃତ୍ତି ସ୍ଥିର ହୋଇଗଲେ ଅର୍ଚ୍ଚା ବିଗ୍ରହରେ ମାତା ପିତାଙ୍କଠାରେ, ଗୁରୁଙ୍କଠାରେ, ଜଡ଼ବସ୍ତୁରେ, ଚୈତନ୍ୟରେ, ପଶୁ, ପକ୍ଷୀ, ବୃକ୍ଷ, ଅତିଥି, ଅଭ୍ୟାଗତଙ୍କ ମାଧ୍ୟମରେ ଭଗବାନ୍ ପ୍ରକଟ ହୋଇଯିବେ । ଦାନଦ୍ୱାରା ହେଉ, ପୂଜାଦ୍ୱାରା ହେଉ, ଧର୍ମଦ୍ୱାରା ବା ଅତିଥିସେବା ଦ୍ୱାରା, ପ୍ରାଣାୟାମରେ, ଯୋଗରେ, ଜ୍ଞାନରେ ବା ଅନ୍ୟ କିଛି ସାଧନା ଦ୍ୱାରା ଚିତ୍ତଶୁଦ୍ଧି ହୋଇଗଲେ ଭଗବତ୍ ପ୍ରାପ୍ତି ସହଜ ହୁଏ । କିନ୍ତୁ ସେହି ସାଧନାରେ ବିଚଳିତ ନ ହୋଇ ଦୃଢ଼ ରହିବା ଉଚିତ୍ । ନିଜର ସତ୍ତାକୁ ପୃଥକ କରିଦେଇ ପରମାର୍ଥ ସତ୍ତାକୁ ବୃଦ୍ଧି କରିପାରିଲେ ସେହି ସାଧନା ଦ୍ୱାରା ଭଗବାନଙ୍କ ସାକ୍ଷାତ୍କାର ମିଳିପାରିବ । ମହାରାଜ ରନ୍ତିଦେବ ନିଜର ଶକ୍ତି ଅନୁଯାୟୀ ଦୀନ ଦୁଃଖୀମାନଙ୍କର ଦୁଃଖ ଦୂରକରିବା ବ୍ରତ ଗ୍ରହଣ କରିଥିଲେ । ସେହି ବ୍ରତାଚରଣ ଫଳରେ ସେ ଭଗବାନଙ୍କ

ଦର୍ଶନ ଲାଭ କଲେ ଏବଂ ନିଜର ଉଜ୍ଜ୍ୱଳ ଧବଳ କୀର୍ତ୍ତିକୁ ଇହଲୋକରେ ଛାଡ଼ି ସେ ପରମ ପଦର ଅଧିକାରୀ ହେଲେ ।

ମହର୍ଷି ସୂତ କହିଲେ—ମୁନିଗଣ ! ମହାରାଜ ରନ୍ତିଦେବ ତାଙ୍କ ପାଖକୁ ଆସି ଯେ ଯାହା ମାଗିବ ତାକୁ ନାହିଁ କରିବେ ନାହିଁ ବୋଲି ବ୍ରତ ଗ୍ରହଣ କରିଥିଲେ । ତାଙ୍କ ପରିବାରର ଅନ୍ୟମାନେ ମଧ୍ୟ ସେହିପରି ଥିଲେ । ବଡ଼ଭାଇ ତାଙ୍କର ଏପରି ବ୍ରତାଚରଣ ଦେଖି ସମ୍ପୂର୍ଣ୍ଣ ରାଜ୍ୟକୁ ସେ ଦାନ ଦେଇ ପାରନ୍ତି ବୋଲି ଚିନ୍ତାକରି ରନ୍ତିଦେବଙ୍କ ରାଜ୍ୟାଧିକାର କରି ନିଜ ହାତକୁ ନେଲେ ଓ ତାଙ୍କର ଚଳିବା ପାଇଁ ମାସିକ ବୃତ୍ତି ଖଞ୍ଜିଦେଲେ । ଏହାଦ୍ୱାରା ଅଯଥା ଜଞ୍ଜାଳରୁ ମୁକ୍ତି ପାଇଲେ ବୋଲି ଭାବି ରନ୍ତିଦେବ ବହୁତ ଖୁସିହେଲେ । ଯାହା ବୃତ୍ତି ମିଳୁଥିଲା ସେତିକରେ ସେ ଚଳିଯାଉଥିଲେ । ଯଦି କେହି କେବେ କିଛି ମାଗିଲା ତେବେ ସେ ଦୁଇ ତିନିଦିନ ଉପବାସରେ ରହି ସେତିକ ଦାନ କରୁଥିଲେ ଏବଂ ପୁଣି ବୃତ୍ତି ପାଇଲେ ନିଜେ ଚଳୁଥିଲେ ।

ସଂସାରରେ କେତେକ ଲୋକ ପୁରୁଷାର୍ଥକୁ ଶ୍ରେଷ୍ଠ ବୋଲି ମାନନ୍ତି । ସେମାନେ କହନ୍ତି—ସବୁ କିଛି ପୁରୁଷାର୍ଥ ଦ୍ୱାରା ହିଁ ମିଳେ । ନିର୍ବୀର୍ଯ୍ୟ ଓ ଅଳସୁଆମାନେ ଦୈବର ଅଧୀନ ହୋଇ ରହନ୍ତି । କିନ୍ତୁ ଭାଗ୍ୟ କଥା ଚିନ୍ତା ନ କରି ନିରନ୍ତର ପୁରୁଷାର୍ଥ ହିଁ ଚିନ୍ତା କରିବା ଉଚିତ । ପୁରୁଷାର୍ଥ ଆଗରେ ଭାଗ୍ୟ କିଛି ନୁହେଁ । କାରଣ ଶୋଇରହିଥିବା ସିଂହ ମୁହଁରେ ହରିଣ ଆପେ ଆପେ ପଡ଼ିଯାଏ ନାହିଁ । ପ୍ରଯତ୍ନ ନ କରିବାଯାଏ ଭାଗ୍ୟ କିଛି କରି ପାରିବ ନାହିଁ ।

କେତେକ କହନ୍ତି—ପ୍ରାରବ୍ଧ ଓ ପୁରୁଷାର୍ଥ ଉଭୟର ମହତ୍ତ୍ୱ ଅଛି । ପକ୍ଷୀଟିଏ ଉଡ଼ିବା ପାଇଁ ଯେପରି ଉଭୟ ଡେଣା ଆବଶ୍ୟକ; ରଥ ଗଡ଼ିବା ପାଇଁ ଯେପରି ଉଭୟ ଚକ ଦରକାର, ସନ୍ତାନ ପାଇଁ ଯେପରି ସ୍ତ୍ରୀ ପୁରୁଷ ଉଭୟଙ୍କର ପ୍ରୟୋଜନ, ସେହିପରି କାର୍ଯ୍ୟକୁ ସଫଳ କରିବା ପାଇଁ ପାରବ୍ଧ ଓ ପୁରୁଷାର୍ଥ ଉଭୟଙ୍କର ଆବଶ୍ୟକତା ରହିଛି । ପୁରୁଷାର୍ଥ ଅର୍ଜ୍ଜନ ବିନା ପ୍ରାରବ୍ଧ ସୃଷ୍ଟି ହେବ କିପରି ? ପୂର୍ବ ଜନ୍ମର ପୁରୁଷାର୍ଥ କୃତକର୍ମ ଦ୍ୱାରାହିଁ ଆଗାମୀ ଜନ୍ମଗୁଡ଼ିକ ପାଇଁ ପ୍ରାରବ୍ଧ ତିଆରି ହୁଏ । ସେଥିପାଇଁ ନିରନ୍ତର ପୁରୁଷାର୍ଥ ଅର୍ଜନ କରିବା ଆବଶ୍ୟକ । କିନ୍ତୁ କର୍ମର ଫଳକୁ ଦୈବର ଅଧୀନ ବୋଲି ଭାବି ପ୍ରାରବ୍ଧ ଉପରେ ନିର୍ଭର କରିବା ଉଚିତ । କାରଣ, କର୍ମ କରିବାରେ ସିନା ଆମର ଅଧିକାର ଅଛି, ତା'ର ଫଳ ପ୍ରାପ୍ତିରେ ଆମର ଅଧିକାର ନାହିଁ ।

ଅନ୍ୟ କେତେକ ବ୍ୟକ୍ତି ଭାଗ୍ୟକୁ ହିଁ ସବୁକିଛି ବିଚାରନ୍ତି । ସେମାନେ କହନ୍ତି—ଯାହା ଆମ ଭାଗ୍ୟରେ ଥିବ, ଆମେ ଯେଉଁଠି ଥାଉଁ ବା ଯେପରି ଥାଉଁ, ତାହା ଆମକୁ ଅବଶ୍ୟ ମିଳିବ । ବିଧାତା ଏ ଜନ୍ମରେ ଆମ ପାଇଁ ଯାହା କିଛି ସୁଖ ଦୁଃଖ, ହାନି ଲାଭ, ଭୋଗ ଯୋଗ ଭାଗ୍ୟରେ ଲେଖିଛନ୍ତି, ତାହା ବାଲି ଉପରେ ବା ଯେଉଁ ଅବସ୍ଥାରେ ଥିଲେ ବି ଆମକୁ ନିଶ୍ଚୟ ମିଳିବ । କିନ୍ତୁ ଯାହା ଆମ ଭାଗ୍ୟରେ ନ ଥିବ, ଆମେ ସୁନା ପାହାଡ଼ ଉପରେ ଘର କରିଥିଲେ

ବି ଆମକୁ ମିଳିବ ନାହିଁ । ସଂସାରର ପ୍ରତ୍ୟେକ ଅନ୍ନ ଦାନାରେ, ବିନ୍ଦୁମାତ୍ର ଜଳରେ, ଟିକି ଲୁଗାଖଣ୍ଡିକ ଉପରେ ମଧ୍ୟ ତାର ଉପଭୋକ୍ତାର ନାମ ଲେଖାହୋଇଛି । ଯେଉଁଥିରେ ଯାହାର ନାମ ଅଛି ସେ ଯେଉଁଠି ଥିଲେ ବି ତାହା ପାଇବ । ଯେଉଁଥିରେ ତୁମର ନାମ ନାହିଁ ତୁମେ ଯେତେ ଚେଷ୍ଟା କଲେ ବି ତାହା ପାଇପାରିବ ନାହିଁ ।

ଆମ୍ବ ଗଛଟିଏ କିଏ ଲଗାଏ । ତାକୁ ପାଣି ଦେଇ କିଏ ବଡ଼ କରାଏ । କିଏ ତାର ଫଳ ତୋଳେ ଓ କିଏ ତାକୁ ଟୋକେଇରେ ନେଇ ବିକ୍ରି କରେ । କେତେ ଲୋକ 'ମୋର ଆମ୍ବ, ମୋର ଆମ୍ବ' ବୋଲି ଡାକୁଥାନ୍ତି । କିନ୍ତୁ ସେ ଆମ୍ବକୁ ସେହି ଖାଏ ଯାହାର ନାମ ସେଥିରେ ଲେଖାଥାଏ । ଜଣେ ଧନୀ ଲୋକ ଅଛନ୍ତି । ତାଙ୍କ ଆମ୍ବ ବଗିଚାରେ ଲକ୍ଷେ ହେବ ଆମ୍ବଗଛ ଫଳିଛି । କିନ୍ତୁ ଡାକ୍ତର ତାଙ୍କୁ ଆମ୍ବ ଖାଇବାକୁ ମନା କରିଛନ୍ତି । ତେଣୁ ସେ ଗୋଟିଏ ହେଲେ ଆମ୍ବ ଖାଇ ପାରିବେ ନାହିଁ । କିନ୍ତୁ ସେହି ଆମ୍ବରେ ଯାହାର ନାମ ଲେଖା ଅଛି ସେ ବିଦେଶୀ ହେଲେ ମଧ୍ୟ ଆସି ଆମ୍ବ ଖାଇଯାଉଛନ୍ତି । ଆଗରେ ଥାଳିରେ ଖାଦ୍ୟ ବଢ଼ା ହୋଇଛି । ଯଦି ଭାଗ୍ୟରେ ସେ ଭୋଜନ ନାହିଁ ତେବେ ବିରାଡ଼ି କି କୁକୁର ଆସି ସେଥିରେ ମୁହଁ ମାରି ଦେଇଯିବେ । ସେ ସମୟରେ କୌଣସି ଜରୁରୀ କାମ ଆସି ପଡ଼ିବ, କିଏ ଝଗଡ଼ା କରିବ, ଯାହା ଫଳରେ ସେହି ବଢ଼ା ହୋଇ ଖାଦ୍ୟ ଥାଳିକୁ ଛାଡ଼ି ଲୋକ ଉଠିଯିବାକୁ ବାଧ୍ୟ ହେବ । ତେଣୁ ପୁରୁଷାର୍ଥର କୌଣସି ଯଥାର୍ଥତା ନାହିଁ । ପିଲାଙ୍କୁ ମିଛ ସତ କହି ଭୁଲାଇଲା ପରି ଭାଗ୍ୟ କଥାକୁ ଏଡ଼େଇଯାଇ ହେବନାହିଁ । ତେଣୁ ଭାଗ୍ୟ ଯୋଗୁଁ ଯାହା ପାଖକୁ ଆସିଯିବ ତାକୁ ପ୍ରଭୁଙ୍କ ପ୍ରସାଦ ବୋଲି ଭାବି ଶ୍ରମ ସହକାରେ ଗ୍ରହଣ କରିବା ଉଚିତ । କିନ୍ତୁ ଯଦି ମିଳିବ ନାହିଁ ତେବେ ଭାବିବାକୁ ହେବ, ଆଜି ପ୍ରଭୁଙ୍କର ବରାଦ ନାହିଁ ।

ଯେଉଁମାନେ ଏପରି ବିଚାର କରନ୍ତି ସେମାନେ ଏତିକି ପୁରୁଷାର୍ଥ କରନ୍ତି ଯେ ଯାହା ପାଖକୁ ଆସେ ତାକୁ ନେଇ ଖାଇଦିଅନ୍ତି । କେହି ଭୋକିଲା କି ଶୋଷିଲା ଲୋକ ଆସିଲେ ତାକୁ ଦେଇଦିଅନ୍ତି । ଏହାଛଡ଼ା ଏପରି ଲୋକେ ଭୋଗ୍ୟ ସାମଗ୍ରୀ ସଂଗ୍ରହ କରିବାରେ କୌଣସି ପୁରୁଷାର୍ଥ ପ୍ରଦର୍ଶନ କରନ୍ତି ନାହିଁ । ସେମାନେ ସବୁବେଳେ ଅଚ୍ୟୁତଙ୍କ ଅନୁକମ୍ପାକୁ ପ୍ରତ୍ୟାଶା କରି ରହିଥାନ୍ତି । ମହାରାଜ ରନ୍ତିଦେବ ଏହିପରି ବିଚାରର ଲୋକ ଥିଲେ । ସମ୍ଭବତଃ ସେ ମରୁଭୂମିରେ ବସବାସ କରୁଥିଲେ ଯେଉଁଠାରେ ଅନ୍ନ ପରି ଜଳ ପାଇଁ ମଧ୍ୟ ପୁରୁଷାର୍ଥ କରିବାକୁ ପଡ଼ୁଥିଲା ।

ଯେଉଁମାନେ ନିଷ୍ଠାବାନ୍ ସେମାନଙ୍କର ନିଷ୍ଠା ଭାଙ୍ଗିବା ପାଇଁ ଅକାରଣରେ ଶତ୍ରୁତା କରୁଥିବା ଖଳ ପୁରୁଷମାନେ ଚେଷ୍ଟା କରିଥାନ୍ତି । କିଏ ସତ୍ୟବାଦୀ ହୋଇଥିଲେ ତାକୁ ମିଛ କୁହାଇବା, କିଏ ବ୍ରହ୍ମଚାରୀ ହୋଇଥିଲେ ସେଥିରୁ ତାକୁ ବିଚ୍ୟୁତ କରାଇବା, କିଏ କୌଣସି ଭଲ ଅନୁଷ୍ଠାନ କରୁଥିଲେ ତାକୁ ସେଥିରୁ ନିବୃତ୍ତ କରାଇବା ପ୍ରଭୃତି କେତେକ ଲୋକଙ୍କ

ମନୋବାଞ୍ଛାପୂରଣକାରୀ । ଏପରି କାର୍ଯ୍ୟ କରିପାରିଲେ ସେମାନେ ଅସନ୍ତୋଷ ପାଇ- ଥାନ୍ତି । ମହାରାଜ ଋନ୍ତିଦେବଙ୍କ ଗୁଣକୁ ତ ଅନ୍ୟ ଲୋକେ ପାଇପାରନ୍ତେ ନାହିଁ । କିନ୍ତୁ ତାଙ୍କୁ ଦ୍ୱେଷ କରିବା ଲୋକ ତାଙ୍କୁ କିମ୍ଭମତ୍ସ୍ୟତ କରିଦେବା ପାଇଁ ବହୁ ଲୋକ ଚେଷ୍ଟା କରିବାକୁ ଲାଗିଲେ ।

ଏହା ଶୁଣି ଶୌନକ ପଚାରିଲେ—ମହାଶୟ ! ନିଜର ସର୍ବସ୍ୱ ଯେ ଭଗବାନଙ୍କୁ ଅର୍ପଣ କରିଛି, ତାକୁ ମଧ୍ୟ ଦୁଷ୍ଟ ଲୋକେ କାହିଁକି ଦୁଃଖ ଦିଅନ୍ତି ? ଭଗବାନ୍ ସେମାନଙ୍କୁ କାହିଁକି ରକ୍ଷା କରନ୍ତି ନାହିଁ ?

ମହର୍ଷି ସୂତ କହିଲେ—ମହାଭାଗ ! ଭଗବାନ ତ ଏସବୁ ଲୀଳା କରୁଅଛନ୍ତି ! ଭଗବାନଙ୍କ ଇଚ୍ଛା ନ ହେଲେ ପତ୍ରଟିଏ ବି ହଲି ପାରିବ ନାହିଁ । ବଣିଆ ଯେପରି ସୁନାକୁ ବାରମ୍ବାର ନିଆଁରେ ତତାଇ ଉଜ୍ଜ୍ୱଳ କରିଥାଏ, ସେହିପରି ଭଗବାନ୍ ଭକ୍ତକୁ ଦୁଃଖ ରୂପକ ଅଗ୍ନିରେ ବାରମ୍ବାର ପକାଇ ଉଜ୍ଜ୍ୱଳ କରିଥାନ୍ତି ଏବଂ ସେମାନଙ୍କର ମହତ୍ତ୍ୱକୁ ଏହି ସଂସାରରେ ଲୋକଶିକ୍ଷା ପାଇଁ ପ୍ରକଟ କରିଥାନ୍ତି । ଭୀଷ୍ମଙ୍କ ପରି ଭକ୍ତକୁ ଭଗବାନ୍ ମାସ ମାସ ଧରି ଶର ଶଯ୍ୟାରେ ଶୁଆଇଥିଲେ । ପାଦରେ କଣ୍ଟାଟିଏ ପଶିଲେ ଲୋକ ଦୁଃଖରେ ବ୍ୟାକୁଳ ହୋଇପଡ଼େ । କିନ୍ତୁ ଭୀଷ୍ମଙ୍କର ପ୍ରତ୍ୟେକ ଲୋମକୂପରେ ଶରର ତୀକ୍ଷ୍ଣ ମୁନ ପଶିଥିଲା । ସେ କେତେ କଷ୍ଟ ପାଇ ନ ଥିବେ ? ତଥାପି ଭଗବାନ ପାଣ୍ଡବମାନଙ୍କୁ ଭୀଷ୍ମଙ୍କ ପାଖକୁ ନେଇଯାଇ କହିଲେ—ମହାଶୟ ! ଯୁଧିଷ୍ଠିରଙ୍କ ପ୍ରଶ୍ନଗୁଡ଼ିକର ଉତ୍ତର ଦିଅନ୍ତୁ ।

ପିତାମହ ଭୀଷ୍ମ ପଚାରିଲେ—ହେ ପ୍ରଭୋ ! ଆପଣ ସର୍ବଜ୍ଞ ! ସର୍ବବିତ୍ ! ସର୍ବସମର୍ଥ ଓ ସର୍ବେଶ୍ୱର । ଧର୍ମରାଜ ଯୁଧିଷ୍ଠିରଙ୍କୁ ଆପଣ କାହିଁକି ଉପଦେଶ ଦେଉନାହାନ୍ତି ?

ଭଗବାନ୍ କହିଲେ—ଉପଦେଶ ଦେବାକୁ ମୋର କିଛି ଆପତ୍ତି ନାହିଁ ଏବଂ ପରିଶ୍ରମ ମଧ୍ୟ କରିବାକୁ ପଡ଼ିବ ନାହିଁ । ସମସ୍ତ ବେଦ ହେଉଛି ମୋର ନିଶ୍ୱାସ । କିନ୍ତୁ ସଂସାରରେ ତୁମର ମହତ୍ତ୍ୱ ବଢ଼ାଇବା ପାଇଁ ମୋର ଏହି ଅନୁରୋଧ । ଜଗତରେ ତୁମର ଖ୍ୟାତି ବୃଦ୍ଧି ହେବ ଓ ତ୍ରିଲୋକରେ ତୁମର କୀର୍ତ୍ତି ବିସ୍ତାର ହେବ, ଏହା ହିଁ ମୋର ଇଚ୍ଛା । ଏହିପରି କହି ସେ ଭୀଷ୍ମ ପିତାମହଙ୍କ ଦ୍ୱାରା ଉପଦେଶ ପ୍ରଦାନ କରାଇଲେ । ସେହି ଉପଦେଶ ଓ ଜ୍ଞାନ ମହାଭାରତର ଶାନ୍ତିପର୍ବ ନାମରେ ଅଭିହିତ । ଏହା ସର୍ବୋତ୍କୃଷ୍ଟ ଜ୍ଞାନର ଆଧାର । ଉଦ୍ଧବଙ୍କୁ ଉପଦେଶ ଦେଲାବେଳେ ସ୍ୱୟଂ ଭଗବାନ ତାହାର ଉଦାହରଣ ଦେଇ ସ୍ପଷ୍ଟ ଭାବରେ କହିଛନ୍ତି—ଏ ଜ୍ଞାନ ମୁଁ ଦେବବ୍ରତ ଭୀଷ୍ମଙ୍କଠାରୁ ପାଇଛି । ତେଣୁ ଭଗବାନ ଭକ୍ତଙ୍କୁ ସେମାନଙ୍କର ହିତ ପାଇଁ କଷ୍ଟ ଦେଇଥାନ୍ତି । ଯାହାକୁ ସେ ନିଜର କରି ନିଅନ୍ତି ପ୍ରଥମେ ତା'ର ସର୍ବସ୍ୱ ହରଣ କରନ୍ତି । ତା'ପରେ ତାକୁ ଯୋଗ୍ୟ ଅଧିକାରୀ କରି ନିଜର ସର୍ବସ୍ୱ ତାକୁ ଦେଇଦିଅନ୍ତି । ଭଗବାନ ଭକ୍ତର ଅଧୀନ ହୋଇଯାଆନ୍ତି ଏବଂ ନିଜକୁ ତା'ପାଖରେ ବିକି ଦିଅନ୍ତି ।

ଶୌନକ ପଚାରିଲେ—ମହାଭାଗ ! ଏଥର ଆପଣ ରନ୍ତିଦେବଙ୍କର ଅବଶିଷ୍ଟ କାହାଣୀ ପୂର୍ଣ୍ଣ କରନ୍ତୁ ।

ମହର୍ଷି ସୂତ କହିଲେ—ହଁ ମହାଶୟ ! ଶୁଣନ୍ତୁ । ସେଥିପାଇଁ ତ ମୁଁ ଭୂମିକା ପ୍ରସ୍ତୁତ କରୁଥିଲି । ମହାରାଜ ରନ୍ତିଦେବଙ୍କ ବଡ଼ଭାଇ ମାସିକ ଚଳିବା ପାଇଁ ଯେଉଁ ଭତ୍ତା ଦିଆଯାଉଛି ସେଥିରେ କାମ ଚଳାଇନେବା ପାଇଁ ତାଙ୍କୁ ବାରମ୍ବାର ଉପଦେଶ ଦେଉଥିଲେ । ଯଦି ସେତକ ନିଅଣ୍ଟ ହେଉଛି ତେବେ କହିଲେ ତା'ର ପରିମାଣ ବଢ଼ାଇବା ପାଇଁ ମଧ୍ୟ କହିଲେ । ସେ ପୁଣି ରନ୍ତିଦେବଙ୍କୁ କହିଲେ—ତୁମକୁ ଯାହା ଦିଆ-ଯାଉଛି ତାହା ତୁମେ ସଙ୍ଗେ ସଙ୍ଗେ ବ୍ୟୟ କରିଦେଉଛ । ଯେ ଯାହା ମାଗୁଛି ତାହା ତାକୁ ଦେଇଦେଉଛ । ଏହା ଫଳରେ ପରେ ତୁମର ପରିବାର ନାନା ଦୁଃଖକଷ୍ଟ ଭୋଗ କରୁଛନ୍ତି । ସେମାନଙ୍କୁ କଷ୍ଟଦେବା ଉଚିତ ନୁହେଁ ।

ମହାରାଜ ରନ୍ତିଦେବ କହିଲେ—ସମସ୍ତଙ୍କର ନିଜ ନିଜର ପ୍ରାରବ୍ଧ ଅଛି । ଯାହାର ଯାହା ଭାଗ୍ୟରେ ଥିବ ତାହା ତାକୁ ମିଳିବ । ମୋତେ ଯେତିକ ମିଳିବା କଥା ତାହା ମୁଁ ପାଉଛି ଏବଂ ଅନ୍ୟମାନଙ୍କ ମଧ୍ୟରୁ ଯାହା ଭାଗ୍ୟରେ ଯେତିକ ଅଛି ସେ ସେତିକ ନେଉଛନ୍ତି । ଦେବା ନେବାର ଅଧିକାର ମୋର ନାହିଁ । ଏହାଶୁଣି ତାଙ୍କ ବଡ଼ଭାଇ ଗୁରୁ ନୀରବ ହୋଇ-ଗଲେ । କିନ୍ତୁ ସେ ଯେତେ ଦେଲେ ମଧ୍ୟ ରନ୍ତିଦେବ ସବୁକିଛି ଖର୍ଚ୍ଚ କରିଦେଉଥିଲେ ।

ଥରେ ତାଙ୍କୁ ମାସକ ପାଇଁ ଯାହା ମିଳିଥିଲା ସେ ସେତିକ ଜଣେ ମାଗିବାରୁ ଦେଇ ଦେଲେ । ପରବର୍ତ୍ତୀ ମାସରେ ଜ୍ଞାତ ସାରରେ ହେଉ ବା ଅଜ୍ଞାତସାରରେ ହେଉ ବଡ଼ଭାଇ ଗୁରୁ ତାଙ୍କୁ କିଛି ଦେଲେ ନାହିଁ । ସେଥିପାଇଁ ଅନ୍ନ ଓ ଜଳ ବିନା ସେ ଅଠଚାଳିଶ ଦିନ ଉପବାସରେ ରହିଥିଲେ । କିନ୍ତୁ ଏହି ଦୁଃଖ ଯୋଗୁ ସେ ଟିକିଏ ହେଲେ ବିଚଳିତ ହେଲେ ନାହିଁ । ଏହାକୁ ସେ ଭଗବାନଙ୍କର ଅନୁଗ୍ରହ ବୋଲି ଭାବିଲେ ।

ଅଠଚାଳିଶ ଦିନ ପରେ ଅଣଚାଶତମ ଦିନ କେହି ଜଣେ ଅତି ସୁସ୍ୱାଦୁ ଓ ସୁବାସିତ କ୍ଷୀର ଆଣି ତାଙ୍କୁ ଦେଲା । କ୍ଷୀର ସହିତ ଅନ୍ୟାନ୍ୟ ରୁଚିକର ଅନ୍ନ ମଧ୍ୟ ଥିଲା । ତାଳରେ ପାଣି ଆଣି ଦେଲା । ଭଗବାନ୍ ବଡ଼ ଅନୁଗ୍ରହ କଲେ ବୋଲି ରାଜା ଭାବିଲେ । ଧୈର୍ଯ୍ୟର ସହିତ ସେ ସବୁ ଭଗବାନଙ୍କୁ ଅର୍ପଣ କରିବା ପରେ ରନ୍ତିଦେବ ନିଜ ପରିବାର ବର୍ଗଙ୍କୁ ସବୁ ଖାଦ୍ୟଦ୍ରବ୍ୟ ବାଣ୍ଟିଦେଲେ । ନିଜ ଭାଗରେ ପଡ଼ିଥିବା ଅନ୍ନକୁ ଆଚମନ କରି ଖାଇବାକୁ ଉଦ୍ୟମ ହେବାବେଳକୁ ଜଣେ ବ୍ରାହ୍ମଣ ଅତିଥି ତାଙ୍କ ଦ୍ୱାର ପାଖରେ ଆସି ଠିଆହେଲେ । ଅତିଥିକୁ ନ ଖୁଆଇ ଧର୍ମପ୍ରାଣ ରାଜା ପ୍ରସାଦ କପରି ଖାଇଥାଆନ୍ତେ ? ତେଣୁ ସେ ବ୍ରାହ୍ମଣଙ୍କୁ ପ୍ରସାଦ ଖାଇବା ପାଇଁ ନିମନ୍ତ୍ରଣ କଲେ । ବ୍ରାହ୍ମଣ ତ ସେଇଥିପାଇଁ ଆସିଥିଲେ । ହାତ ଗୋଡ଼ ଧୋଇ ସେ ଆସି ଖାଇବାକୁ ବସିଲେ । ସେତେବେଳେ ରାଜା ସର୍ବାନ୍ତର୍ଯାମୀ ପ୍ରଭୁଙ୍କୁ ତାଙ୍କଠାରେ ମଧ୍ୟରେ ଦେଖୁଥିଲେ । ଅତ୍ୟନ୍ତ ଆଦର ସହକାରେ ସେ ବ୍ରାହ୍ମଣଙ୍କୁ

ଖୁଆଇଲେ । ଖାଇ ସାର ବ୍ରାହ୍ମଣ ରାଜାଙ୍କୁ ଆଶୀର୍ବାଦ କରି ଚାଲିଗଲେ । ସେଥିପାଇଁ କହନ୍ତି—ଅତିଥି ଅବା କାହାର, ଖାଇ ପିଇ ହେଲେ ବାହାର ।

ବ୍ରାହ୍ମଣ ଚାଲିଯିବା ପରେ ଅବଶିଷ୍ଟ ଅନ୍ନ ରାଜା ଯେତେବେଳେ ଖାଇବାକୁ ଯାଉଛନ୍ତି, ଠିକ୍ ସେତିକବେଳେ ଜଣେ ଶୂଦ୍ର ଆସି ପହଞ୍ଚି ଗଲା ଓ ରାଜାଙ୍କୁ କହିଲା—ରାଜନ୍ ! ମୁଁ ବଡ଼ କ୍ଷୁଧାର୍ତ୍ତ । ମୋତେ କିଛି ଖାଇବାକୁ ଦେଇ ଆପଣ ମୋର ପ୍ରାଣ ରକ୍ଷା କରନ୍ତୁ ।

ରାଜା ତ' ସବୁଠାରେ ଭଗବାନଙ୍କୁ ଦେଖୁଥିଲେ । ତେଣୁ ସେ ବଡ଼ ଆଦରରେ ସେହି ଶୂଦ୍ରକୁ ପେଟପୂରା ଖୁଆଇଲେ । ପିଇବାକୁ ପାଣି ଦେଲେ । ଶୂଦ୍ର ଜଣକ ଖାଇପିଇ ରାଜାଙ୍କୁ ପ୍ରଶଂସା କରି ଚାଲିଗଲା ।

ଏହାପରେ ବଳକା ଥିବା ଅନ୍ନକୁ ରାଜା ଯେତେବେଳେ ଖାଇବାକୁ ଯାଉଛନ୍ତି ସେତେବେଳେ ହଠାତ୍ ଜଣେ ଅବଧୂତ ଗୁଡ଼ିଏ କୁକୁରଙ୍କ ସହିତ ସେଠାରେ ପହଞ୍ଚି ଅତି କାକୁତି ମିନତି କରି କହିଲା—ରାଜନ୍ ! ମୁଁ ବଡ଼ ଭୋକିଲା । ମୋର କୁକୁରମାନଙ୍କୁ ଓ ମୋତେ କିଛି ଖାଇବାକୁ ଦିଅନ୍ତୁ । ରାଜା ତ ତତ୍ତ୍ୱଜ୍ଞାନୀ ଥିଲେ । ସେ ନିଜର ପ୍ରଭୁ ଶ୍ରୀହରିଙ୍କୁ କୁକୁର, ବିଦ୍ୱାନ୍, ବ୍ରାହ୍ମଣ, ଚଣ୍ଡାଳ ସବୁଠାରେ ବିଦ୍ୟମାନ ଥିବାର ଅନୁଭବ କରୁଥିଲେ । ତେଣୁ ସେ ଅବଧୂତ ଓ ତାଙ୍କର କୁକୁରମାନଙ୍କୁ ଯଥାରୀତି ଅଭିବାଦନ ଜଣାଇଲେ । ସମସ୍ତଙ୍କୁ ଶ୍ରୀହରି ଜ୍ଞାନ କରି ଖୁଆଇଲେ, ପାଣି ପିଆଇଲେ ଓ ଯଥାବିଧି ଆଦର ଦେଖାଇ ବିଦାୟ ଦେଲେ ।

ଶେଷରେ ରାଜାଙ୍କ ପାଖରେ ଅନ୍ନ ବ୍ୟତୀତ କେବଳ କିଛି ଜଳ ବାକି ଥିଲା । ସେତିକ ପୁଣି ଜଣଙ୍କର କେବଳ ତୃଷା ମେଣ୍ଟାଇବା ପାଇଁ ଯଥେଷ୍ଟ ନ ଥିଲା । ରାଜା ସେତିକ ପିଇବାକୁ ଉଦ୍ୟତ ହେବା ସମୟରେ ଜଣେ ଅତ୍ୟନ୍ତ ତୃଷାର୍ତ୍ତ ଚଣ୍ଡାଳ ଦୌଡ଼ି ଆସି କାତର ସ୍ୱରରେ କହିଲା—ରାଜନ୍ ! ମୁଁ ଅତ୍ୟନ୍ତ ତୃଷାର୍ତ୍ତ । ଯଦି ସଙ୍ଗେ ସଙ୍ଗେ ପାଣି ଟିକିଏ ନ ପାଇବି, ତେବେ ଛଟପଟ ହୋଇ ମରିଯିବି । ମୋତେ ପାଣି ମୁନ୍ଦେ ଦିଅନ୍ତୁ ।

ଏହା ଶୁଣିବା ମାତ୍ରେ ରାଜା ପିଇବାକୁ ଯାଉଥିବା ପାଣି ସେହି ଚଣ୍ଡାଳକୁ ଦେଇଦେଲେ । ଅଣଚାଳିଶ ଦିନ ହେଲା ସେ ପାଣି ପିଇ ନ ଥିଲେ ମଧ୍ୟ ଚଣ୍ଡାଳର ନିବେଦନ ଶୁଣି ସେ ନିଜର ତଥା ନିଜ ପରିବାରର ଦୁଃଖ ଭୁଲିଗଲେ । ସେ ନିଜକୁ ନିଜେ କହିଲେ—ମୁଁ ଭଗବାନଙ୍କଠାରୁ ଅଷ୍ଟ ଐଶ୍ୱର୍ଯ୍ୟଯୁକ୍ତ ପରମ ଗତି ଚାହୁଁ ନାହିଁ କି ମୋକ୍ଷ ପାଇବା ପାଇଁ ମୋର ଇଚ୍ଛା ନାହିଁ । ସବୁ ଦେହଧାରୀଙ୍କ ଅନ୍ତଃକରଣରେ ରହି ମୁଁ ସେମାନଙ୍କର ଦୁଃଖ ସହନ କରିବା ପାଇଁ ଇଚ୍ଛା କରୁଛି । ସଂସାରରେ ଯେତେ ପ୍ରାଣୀ ଅଛନ୍ତି ସମସ୍ତଙ୍କର ଦୁଃଖ ମୋତେ ମିଳୁ । ସମସ୍ତଙ୍କର ଦୁଃଖ ଦୂର ହେଉ । ଏହି ଚଣ୍ଡାଳ ବଞ୍ଚିବା ପାଇଁ ଚାହୁଁଛି, ଜୀବନ ଚାହୁଁଛି । ଏହାର ଜୀବନ ଏହି ଜଳର ଅଧୀନ । ଏହାକୁ

ଜଳ ରୂପକ ଜୀବନ ଦେଇ ମୋର ସମସ୍ତ କ୍ଷୁଧା, ପିପାସା, ଶ୍ରମ, ଶରୀର ଶିଥିଳତା, ଦୀନତା, କ୍ଲାନ୍ତି, ଗ୍ଲାନି, ଶୋକ, ବିଷାଦ, ମୋହ ସବୁ ବୃତ୍ତି ନିବୃତ୍ତ ହୋଇଗଲା ।

ମହର୍ଷି ସୂତ କହିଲେ—ମୁନିଗଣ ! ମନେ ମନେ ଏହିପରି ମହାରାଜ ରନ୍ତିଦେବ ହସି ହସି ମେତକ ଜଳ ମଧ୍ୟ ଚଣ୍ଡାଳକୁ ଦେଇଦେଲେ । ଚଣ୍ଡାଳଟି ଜଳତକ ପିଇଦେଲା-ବେଳକୁ ଆକାଶରୁ ପୁଷ୍ପ ବୃଷ୍ଟି ହେବାକୁ ଲାଗିଲା । ସମସ୍ତେ ମହାରାଜ ରନ୍ତିଦେବଙ୍କର ଜୟ ଧ୍ୱନି କରିବାକୁ ଲାଗିଲେ । ସଙ୍ଗେ ସଙ୍ଗେ ସେହି ଚଣ୍ଡାଳ ଦେବତାରୂପ ଗ୍ରହଣ କରି ରାଜାଙ୍କ ଆଗରେ ଠିଆ ହୋଇଗଲା ଓ କହିଲା—ମହାରାଜ ! ମୁଁ ହେଉଛି ସାକ୍ଷାତ୍ ଧର୍ମ । ଏତେବଡ଼ ସଙ୍କଟରେ ମଧ୍ୟ ଆପଣ ସ୍ୱଧର୍ମ ପାଳନରେ ଅଟଳ ରହିଛନ୍ତି । ସେଥିପାଇଁ ମୁଁ ଆପଣଙ୍କ ଉପରେ ପ୍ରସନ୍ନ ହୋଇଛି । ଆପଣ ଯେଉଁ ବର ମାଗିବେ ମୁଁ ତାହା ଦେବା ପାଇଁ ପ୍ରସ୍ତୁତ ଅଛି ।

ରାଜା ହାତ ଯୋଡ଼ି କହିଲେ—ହେ ଧର୍ମଦେବ ! ମୋର ଆଜି ସୌଭାଗ୍ୟ ଉଦୟ ହୋଇଥିବାରୁ ମୁଁ ଆପଣଙ୍କ ଦର୍ଶନ ଲାଭ କଲି । ଧର୍ମରେ ମୋର ବୁଦ୍ଧି ସର୍ବଦା ଅବିଚଳିତ ରହୁ, ମୁଁ ଧର୍ମପଥରୁ କେବେହେଲେ ଚ୍ୟୁତ ନ ହୁଏ—ଏହି ବର ମୋତେ ଦିଅନ୍ତୁ । ମୁଁ ଏହାଠୁ ଅଧିକ କିଛି ମାଗୁ ନାହିଁ ।

ରାଜା ଏହିପରି କହୁଥିବା ସମୟରେ ଗରୁଡ଼ ପୃଷ୍ଠରେ ଆରୋହଣ କରି ଚତୁର୍ଭୁଜ ଶ୍ରୀହରି ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ କହିଲେ—ରାଜନ୍ ! ମୁଁ ବ୍ରାହ୍ମଣ ବେଶରେ ଆପଣଙ୍କ ପାଖକୁ ଆସିଥିଲି । ନିଜେ କ୍ଷୁଧାର୍ତ୍ତ ହୋଇ ମଧ୍ୟ ଆପଣ ମୋତେ ଶ୍ରଦ୍ଧାର ସହିତ ଖାଇବାକୁ ଦେଲେ । ଭୋକରେ ଆତୁର ହେଉଥିଲେ ମଧ୍ୟ ଆପଣ ମୋ'ପ୍ରତି ଅଶ୍ରଦ୍ଧା ବା ଉପେକ୍ଷା ଭାବ ଦେଖାଇ ନାହାନ୍ତି କି ଧୈର୍ଯ୍ୟ ହରାଇ ନାହାଁନ୍ତି । ଏହାହିଁ ଆପଣଙ୍କର ମହତ୍ତ୍ୱ । ଆପଣଙ୍କ ଉପରେ ମୁଁ ପ୍ରସନ୍ନ ହୋଇଛି । ଆପଣ ଯାହା ଇଚ୍ଛା କରୁଛନ୍ତି ତାହା ମୋ'ଠାରୁ ମାଗିନିଅନ୍ତୁ । ଆପଣ ନିଜର ପୁଣ୍ୟ ବଳରେ ସମସ୍ତ ପୁଣ୍ୟଲୋକକୁ ଜୟ କରିଛନ୍ତି । ଆପଣ ଯେଉଁ ଲୋକକୁ ଯିବା ପାଇଁ ଇଚ୍ଛୁକ ସେହି ଲୋକକୁ ଯାଇପାରିବେ ।

ପୁଣ୍ୟ ପ୍ରଭାବରୁ ପ୍ରାପ୍ତ ଏହି ସବୁ ଲୋକର ପରିଣାମ ରାଜା ଜାଣିଥିଲେ । ସେଠାକୁ ଗଲେ ଅନ୍ୟ ଦୋଷ ଛଡ଼ା ପୁଣ୍ୟ କ୍ଷୟ ହେବା ପରେ ପତନର ଭୟ କଥା ମଧ୍ୟ ତାଙ୍କୁ ଜଣାଥିଲା । ତେଣୁ ସେ ପୁଣ୍ୟମୟ କୌଣସି ଲୋକକୁ ଯିବା ପାଇଁ ରାଜି ହେଲେ ନାହିଁ । ସେ କେବଳ ଏତିକି କହିଲେ—ମୋତେ ଆପଣଙ୍କ ଚରଣ କମଳରେ ଭକ୍ତିମିଳୁ ।

ତା' ପରେ ପରେ ହଂସବାହନରେ ବସି କମଣ୍ଡଳକୁ ଧରି ବେଦଗର୍ଭ ଚତୁର୍ମୁଖ ଭଗବାନ ବ୍ରହ୍ମା ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ କହିଲେ—ରାଜନ୍ ! ଶୂଦ୍ର ରୂପରେ ମୁଁ ହିଁ ଆପଣଙ୍କ ପାଖକୁ ଆସିଥିଲି । ଆପଣ ବ୍ରାହ୍ମଣ ଅତିଥିଙ୍କୁ ସମ୍ମାନ ଦେଖାଇଲା ପରି ମୋର ଶୂଦ୍ର ରୂପକୁ ମଧ୍ୟ ସମ୍ମାନ ଦେଖାଇଥିଲେ । ଆପଣଙ୍କର ବୁଦ୍ଧି ସମତ୍ୱରେ ସ୍ଥିର ହୋଇ ରହିଛି । ଆପଣ ମୋ ଲୋକକୁ ଚାଲନ୍ତୁ ।

ରାଜା କହିଲେ – ହେ ଭଗବନ୍ ! ମୋର ସ୍ୱର୍ଗ ସୁଖ ଦରକାର ନାହିଁ । ମୁଁ ପୃଥିବୀରେ ହିଁ ଭଗବଦ୍‌ଭାବ ଦେଖିବାକୁ ଇଚ୍ଛା କରୁଛି । ମୋ' ମନରେ କୌଣସି ମାତ୍ର ଦ୍ୱିଧାଭାବ ନ ରହୁ । ମୁଁ ସର୍ବତ୍ର ଶ୍ରୀହରିଙ୍କୁ ହିଁ ଦେଖୁଥାଏ, ଏତକ ଆଶୀର୍ବାଦ ଦିଅନ୍ତୁ ।

ରାଜା ଏହିପରି କହୁଥିବା ସମୟରେ ବୃଷଭ ଉପରେ ବସି ତ୍ରିପୁଣ୍ଡ୍ର ଲଗାଇ ତ୍ରିଶୂଳ ଧରି ଦେବ ଦେବ ତ୍ରିପୁରାରି ସେଠାରେ ଉପସ୍ଥିତ ହେଲେ । ସେ ବ୍ୟାଘ୍ରଚର୍ମ ପିନ୍ଧିଥିଲେ । ତାଙ୍କ ହାତରେ ଡମ୍ବରୁ ଥିଲା । ମସ୍ତକରେ ଚନ୍ଦ୍ର ଶୋଭାପାଉଥିଲା ଓ ଜଟା-ଜୁଟରେ ଗଙ୍ଗା ଦେବୀ ବିରାଜିତା ଥିଲେ । ସେ ରୁଦ୍ରାକ୍ଷ ମାଳା ପିନ୍ଧିଥିଲେ ଓ ସାରା ଦେହରେ ଶ୍ମଶାନର ଚିତାଭସ୍ମ ବୋଳି ହୋଇଥିଲେ । କର୍ପୂର ପରି ନିଜର ଦ୍ୟୁତି ଓ ସୁଗନ୍ଧ ଚାରିଆଡ଼େ ଖେଳାଇ ଦେଉଥିଲେ । ଅସୁ ଅସୁ ସେ କହିଲେ—ରାଜନ୍ ! କୁକୁର-ମାନଙ୍କ ସହିତ ଅବଧୂତ ରୂପ ଧରି ମୁଁ ତୁମ ପାଖକୁ ଆସିଥିଲି । ତୁମେ ମୋ' ଭିତରେ ଓ କୁକୁରମାନଙ୍କ ମଧ୍ୟରେ କୌଣସି ଭେଦଭାବନା ପୋଷଣ କରି ନ ଥିଲ । ତୁମେ ନିଜେ ପ୍ରବଳ କ୍ଷୁଧା ଅନୁଭବ କରୁଥିଲେ ମଧ୍ୟ କୁକୁରମାନଙ୍କ ସହିତ ମୋତେ ତୃପ୍ତ କରିଥିଲ । ଏବେ ତୁମେ ଯାହା ଚାହୁଁଛ ତାହା ମୋ'ଠାରୁ ମାଗିନିଅ । ଆମେ ସମସ୍ତେ ତୁମର ଧୈର୍ଯ୍ୟ ପରୀକ୍ଷା କରିଛୁ । ସେଥିପାଇଁ ଭିନ୍ନ ଭିନ୍ନ ରୂପ ଧରି ତୁମ ପାଖକୁ ଆସିଥିଲୁ । କିନ୍ତୁ ତୁମେ ତୁମ ବ୍ରତରେ ଦୃଢ଼ ରହିଲ । ତେଣୁ ଯେଉଁ ବର ଇଚ୍ଛା ହେଉଛି ତାହା ମାଗିନିଅ ।

ଏହା ଶୁଣି ରାଜା ଭକ୍ତି ସହକାରେ ତିନି ଦେବତାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି ଗଦ୍‌ଗଦ ସ୍ୱରରେ କହିଲେ—ହେ ତ୍ରିଲୋକବନ୍ଦିତ ତ୍ରିଦେବ ! ମୋର ଅହୋଭାଗ୍ୟ । ମୁଁ ଆଜି ଆପଣମାନଙ୍କର ଦର୍ଶନ ପାଇଲି । ସଂସାରୀ ଲୋକମାନଙ୍କ ପକ୍ଷରେ ଆପଣମାନଙ୍କ ଦର୍ଶନ ଦୁର୍ଲଭ । ତେଣୁ ଆପଣମାନଙ୍କ ଦର୍ଶନ ପାଇ ସବୁ ମୁଁ ପାଇଛି । ଆପଣମାନଙ୍କ ସାକ୍ଷାତ ପାଇବାପରେ ଯଦି ମୁଁ ସଂସାରିକ ଭୋଗ ମାଗିବି ତାହାହେଲେ ତାହା କଳ୍ପବୃକ୍ଷ ମୂଳରେ ବସି ଚକ୍ଷୁ ମାଗିବା ପରି ହେବ । ନରକରେ ମଧ୍ୟ ବିଷୟ ଭୋଗ ମିଳିପାରେ । ଆପଣମାନଙ୍କୁ କ'ଣ ସେ ସବୁ ମାଗିବି ? ଆପଣମାନେ ଯଦି ପ୍ରସନ୍ନ ହୋଇଛନ୍ତି ତେବେ ଆନନ୍ଦକନ୍ଦ ବ୍ରଜଚନ୍ଦ୍ର ଶ୍ରୀନନ୍ଦନନ୍ଦନ ଭଗବାନ୍ ବାସୁଦେବଙ୍କ ଚରଣାରବିନ୍ଦରେ ମୋର ଯେପରି ଅଚଳା ଓ ଅହୈତୁକୀ ଭକ୍ତି ରହିବ ସେହି ଆଶୀର୍ବାଦ ଦିଅନ୍ତୁ । ବ୍ରହ୍ମଲୋକର ସୁଖଭୋଗ ପ୍ରତି ମୋର ସ୍ପୃହା ନାହିଁ । ମୋର ମନ ସର୍ବଦା ଶ୍ରୀହରିଙ୍କ ଚରଣାବିନ୍ଦରେ ଲାଗି ରହିଥାଉ ।

ମହାରାଜା ରନ୍ତିଦେବଙ୍କର ଏପରି ଅବିଚଳିତ ନିଷ୍ଠା ଦେଖି ଧର୍ମଙ୍କ ସହିତ ତିନି-ଦେବତା ପରମ ସନ୍ତୋଷ ଲାଭ କଲେ । ସେମାନେ ମହାରାଜାଙ୍କୁ ଅଚଳା ଭକ୍ତିର ଆଶୀର୍ବାଦ ଦେଲେ ଏବଂ ରାଜା ଦେଖୁ ଦେଖୁ ସେମାନେ ଅନ୍ତର୍ଦ୍ଧାନ ହୋଇଗଲେ ।

ମହର୍ଷି ସୂତ କହିଲେ—ମୁନିଗଣ ! ଅତ୍ୟନ୍ତ ପ୍ରଲୋଭନ ସତ୍ତ୍ୱେ ରାଜା ରନ୍ତିଦେବ ଈଶ୍ୱର ଭକ୍ତି ଛଡ଼ା ଅନ୍ୟ କିଛି ଇଚ୍ଛା କରି ନ ଥିଲେ । ତାଙ୍କର ଚିତ୍ତ ଅନନ୍ୟ ଭାବରେ

ଅଚ୍ୟୁତଙ୍କଠାରେ ହିଁ ଲାଗି ରହିଥିଲା । ସେ ସର୍ବଦା ସର୍ବତ୍ର ସମସ୍ତ ଜୀବ ମଧ୍ୟରେ ଶ୍ରୀହରିଙ୍କୁ ଦେଖୁଥିଲେ ଓ ଅନୁଭବ କରୁଥିଲେ । ତାଙ୍କର କୌଣସି ଭେଦଭାବ ନ ଥିଲା । ସେ ତ୍ରିଗୁଣାତୀତ ଓ ଜୀବନ୍ମୁକ୍ତ ହୋଇ ଯାଇଥିଲେ ।

ଶୌନକ ପଚାରିଲେ—ମହାଶୟ ! ତାଙ୍କର ପରିବାର ଓ ସାଙ୍ଗରେ ଥିବା ଅନ୍ୟ ଲୋକମାନଙ୍କର କ'ଣ ହେଲା ?

ମହର୍ଷି ସୂତ କହିଲେ—ମହାଭାଗ ! ଭ୍ରମର ସଂଗତରେ ଯେ ପଶେ ସେ ଭ୍ରମର ହୋଇଯାଏ । ଚନ୍ଦନ ବନରେ ଥିବା ଅନ୍ୟ ଜଙ୍ଗଲୀ ଗଛ ଚନ୍ଦନର ସୁବାସରେ ସୁବାସିତ ହୋଇଯାଆନ୍ତି । ସେହିପରି ମହାରାଜା ରନ୍ତିଦେବଙ୍କ ପାଖରେ ଯେତେ ଲୋକ ଥିଲେ । ସେମାନେ ସମସ୍ତେ ତାଙ୍କର ସାହଚର୍ଯ୍ୟ ପ୍ରଭାବରୁ ଯୋଗୀ ତଥା ନାରାୟଣ ପରାୟଣ ହୋଇଗଲେ । ଭଗବଦ୍ ଭକ୍ତିରେ ସମସ୍ତେ ବିଭୋର ହୋଇଗଲେ । ମୁଁ ଅତି ସଂକ୍ଷେପରେ ମନ୍ୟୁଙ୍କ ପ୍ରପୌତ୍ର ଭରତଙ୍କ ପୌତ୍ର ମହାରାଜ ରନ୍ତିଦେବଙ୍କ କଥା କହିଲି । ବର୍ତ୍ତମାନ ନରଙ୍କ ଛଡ଼ା ମହାରାଜା ମନ୍ୟୁଙ୍କ ବୃହତ୍‌କ୍ଷତ୍ର, ଜୟ, ମହାବୀର୍ଯ୍ୟ ଓ ଗର୍ଗ ଏହି ଚାରିପୁଅ ଥିଲେ । ସେହି ପୁଅମାନଙ୍କର ବଂଶ ବିସ୍ତାର କଥା ଆପଣମାନେ ମନଦେଇ ଶୁଣନ୍ତୁ ।

## ଛପ୍ପୟ

ରନ୍ତିଦେବ ଜେ ସାହସ ଜୌନ ନର ଜଗମହିଁ ଦାନୀ ।
ଅଡ଼ତାଳି ଦିହରୁ ନିଜ କ୍ଷୁଧା ପିପାସା କିନ୍ ନହିଁ ଜାନୀ ॥
ଭୟେ ଦିବସ ଚାଳିଶ ଆଠ ବିନୁ ପୀୟେ ଖାୟେ ।
ଉନଞ୍ଚାସବେଁ ଦିବସ ସ୍ୱାଦଯୁକ୍ତ ବ୍ୟଞ୍ଜନ ଆୟେ ॥
ଜେମନ ବୈଠେ କୁଟୁମ୍ବ ସଙ୍ଗ, ବିପ୍ର ବୃଷଳ ଚାଣ୍ଡାଲ ଶ୍ୱାନ ।
ଯାଞ୍ଚା ହରିହର ଅଜ କରି, ତୃପତି ଅନ୍ନ ଜଳ ଦୟୋ ପୁନ ॥



# ମହାରାଜ ବୃହତ୍କ୍ଷତ୍ରଙ୍କ ବଂଶବର୍ଣ୍ଣନା

ବୃହତ୍‌କ୍ଷତ୍ରସ୍ୟ ପୁତ୍ରୋଽଭୂଦ୍ଧସ୍ତୀ ଯଦ୍ଧସ୍ତିନାପୁରମ୍ ।
ଅଜମୀଢୋ ଦ୍ୱିମୀଢଶ୍ଚ ପୁରୁମୀଢଶ୍ଚ ହସ୍ତିନଃ ॥
(ଭାଗ—୯ସ୍କ, ୨୧ଅ, ୨୦-୨୧ଶ୍ଳୋ)

## ଛପ୍ପୟ

ହରଷେ ତୀନୌଁ ଦେବ ଦୈନ ଦୁରଲଭ ବର ଲଗେ ।
ହରି ଚରନନ ଅନୁରାଗ ତ୍ୟାଗୀ ଜନ ସୁଖ ନହି ମାଁଗେ ॥
ମାୟା ଭଈ ବିଲୀନ ପ୍ରେମ ପ୍ରଭୁ ହୃଦୟ ମହଁ ଛାୟୋ ।
ନୃପ ଅନୁଯାୟୀ ସକଲ ସହଜ ହୀ ପରପଦ ପାୟୋ ॥
ଜ୍ୟେଷ୍ଠ ଶ୍ରେଷ୍ଠ ସୁତ ମନ୍ୟୁ କେ, ବୃହତ୍‌କ୍ଷତ୍ର ଭୂପତି ଭୟେ ।
ରଚେୟା ହସ୍ତିନାପୁର ଜିନନ, ହସ୍ତୀ ଅମର ସୁତ ହ୍ୱୈ ଗୟେ ॥

ଯୋଗୀ ନିଜର ଯୋଗଶକ୍ତି ବଳରେ ବହୁରୂପ ଧାରଣ କରିପାରେ ଓ ବହୁରୂପରେ ବହୁ କାର୍ଯ୍ୟ କରିପାରେ । ସେ ନବୀନ ସୃଷ୍ଟି କରିପାରେ ଏବଂ ଜଡ଼କୁ ଚେତନ ମଧ୍ୟ କରିଦେଇ ପାରେ । କଥା ହେଲା ଯୋଗୀଙ୍କ ପକ୍ଷରେ କୌଣସି କାର୍ଯ୍ୟ କଠିନ ନୁହେଁ, କିଛି ଅସମ୍ଭବ ନୁହେଁ କି କୌଣସି କଥା ଅଜ୍ଞେୟ ନୁହେଁ । ସେ ସର୍ବ ସମର୍ଥ । ତାଙ୍କ ଚେଷ୍ଟା ଅଲୌକିକ । ତେଣୁ ଯୋଗୀମାନଙ୍କ କାର୍ଯ୍ୟରେ ଆଶ୍ଚର୍ଯ୍ୟ ପ୍ରକାଶ କରିବାର କୌଣସି କାରଣ ନାହିଁ ।

ମହର୍ଷି ସୂତ କହିଲେ—ମୁନିଗଣ ! ମୁଁ ଦୁଷ୍ମନ୍ତପୁତ୍ର ଭରତଙ୍କ ବଂଶ ବର୍ଣ୍ଣନା କରୁଥିଲି ଯାହାଙ୍କ ନାମକୁ ନେଇ ଏ ବଂଶ ଭରତ ବଂଶ ନାମରେ ବିଖ୍ୟାତ ହେଲା । ମୁଁ କହିଛି ମହାରାଜ ଭରତଙ୍କ ପୁତ୍ର ବିତଥ ଥିଲେ । ବିତଥଙ୍କ ପୁତ୍ର ମନ୍ୟୁ ହେଲେ । ମନ୍ୟୁଙ୍କର ପାଞ୍ଚପୁଅ ମଧ୍ୟରୁ ନରଙ୍କ ବଂଶର ମହାରାଜା ରନ୍ତିଦେବଙ୍କ ପର୍ଯ୍ୟନ୍ତ ଘଟଣା ବର୍ଣ୍ଣନା କରିଛି । ବର୍ତ୍ତମାନ ଅନ୍ୟ ଚାରିଜଣଙ୍କ ବଂଶକଥା କହୁଛି ଶୁଣନ୍ତୁ । ପ୍ରଥମେ ମୁଁ ଶେଷ ତିନିଜଣଙ୍କ ବଂଶ କଥା ସଂକ୍ଷେପରେ କହି ଶେଷରେ ରାଜର୍ଷି ବୃହତ୍କ୍ଷତ୍ରଙ୍କ ବଂଶର ବର୍ଣ୍ଣନା କରିବ ।

ମହାରାଜା ମନ୍ୟୁଙ୍କ ପଞ୍ଚମପୁତ୍ର ଗର୍ଗଙ୍କ ପୁଅ ହେଲେ ଶିନ । ତାଙ୍କଠାରୁ ଜନ୍ମହେଲେ ଗାର୍ଗ୍ୟ । ଗାର୍ଗ୍ୟ କ୍ଷତ୍ରିୟ ପୁତ୍ର ହୋଇଥିଲେ ବି ତାଙ୍କର ପିଲାମାନେ ବ୍ରାହ୍ମଣ ହୋଇଗଲେ । ପରେ ଏହା ବ୍ରହ୍ମକୁଳରେ ପରିଣତ ହେଲା ।

ବର୍ତ୍ତିମାନ ମନ୍ୟୁଙ୍କ ତୃତୀୟପୁତ୍ର ମହାବୀର୍ଯ୍ୟଙ୍କ ବଂଶ କଥା ଶୁଣନ୍ତୁ । ମହାବୀର୍ଯ୍ୟଙ୍କ ପୁତ୍ର ଦୁରିତକ୍ଷୟଙ୍କ ଔରସରେ ତ୍ରୟ୍ୟାରୁଣି, କବି ଓ ପୁଷ୍କରାରୁଣି ତିନି ପୁଅ ଜନ୍ମ ହେଲେ । ଏମାନେ ମଧ୍ୟ ବ୍ରାହ୍ମଣ ଗତିକୁ ପାଇଥିଲେ ଅର୍ଥାତ୍ ଏମାନଙ୍କ ବଂଶ ମଧ୍ୟ କର୍ମରେ ବ୍ରାହ୍ମଣତ୍ୱ ପାଇଲା । ଦ୍ୱିତୀୟ ପୁତ୍ର ଜୟର ବଂଶ ସମ୍ଭବତଃ ବୃଦ୍ଧି ହୋଇ ନ ଥିଲା ।

ମହାରାଜା ମନ୍ୟୁଙ୍କ ସବୁଠୁ ବଡ଼ ପୁଅ ବୃହତ୍‌କ୍ଷତ୍ରଙ୍କ ପୁଅ ହସ୍ତୀ ହେଲେ । ସେ ହସ୍ତିନାପୁର ବସାଇଥିଲେ ।

ଶୌନକ ପଚାରିଲେ—ମହାଶୟ ! ହସ୍ତିନାପୁର ତ ପ୍ରଥମରୁ ଥିଲା । ହସ୍ତୀ ତାକୁ ବସାଇଲେ କିପରି ?

ମହର୍ଷି ସୂତ କହିଲେ—ମହାରାଜ ! ପ୍ରଥମରୁ କଣ ନାହିଁ ? ସଂସାରରେ କେଉଁ ଜିନିଷ ନୂଆ ? ବେଳେ ବେଳେ କେବଳ ନାମ, ରୂପ, ପରିବର୍ତ୍ତିତ ହୋଇଯାଏ । ଭୂମି ତ ମୂଳରୁ ଅଛି । ମଧୁକୈଟଭଙ୍କ ମେଦରେ ତିଆରି ହୋଇଥିବା ହେତୁ ଏହା ନାମ ମେଦିନୀ ହୋଇଛି । ଏହି ଭୂମି କଶ୍ୟପଙ୍କ ଊରୁରେ ରହିଥିବାରୁ ଉର୍ବୀ, ମହାରାଜ ପୃଥୁଙ୍କ ଦ୍ୱାରା ଦୋହନ ହୋଇଥିବାରୁ ପୃଥ୍ୱୀ, ପୃଥିବୀ ଓ ବସୁ (ଧନ) ଥିବାରୁ ବସୁମତୀ ନାମରେ ବିଖ୍ୟାତ ହୋଇଛି । ନଗର ଓ ମାର୍ଗର ନାମ କରଣ ଏହିପରି ହୁଏ । ଆଜି ନଗରର ନାମ ଯାହା ଅଛି କାଳକ୍ରମେ କେହିଜଣେ ପ୍ରଭାବଶାଳୀ ବ୍ୟକ୍ତି ଆସିଲେ ତା' ନାମରେ ସେ ନଗର ପୁଣି ନୂଆ ନାମରେ ନାମିତ ହୋଇଯାଏ । ଏ ସଂସାର ଚକ୍ର ଏହିପରି ଚାଲିଥାଏ । ଏ ନଗର ଆଗରୁ ଥିଲା । ହସ୍ତୀ ଆସିବା ପରେ ଏହା ହସ୍ତିନାପୁର ନାମରେ ବିଖ୍ୟାତ ହେଲା ।

ହଁ, ହସ୍ତୀଙ୍କର ତିନିପୁତ୍ର ଥିଲେ । ସେମାନେ ହେଲେ ଅଜମୀଢ଼, ଦ୍ୱିମୀଢ଼ ଓ ପୁରୁମୀଢ଼ । ଅଜମୀଢ଼ ବଂଶରେ ପ୍ରିୟମେଧାଦି ବ୍ରାହ୍ମଣ ହୋଇଗଲେ । ମହାରାଜ ଅଜମୀଢ଼ଙ୍କ ଦ୍ୱିତୀୟପୁତ୍ର ବୃହଦିଷୁ ହେଲେ । ତାଙ୍କପୁଅ ହେଲେ ବୃହଦ୍ଧନୁ । ତାଙ୍କ ପୁଅର ନାମ ହେଲା ବୃହତ୍କାୟ । ତାଙ୍କଠାରୁ ଜୟଦ୍ରଥ, ତାଙ୍କ ପୁଅ ବିଶଦ, ତାଙ୍କ ପୁଅ ସେନଜିତ ନାମକ ଯଶସ୍ୱୀ ପୁତ୍ର ହେଲେ । ସେନଜିତଙ୍କର ରୁଚିରାଶ୍ୱ, ଦୃଢ଼ହନୁ, କାମ୍ୟ ଓ ବତ୍ସ ନାମରେ ଚାରିପୁଅ ଜନ୍ମଗ୍ରହଣ କରିଥିଲେ ।

ରୁଚିରାଶ୍ୱଙ୍କ ପୁଅ ପାରଙ୍କର ପୃଥୁସେନ ଓ ନୀପ ନାମରେ ଦୁଇ ପୁଅ ଜନ୍ମ ହେଲେ । ନୀପଙ୍କର ଶହେ ପୁଅ ହୋଇଥିଲେ । ନୀପ ଶୁକଦେବଙ୍କ କନ୍ୟା କୃତ୍ୱୀଙ୍କୁ ବିବାହ କରିଥିଲେ । ତାଙ୍କଠାରୁ ପ୍ରସିଦ୍ଧ ଯୋଗୀଶ୍ୱର ବ୍ରହ୍ମଦତ୍ତ ଜନ୍ମ ଗ୍ରହଣ କରିଥିଲେ ।

ଏହା ଶୁଣି ଶୌନକ ପଚାରିଲେ—ମହାଶୟ ! ବ୍ୟାସଦେବଙ୍କ ପୁତ୍ର ଭଗବାନ୍ ଶୁକଦେବ ଜନ୍ମରୁ ତ ପରମହଂସ ଥିଲେ । ସେ ବିବାହ କେବେ କଲେ । ତାଙ୍କର ତ ଯଜ୍ଞୋପବୀତ ସଂସ୍କାର ବି ହୋଇ ନ ଥିଲା । ପୁଣି ତାଙ୍କର ସ୍ତ୍ରୀ ହେଲା କେବେ ?

ଏହା ଶୁଣି ମହର୍ଷି ସୂତ ହସି ହସି କହିଲେ—ମହାଭାଗ ! ଯୋଗୀମାନଙ୍କ ପାଇଁ କୌଣସି କଥା ଅସମ୍ଭବ ନୁହେଁ କି ଆଶ୍ଚର୍ଯ୍ୟକର ନୁହେଁ, ଏହା ମୁଁ ଆଗରୁ କହୁଛି । ସମସ୍ତେ ତ ଯୋଗୀଙ୍କର ସନ୍ତାନ । ସେମାନେ ହେଉଛନ୍ତି ଜଗତ୍ପିତା । ଏହା ସତ୍ୟ ଯେ ମୋର ଗୁରୁଦେବ ବିବାହ କରି ନ ଥିଲେ । କିନ୍ତୁ ମୋର ଗୁରୁ ଠିକ୍ ନିଜପରି ଏକ ଛାୟା ଶୁକ ସୃଷ୍ଟି କରିଥିଲେ । ସେହି ଛାୟାଶୁକ ବିବାହ କରିଥିଲେ । ପୁରାଣରେ ଯେଉଁ ଶୁକଦେବଙ୍କ ବଂଶର ବର୍ଣ୍ଣନା ମିଳେ ତାହା ଏହି ଛାୟାଶୁକଙ୍କ ବଂଶର କାହାଣୀ ।

ଶୌନକ ପୁଣି ପଚାରିଲେ—ମହାଶୟ ! ପରମହଂସ ଶୁକଦେବ କେବେ ଓ କାହିଁକି ଛାୟାଶୁକ ନିର୍ମାଣ କରିଥିଲେ ?

ମହର୍ଷି ସୂତ କହିଲେ—ମହାଭାଗ ! ଶୁକଦେବ ଯେତେବେଳେ ବିରକ୍ତହୋଇ ପିତାମାତାଙ୍କୁ ତ୍ୟାଗକରି ବଣକୁ ଯିବାକୁ ବାହାରିଲେ ସେତେବେଳେ ତାଙ୍କ ପଛରେ ପୁତ୍ର ବିୟୋଗ ବିଧୂର ବ୍ୟାସ 'ହା ପୁତ୍ର ! ହା ପୁତ୍ର !' କହି ଦୌଡ଼ିବାକୁ ଲାଗିଲେ । ଶ୍ରୀଶୁକ ସବୁ ପ୍ରାଣୀଙ୍କ ଦେହରେ ବ୍ୟାପ୍ତ ହୋଇ 'ଭୋ' ଶବ୍ଦ ଉଚ୍ଚାରଣ କଲେ । ତଥାପି ବ୍ୟାସ ବିରହରେ ବ୍ୟାକୁଳ ହୋଇ ପଡ଼ିଲେ । ସେତେବେଳେ ସର୍ବସମର୍ଥ ମହାଯୋଗୀଶ୍ୱର ମୋର ଗୁରୁଦେବ ନିଜ ପରି ଏକ ଛାୟାଶୁକର ରଚନା କଲେ ଓ ତାକୁ ଛାଡ଼ିଦେଇ ନିଜେ ଆଗକୁ ଆଗକୁ ଚାଲିଗଲେ । ବ୍ୟାସ ପୁତ୍ରଶୋକରେ ମୂହ୍ୟମାନ ହୋଇପଡ଼ିଥିଲେ । ହେଉଣୁ ଛାୟା-ଶୁକଙ୍କୁ ଦେଖି ସେ ପରମ ଆନନ୍ଦ ଅନୁଭବ କଲେ । ବ୍ୟାସଦେବ ଛାୟା ଶୁକଙ୍କୁ ସାଙ୍ଗରେ ନେଇ ଘରକୁ ଫେରି ଆସିଲେ ଓ ବିଧିବତ୍ ତାଙ୍କର ବିବାହ କରାଇଲେ । ତାଙ୍କଠାରୁ କୃତ୍ୱୀ ନାମ୍ନୀ କନ୍ୟା ଜନ୍ମ ହୋଇଥିଲା । ସେହି କନ୍ୟା ଣୀପଙ୍କର ପତ୍ନୀ ହୋଇ ଯୋଗେଶ୍ୱର ବ୍ରହ୍ମଦତ୍ତଙ୍କୁ ଜନ୍ମ ଦେଇଥିଲେ । ଏହି ବ୍ରହ୍ମଦତ୍ତ ଆତ୍ମବିଦ୍ୟା ବିଶାରଦ ଥିଲେ । ତାଙ୍କ ସ୍ତ୍ରୀଙ୍କ ନାମ ସରସ୍ୱତୀ ଥିଲା । ସରସ୍ୱତୀଙ୍କ ଗର୍ଭରୁ ବିଶ୍ୱକ୍‌ସେନ ଜନ୍ମଗ୍ରହଣ କରିଥିଲେ । ସେ ଥିଲେ ମହାଯୋଗୀ । ସେ ମହର୍ଷି ଜୈଗୀଷବ୍ୟଙ୍କଠାରୁ ଉପଦେଶ ପାଇ ଯୋଗଶାସ୍ତ୍ର ରଚନା କରିଥିଲେ । ଯୋଗାଚାର୍ଯ୍ୟମାନଙ୍କ ମଧ୍ୟରେ ବିଶ୍ୱକ୍‌ସେନଙ୍କ ନାମ ମଧ୍ୟ ଗଣନା କରାଯାଏ ।

ବିଶ୍ୱକ୍‌ସେନଙ୍କ ପୁତ୍ର ଉଦକସ୍ୱନଙ୍କଠାରୁ ଭଲ୍ଲାଦ ନାମକ ପୁତ୍ର ଜନ୍ମ ହେଲେ । ଏହିପରିଭାବେ ମୁଁ ହସ୍ତୀଙ୍କପୁତ୍ର ଅଜମୀଢ଼ଙ୍କ ବଂଶର ସଂକ୍ଷେପ ବର୍ଣ୍ଣନା କଲି । ହସ୍ତୀଙ୍କ ଅନ୍ୟ ପୁତ୍ର ଦ୍ୱିମୀଢ଼ଙ୍କ ପୁଅ ଯବୀନରଙ୍କର ପୁଅ ହେଲେ କୃତିମାନ୍ । ତାଙ୍କ ପୁଅ ସତ୍ୟଧୃତି, ତାଙ୍କ ପୁଅ ଦୃଢ଼ନେମି ଓ ତାଙ୍କର ପୁଅ ହୋଇଥିଲେ ସୁପାର୍ଶ୍ୱ । ତାଙ୍କପୁଅ ସୁମତି, ତାଙ୍କ ପୁଅ ସନ୍ନତିମାନ ଓ ତାଙ୍କ ପୁଅର ନାମ ହେଲା କୃତୀ । ସେ ହିରଣ୍ୟନାଭଙ୍କଠାରୁ ଯୋଗବିଦ୍ୟା

ଶିକ୍ଷା କରିଥିଲେ । ଏହାଙ୍କୁ ସେ ପ୍ରାଚ୍ୟ ସାମଗ୍ରନ୍ଥର ଛଅଟି ସଂହିତା କହିଥିଲେ । ନୀପ ହେଲେ କୃତିଙ୍କ ପୁତ୍ର । ନୀପଙ୍କର ଉଗ୍ରାୟୁଧ, ତାଙ୍କର କ୍ଷେମ୍ୟ, ତାଙ୍କର ସୁବୀର, ତାଙ୍କର ରିପୁଞ୍ଜୟ ଓ ତାଙ୍କର ପୁତ୍ର ବହୁରଥ ହେଲେ । ଅତ୍ୟନ୍ତ ସଂକ୍ଷେପରେ ଏହା ହିଁ ଦ୍ୱିମୀଢ଼ଙ୍କ ବଂଶାବଳୀ । ଏହିପରି ଭାବେ ହସ୍ତୀଙ୍କପୁତ୍ର ଅଜମୀଢ଼, ଦ୍ୱିମୀଢ଼ ଓ ପୁରୁମୀଢ଼ଙ୍କ ମଧ୍ୟରୁ ଦୁଇଜଣଙ୍କ ବଂଶାବଳୀ ବର୍ଣ୍ଣନା କଲି । ତୃତୀୟ ପୁତ୍ର ପୁରୁମୀଢ଼ଙ୍କର କୌଣସି ସନ୍ତାନସନ୍ତତି ନଥିଲେ ।

ସମସ୍ତଙ୍କଠାରୁ ବଡ଼ ଅଜମୀଢଙ୍କର ଅନେକ ରାଣୀ ଥିଲେ । ପ୍ରଥମ ରାଣୀଙ୍କ ସନ୍ତାନ ମାନେ ବ୍ରାହ୍ମଣ ହୋଇଗଲେ । ଦ୍ୱିତୀୟା ରାଣୀଙ୍କ ବଂଶ ବର୍ଣ୍ଣନା କଲି । ତୃତୀୟାରାଣୀ ନଳିନୀଙ୍କ ଠାରୁ ନୀଳ ଜନ୍ମହେଲେ । ତାଙ୍କର ପୁଅ ଶାନ୍ତି, ତାଙ୍କର ସୁଶାନ୍ତି, ତାଙ୍କଠାରୁ ପୁରୁଜ, ତାଙ୍କଠାରୁ ଅର୍କ, ତାଙ୍କଠାରୁ ଭର୍ମ୍ୟାଶ୍ୱ ଓ ତାଙ୍କଠାରୁ ମୁଦ୍‌ଗଲ ଆଦି ପାଞ୍ଚ ପୁଅ ଜନ୍ମହେଲେ । ସେହି ପାଞ୍ଚ ପୁଅଙ୍କ ନାମ ହେଲା ମୁଦ୍‌ଗଲ, ଯବୀନର, ବୃହଦିଷୁ, କାମ୍ପିଲ୍ଲ ଓ ସଞ୍ଜୟ ।

ଭର୍ମ୍ୟାଶ୍ୱଙ୍କ ପାଞ୍ଚ ପୁଅ ପାଞ୍ଚଟି ଦେଶର ସମ୍ମିଳିତ ରାଜା ହେଲେ । ତେଣୁ ସେହି ଦେଶର ନାମ ହେଲା ପଞ୍ଚାଳ । ଚତୁର୍ଥ ପୁତ୍ର କାମ୍ପିଲ୍ଲ ନିଜ ନାମ ଅନୁସାରେ ଗଙ୍ଗାନଦୀ କୂଳରେ କାମ୍ପିଲ୍ଲ ନଗରୀ ପ୍ରତିଷ୍ଠା କଲେ । ଏହା ଏଟା ଜିଲ୍ଲାର ଗଙ୍ଗାନଦୀ କୂଳରେ ଅଦ୍ୟାବଧି ଥିବାର ଦେଖାଯାଏ । ପୂର୍ବେ କାମ୍ପିଲ୍ଲ ନଗରୀ ପାଞ୍ଚାଳ ଦେଶର ରାଜଧାନୀ ଥିଲା । ଭର୍ମ୍ୟାଶ୍ୱଙ୍କ ବଡ଼ପୁଅ ମୁଦ୍‌ଗଲଙ୍କଠାରୁ ମୌଦଗଲ୍ୟ ନାମକ ବ୍ରାହ୍ମଣ ଗୋତ୍ର ସୃଷ୍ଟି-ହେଲା । ମୁଦ୍‌ଗଲଙ୍କଠାରୁ ଦିବୋଦାସ ନାମକ ପୁଅ ଓ ଅହଲ୍ୟା ନାମ୍ନୀ ଝିଅ ଜନ୍ମ-ହେଲେ । ଗୌତମ ଋଷିଙ୍କ ସହ ଅହଲ୍ୟାଙ୍କର ବିବାହ ହୋଇଥିଲା । ଗୌତମ ଓ ଅହଲ୍ୟାଙ୍କଠାରୁ ମହର୍ଷି ଶତାନନ୍ଦ ଜନ୍ମ ଗ୍ରହଣ କରିଥିଲେ ।

ଏହା ଶୁଣି ଶୌନକ ପଚାରିଲେ—ମହାଶୟ ! ଆଗରୁ ଆପଣ କହିଛନ୍ତି ଯେ ସବୁ ଜୀବଙ୍କର ସୌନ୍ଦର୍ଯ୍ୟକୁ ନେଇ ବ୍ରହ୍ମା ଏକ ସ୍ତ୍ରୀକୁ ନିର୍ମାଣ କରିଥିଲେ । ସେହି ନାରୀଠାରେ ହଲ୍ୟ ନଥିବାରୁ ତାଙ୍କନାମ ଅହଲ୍ୟା ହେଲା । ଋଷି ଗୌତମଙ୍କ ପରୀକ୍ଷା କରିବା ଉଦ୍ଦେଶ୍ୟରେ ବ୍ରହ୍ମା ଅହଲ୍ୟାଙ୍କୁ ନେଇ ତାଙ୍କ ପାଖରେ ରଖିଥିଲେ । ପରେ ମୁନିଙ୍କ ସତ୍ୟ, ସଂଯମ ଓ ସଦାଚାରରେ ସନ୍ତୁଷ୍ଟ ହୋଇ ବ୍ରହ୍ମା ମୁନିଙ୍କ ସହିତ ଅହଲ୍ୟାର ବିବାହ କରିଦେଇଥିଲେ । ବର୍ତ୍ତମାନ ଆପଣ ତାଙ୍କୁ ମୁଦ୍‌ଗଲଙ୍କ ଝିଅ ବୋଲି କହୁଛନ୍ତି । ଏହାର ରହସ୍ୟ କଣ ?

ମହର୍ଷି ସୂତ କହିଲେ—ମହାଭାଗ ! ଏ ସୃଷ୍ଟିର ଆଦିଅନ୍ତ କିଛି ନାହିଁ । କୌଣସି ଏକ କଳ୍ପର ବ୍ରହ୍ମା ଅହଲ୍ୟାଙ୍କୁ ନିର୍ମାଣ କରିଥିବେ । ଅନ୍ୟ କୌଣସି କଳ୍ପରେ ସେ ମୁଦ୍‌ଗଲଙ୍କ ଝିଅ ହୋଇ ଜନ୍ମଗ୍ରହଣ କରିଥିବେ । ଏ ବିଷୟରେ କୌଣସି ଶଙ୍କା କରିବା ଉଚିତ୍ ନୁହେଁ ।

ହଁ, ଏହାପରେ ଶତାନନ୍ଦଙ୍କର ପୁଅ ହେଲେ ସତ୍ୟଧୃତ । ସେ ବ୍ରାହ୍ମଣ ହେଲେ ମଧ୍ୟ ଧନୁର୍ବିଦ୍ୟାରେ ପାରଦର୍ଶୀ ଥିଲେ । ତାଙ୍କ ପୁଅ ଶରଦ୍ୱାନଙ୍କ ଔରସରୁ ପୁତ୍ର କୃପ ଓ କନ୍ୟା କୃପୀ ଜନ୍ମ ହୋଇଥିଲେ ।

ଶୌନକ ପଚାରିଲେ—ମହାଶୟ ! କୃପ ଓ କୃପୀଙ୍କ ଜନ୍ମ କିପରି ହେଲା, ଦୟା କରି ସେହି ପ୍ରସଙ୍ଗ କହନ୍ତୁ ।

ମହର୍ଷି ସୂତ କହିଲେ—ଠିକ୍ ଅଛି । ମୁଁ ବର୍ତ୍ତମାନ ଆପଣଙ୍କୁ କୃପାଚାର୍ଯ୍ୟ ଓ କୃପୀଙ୍କ କଥା କହିବି, ଆପଣମାନେ ସାବଧାନ ହୋଇ ଶୁଣନ୍ତୁ ।

### ଛପ୍‌ପୟ

ହସ୍ତୀ ସୁତ ଅଜମୀଢ଼ ନୀଲ ସୁତ ଶାନ୍ତ ଭୟେ। ତନି ।
ତନ୍‌ଙ୍କେ ପୁତ୍ର ସୁଶାନ୍ତ ପୁରୁଜ ସୁତ ଅର୍କ ଲହେ ଜିନି ॥
ଅର୍କ ପୌତ୍ର ଭର୍ଯ୍ୟାଶ୍ୱ ପୁତ୍ର ମୁଦ୍‌ଗଲ ଦ୍ୱିଜ ତନି କୀ ।
ଭଇ ଅହଲ୍ୟା ସୁତା ନାରୀ ମୁନିବର ଗୌତମ କୀ ॥
ଶତାନନ୍ଦ ତନି ତେ ଭୟେ, ପୁତ୍ର ସତ୍ୟ ଧୃତ ତାସୁ କେ ।
ଶରଦ୍‌ବାନ୍ ସୁତ ଧନୁର୍ବେଦ୍, କୃପାଚାର୍ଯ୍ୟ ସୁତ ଜାସୁ କେ ॥



# କୃପ କୃପୀଙ୍କ କଥା

ଶରଦ୍ୱାଂସ୍ତସ୍ୟ ସୁତୋ ଯସ୍ମାଦୁର୍ବଶୀଦର୍ଶନାତ୍ କିଲ ।
ଶରସ୍ତମ୍ବେଽପତଦ୍ରେତୋ ମିଥୁନଂ ତଦ୍ଭୂଚ୍ଛୁଭମ୍ ॥
ତଦ୍ ଦୃଷ୍ଟ୍ୱା କୃପୟାଗୃହ୍ଣାଚ୍ଛନ୍ତନୁର୍ମୃଗୟାଂ ଚରନ୍ ।
କୃପଃ କୁମାରଃ କନ୍ୟା ଚ ଦ୍ରୋଣପତ୍ନ୍ୟଭବତ୍କୃପୀ ॥

(ଭାଗ—୯ସ୍କ, ୨୧ଅ, ୩୫-୩୬ଶ୍ଳୋ)

## ଛପ୍‌ପୟ

ଲଖି ଉର୍ବଶୀ ଶରଦ୍ୱାନ୍ ଶର ଚଞ୍ଚଳତା ଅତି ।
ଭଇ କାମବଶ ବୃତ୍ତି, ତୁରତ ଶତଧୃତି ସୁତକୀ ମତି ॥
ତନୁ ତୋ ସେକେ୍ୟା କନ୍ତୁ ରୁକେ୍ୟା ନହିଁ ରେତ ଗିର୍‌ୟୋ ଜହିଁ ।
କୁଶା ଝାଡ଼ କେ ମଧ୍ୟ ଭୟୋ ସୁତ-ସୁତା ପ୍ରକଟ ତହିଁ ॥
ଲୟୋ ଶନ୍ତନୁ କୃପାବଶ, ଦୋଉନ କୋ ପାଳନ କର୍‌ୟୋ ।
ଜାନି ବିପ୍ର ସନ୍ତାନ ଶୁଭ, ନାମ କୃପୀ କୃପ ନୃପ ଧରୟୋ ॥

କୃପା କରିବା ଶ୍ରେଷ୍ଠ ପୁରୁଷଙ୍କ କାର୍ଯ୍ୟ । ଯେଉଁମାନେ ଅନ୍ୟ ପ୍ରତି ଦୟା କରନ୍ତି ନାହିଁ, ସବୁବେଳେ ନିଜ ସ୍ୱାର୍ଥରେ ବ୍ୟସ୍ତ ରହନ୍ତି, ଏପରି ଅଧମ ପୁରୁଷ ମଲେ ଅନ୍ୟ ଲୋକରେ ନିଜର ଶରୀରକୁ ହିଁ ଖାଇଥାନ୍ତି । ସଂସାରର ନିୟମ ହେଉଛି, ଯେ ଯେପରି କାମ କରେ ସେ ସେହିପରି ଫଳ ପାଏ । ଯେଉଁମାନେ ଅନ୍ୟ ପ୍ରାଣୀମାନଙ୍କ ପ୍ରତି ଦୟାକରନ୍ତି, ଅନ୍ୟକୁ ଦୁଃଖୀ ଦେଖି ସେମାନଙ୍କ ଦୁଃଖ ଦୂର କରିବାକୁ ଚେଷ୍ଟା କରନ୍ତି, ଯଥାଶକ୍ତି ସେମାନଙ୍କର ସେବା ସୁଶ୍ରୂଷା କରନ୍ତି, ସେମାନେ ସଂସାରରେ ପୁତ୍ର, ପୌତ୍ର ଓ ଐଶ୍ୱର୍ଯ୍ୟଶାଳୀ ହୋଇ ଶେଷରେ ଧର୍ମୋପାର୍ଜିତ ପୁଣ୍ୟ ଲୋକକୁ ଯାଇଥାନ୍ତି ।

ମହର୍ଷି ସୂତ କହିଲେ—ମୁନିଗଣ ! ଆପଣମାନେ କୃପ ଓ କୃପୀଙ୍କ ଜନ୍ମକଥା ମୋତେ ପଚାରିଛନ୍ତି । ମୁଁ ସେହି କଥା ବର୍ତ୍ତମାନ କହୁଛି । ଗୌତମ ଗୋତ୍ରୀୟ ମହାମୁନି ଶରଦ୍ୱାନ୍ ନିଜ ବାପା ସତ୍ୟଧୃତିଙ୍କ ପରି ଧନୁର୍ବିଦ୍ୟାରେ ପାରଙ୍ଗମ ଥିଲେ । ଧନୁର୍ବିଦ୍ୟାରେ

ତାଙ୍କର ଯେତେ ଆଗ୍ରହ ଥିଲା । ବେଦବେଦାଙ୍ଗ ପ୍ରତି ସେପରି ଆଗ୍ରହ ନ ଥିଲା । ସେ ଶରକାଣ୍ଡରେ ଶର କରି ନିରନ୍ତର ଧନୁର୍ବିଦ୍ୟା ଅଭ୍ୟାସ କରୁଥିଲେ । ସେ ଥିଲେ ନୈଷ୍ଠିକ ବ୍ରହ୍ମଚାରୀ । ଅରଣ୍ୟରେ ରହି ସେ ଲକ୍ଷ୍ୟଭେଦ ଅଭ୍ୟାସ କରୁଥିଲେ । ଅନ୍ୟ ବିଦ୍ୟାର୍ଥୀମାନେ ଯେପରି ବ୍ରହ୍ମଚର୍ଯ୍ୟ ପାଳନ କରି ବିଦ୍ୟାଧ୍ୟୟନ କରନ୍ତି, ସେହିପରି ସେ ସମସ୍ତ ଇନ୍ଦ୍ରିୟଙ୍କୁ ସଂଯତ କରି ଅସ୍ତ୍ରଶସ୍ତ୍ର ବିଦ୍ୟା ଶିଖୁଥିଲେ । କିଛିଦିନ ମଧ୍ୟରେ ସେ ଧନୁର୍ବିଦ୍ୟାରେ ପାରଦର୍ଶୀ ହୋଇଗଲେ । ଏହା ଦେଖି ଦେବତାମାନେ ତାଙ୍କ ତପସ୍ୟାରେ ଅନ୍ତରାୟ ସୃଷ୍ଟି କଲେ । ଯେଉଁମାନେ ଶୁଭକାର୍ଯ୍ୟ କରନ୍ତି ସେମାନଙ୍କର ଧୈର୍ଯ୍ୟ ପରୀକ୍ଷା ପାଇଁ ବହୁ ପ୍ରକାର ବିଘ୍ନ ଦେବତାମାନେ ସୃଷ୍ଟି କରନ୍ତି । ଯେଉଁମାନେ ସେହି ବିଘ୍ନ ପ୍ରତି ଧ୍ୟାନ ନ ଦେଇ ନିରନ୍ତର ନିଜର କର୍ତ୍ତବ୍ୟରେ ଲାଗି ରହିଥାନ୍ତି, ଶେଷରେ କେବଳ ସେହିମାନେ ସିଦ୍ଧିଲାଭ କରନ୍ତି ।

ଦେବେନ୍ଦ୍ର ମହାମୁନି ଶରଦ୍ୱାନଙ୍କ ବ୍ରତଭଙ୍ଗ କରିବା ପାଇଁ ଉର୍ବଶୀ ନାମ୍ନୀ ଅପ୍ସରାକୁ ପଠାଇଲେ । ମୁନି ଘୋର ଅରଣ୍ୟରେ ଏକାଗ୍ର ଚିତ୍ତରେ ଧନୁର୍ବିଦ୍ୟା ଅଭ୍ୟାସ କରୁଥିଲେ । ତାଙ୍କ ପାଖକୁ ଯାଇ ଉର୍ବଶୀ ନାନାପ୍ରକାର ଅଙ୍ଗଭଙ୍ଗୀ କରି ମୁନିଙ୍କ ମନ ଆକର୍ଷଣ କରିବାକୁ ଚେଷ୍ଟାକଲେ । ନ ଜାଣିଲା ପରି ସେ ଖେଳି ଖେଳି ସେ ମୁନିଙ୍କ ପାଖକୁ ଚାଲି ଆସୁଥିଲେ ଏବଂ ସୁମଧୁର ସ୍ୱରରେ ସଙ୍ଗୀତ ଗାନ କରି ପୁଣି ଦୂରକୁ ଚାଲି ଯାଉଥିଲେ । ଉର୍ବଶୀ ନିଜ ଶରୀରରୁ କେତେବେଳେ ଲୁଗା ଖସାଇ ଦେଇ ମୁନିଙ୍କ ଆଡ଼କୁ ଚାହିଁରହୁଥିଲେ । କ୍ରମଶଃ ଏ ସବୁ ହାବଭାବ ଲକ୍ଷ୍ୟ କରି ଯୁବକ ମୁନିଙ୍କ ମନ ସୁନ୍ଦର ଲଳନାର ସୌନ୍ଦର୍ଯ୍ୟ ଆଡ଼କୁ ସ୍ୱତଃ ଆକର୍ଷିତ ହେଲା । ତା'ର ରୂପ ଯୌବନ ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ଦେଖି ମୁନି ମନେ ମନେ ମୁଗ୍ଧ ହୋଇଗଲେ । ତାଙ୍କ ଚିତ୍ତ ଚଞ୍ଚଳ ହେବାକୁ ଲାଗିଲା ଓ ହାତ କମ୍ପିବାକୁ ଲାଗିଲା ଏବଂ ହାତରୁ ଧନୁ ଓ ଶର ଖସି ପଡ଼ିଲା । ସେ ନିଜର ଜପ, ତପ, ଧ୍ୟାନ ଧାରଣା ଏପରିକି ନିଜକୁ ମଧ୍ୟ ଭୁଲିଗଲେ । ତାଙ୍କର ମନ ସେହି ଦୀର୍ଘାଙ୍ଗୀ ବାରବନିତାର ରୂପଜାଲରେ ଛନ୍ଦି ହୋଇଗଲା । ତଥାପି ସେ ଦୃଢ଼ତାର ସହିତ ଧୈର୍ଯ୍ୟ ଧାରଣ କରିବାକୁ ସତତ ଯତ୍ନବାନ୍ ହୋଇଥିଲେ । ନିଜ ଶରୀରକୁ ସେ ଚଳିଗଲେ କିନ୍ତୁ ନ ଥିଲେ । ନିଜ ସ୍ଥାନରୁ ମଧ୍ୟ ସେ ଟଳେ ହେଲେ ବିଚଳିତ ହେଉ ନ ଥିଲେ । କିନ୍ତୁ କ୍ରମଶଃ ମୁନିଙ୍କ ଶରୀରର ଉତ୍ତେଜନା ବୃଦ୍ଧି ପାଇବାକୁ ଲାଗିଲା । ସେ ଅଧୀରତା ଅନୁଭବ କଲେ । ଯେତେ ଚେଷ୍ଟା କରି ସେ ଶରୀରକୁ ସମ୍ଭାଳି ନେଇଥିଲେ ମଧ୍ୟ କାମୋଦ୍ରେକ ଜନିତ ଶୁକ୍ର ସ୍ଖଳନକୁ ସେ ଅବରୁଦ୍ଧ କରି ପାରିଲେ ନାହିଁ । ଉର୍ବଶୀର ଅପରୂପ ସୌନ୍ଦର୍ଯ୍ୟ ମୁନିଙ୍କ ଯୁବକ ସୁଲଭ ହୃଦୟକୁ ଦ୍ରବୀଭୂତ କରିଦେଲା । ତାଙ୍କର ଧୈର୍ଯ୍ୟଚ୍ୟୁତ ଘଟିଲା । ସେ ସବୁ କଥା ଜାଣିପାରୁଥିଲେ ଓ ବୁଝିପାରୁଥିଲେ ମଧ୍ୟ ନିଜ ଚିତ୍ତବୃତ୍ତିକୁ ନିରୋଧ କରି ପାରିଲେ ନାହିଁ । ତାଙ୍କ ହୃଦୟ ତରଳି ଗଲା, ଧୈର୍ଯ୍ୟବାନ୍ଧ ଭାଙ୍ଗିଗଲା ଓ ଦୃଢ଼ତା ତୁଟିଗଲା । ମୁନିଙ୍କ ଅଜ୍ଞତସାରରେ ତାଙ୍କର ଶୁକ୍ର ସ୍ଖଳିତ ହୋଇଗଲା । ଅଭ୍ୟନ୍ତର ଅବସ୍ଥିତ ଶାନ୍ତ ହେବା ସଙ୍ଗେ ସଙ୍ଗେ ଦେହର ଶିଥିଳତା

ଜଣାଗଲା । ମୁନି ବୁଝିଗଲେ, ତାଙ୍କର ଅମୋଘ ରେତ ସ୍ଥାନଚ୍ୟୁତ ହୋଇଯାଇଛୁ । ତେଣୁ ସେ ସେହିଠାରେ ତାଙ୍କର ମୃଗଚର୍ମ ଦଣ୍ଡ ଆଦି ଛାଡ଼ି ସଙ୍ଗେ ସଙ୍ଗେ ଅନ୍ୟ ସ୍ଥାନକୁ ଚାଲି-ଗଲେ । ତାଙ୍କର ରେତଃ ଗୋଟିଏ କୁଶବୁଦା ଉପରେ ପଡ଼ିଗଲା । କୁଶବୁଦାରେ ପଡ଼ି ସେହି ରେତଃ ଦୁଇ ଭାଗ ହୋଇଗଲା । ମୁନିଙ୍କର ଅମୋଘ କାର୍ଯ୍ୟ ତ କେବେ ନିଷ୍ଫଳ ହେବ ନାହିଁ । ଯେଉଁଠି ପଡ଼ିଲେ ବି ତାହା ଫଳବାନ୍ ହେବ । ତେଣୁ ସେଠାରେ ସଙ୍ଗେ ସଙ୍ଗେ ଦୁଇଟି ପିଲା ସୃଷ୍ଟି ହୋଇଗଲେ । ସେଥିରୁ ଗୋଟିଏ ଥିଲା ବାଳକ ଓ ଅନ୍ୟଟି ଥିଲା ବାଳିକା ।

ସେତେବେଳେ ହସ୍ତିନା ପୁରରେ ଭୀଷ୍ମ ପିତାମହଙ୍କ ପିତା ମହାରାଜ ଶାନ୍ତନୁ ରାଜତ୍ୱ କରୁଥିଲେ । ଦୈବାତ୍ ମୃଗୟା ନିମିତ୍ତ ସେ ସେହି ବଣକୁ ଆସିଥିଲେ । ତାଙ୍କର ଜନୈକ ସେବକ ଶୁଭ ଲକ୍ଷଣଯୁକ୍ତ ସେହି ପିଲା ଦୁଇଟିଙ୍କୁ କାନ୍ଦୁଥିବାର ଦେଖିଲା । ପାଖରେ ପଡ଼ିଥିବା ଦଣ୍ଡ, କମଣ୍ଡଳୁ, ମୃଗଚର୍ମ, କୁଶର ବ୍ରହ୍ମଦଣ୍ଡ ଆଦି ଦେଖି ସେ ଦୁହେଁ କୌଣସି ବ୍ରାହ୍ମଣ ସନ୍ତାନ ବୋଲି ସେବକ ଜଣକ ବୁଝିପାରିଲା । ତେଣୁ ସେ ଦୁଇ ପିଲାଙ୍କୁ ନେଇ ରାଜାଙ୍କୁ ଦେଲା । ମହାରାଜା ସେହି ସୁନ୍ଦର ସୁକୁମାର ପିଲା ଦୁଇଟିଙ୍କୁ ପାଇ ଆନନ୍ଦିତ ହେଲେ । ନିଜର ପିଲାପରି ସେ ସେମାନଙ୍କୁ ପାଳନ ପୋଷଣ କଲେ ଏବଂ ବ୍ରାହ୍ମଣୋଚିତ ସମସ୍ତ ସଂସ୍କାର କରାଇଲେ । ରାଜା ଦୟାକରି ସେମାନଙ୍କୁ ପାଳନ ପୋଷଣ କରିଥିବାରୁ ପୁଅର ନାମ ଦେଲେ କୃପ ଓ ଝିଅର ନାମ ଦେଲେ କୃପୀ । ସେ ଦୁହେଁ ରାଜମହଲରେ ଧୀରେ ଧୀରେ ବଢ଼ିବାକୁ ଲାଗିଲେ ।

ଶରଦ୍‌ବାନ୍ ସ୍ଥାନ ତ୍ୟାଗ କରି ଚାଲିଯିବା ପରେ ସେହି ସ୍ୱର୍ଗାଙ୍ଗନା ଉର୍ବଶୀ ସ୍ୱର୍ଗପୁରକୁ ଫେରିଗଲା । ମୁନି ସେଠାରୁ ଯାଇ ଗଙ୍ଗାସ୍ନାନ କଲେ, ବେଦମାତା ଗାୟତ୍ରୀ ମନ୍ତ୍ର ଜପ କଲେ ଓ ଜଳରେ ପଶି ଅଘମର୍ଷଣ ମନ୍ତ୍ର ଉଚ୍ଚାରଣ କଲେ । ତା'ପରେ ସେ ପୁଣି ନିଜ ଆଶ୍ରମକୁ ଫେରିଆସି ଧନୁର୍ବିଦ୍ୟା ଅଭ୍ୟାସ କରିବାକୁ ଲାଗିଲେ । ତପସ୍ୟା ପ୍ରଭାବରୁ ସେ କୃପ ଓ କୃପୀଙ୍କ କଥା ମଧ୍ୟ ଜାଣିପାରିଥିଲେ । ପରେ ସେ ରାଜା ଶାନ୍ତନୁଙ୍କ ପାଖକୁ ଆସି ନିଜର ପରିଚୟ ଦେଲେ ଓ ପୁଅ ଝିଅଙ୍କୁ ଆଦର କଲେ । ସେଦିନ ଠାରୁ ସେ ଧନୁର୍ବିଦ୍ୟା ସମ୍ବନ୍ଧରେ ଯାହା ଜ୍ଞାନ ଲାଭ କରିଥିଲେ ସେ ସମସ୍ତ ପୁଅ କୃପଙ୍କୁ ଶିଖାଇଦେଲେ । ଏହି ମୁନି କୃପ ଧନୁର୍ବିଦ୍ୟାରେ ପାରଙ୍ଗତ ହୋଇ କୌରବ ଓ ପାଣ୍ଡବଙ୍କୁ ଧନୁର୍ବିଦ୍ୟା ଶିଖାଇବା ପାଇଁ ଆଚାର୍ଯ୍ୟ ପଦରେ ନିଯୁକ୍ତ ହୋଇଥିଲେ । ସେଥିପାଇଁ ସେ କୃପାଚାର୍ଯ୍ୟ ନାମରେ ବିଖ୍ୟାତ ହେଲେ ।

କୃପୀ ବିବାହ ଯୋଗ୍ୟା ହୋଇଯିବାରୁ ମହାରାଜ ଶାନ୍ତନୁଙ୍କୁ ତାଙ୍କର ବିବାହ ଚିନ୍ତା ଘାରିଲା । କୃପୀଙ୍କ ଅନୁରୂପ କେହି ତେଜସ୍ୱୀ ଯଶସ୍ୱୀ ମୁନିପୁତ୍ର ମିଳିଲେ ତାହା

ସହିତ କୃପୀଙ୍କର ବିବାହ କରିଦେବାକୁ ଶାନ୍ତନୁ ଇଚ୍ଛା କରିଥିଲେ । ସେ ସମୟରେ ଭରଦ୍ୱାଜ ମୁନି ଗଙ୍ଗାକୂଳରେ ଘୋର ତପସ୍ୟା କରୁଥିଲେ । ଦୈବଯୋଗକୁ ଘୃତାଚୀ ନାମ୍ନୀ ଅପ୍ସରାର ଅବଲୋକନରେ ପଡ଼ି ତାଙ୍କର ମଧ୍ୟ ବୀର୍ଯ୍ୟ ସ୍ଖଳିତ ହୋଇଥିଲା । ଭରଦ୍ୱାଜ ମୁନି ନିଜର ସ୍ଖଳିତ ରେତଃକୁ ଯଜ୍ଞର ଏକ ଦ୍ରୋଣପାତ୍ରରେ ରଖିଦେଲେ । ସେଥିରୁ ଦ୍ରୋଣ ନାମକ ପୁତ୍ର ଜନ୍ମ ହୋଇଥିଲା । ମହାମୁନି ଭରଦ୍ୱାଜ ନିଜ ପୁଅକୁ ଅନ୍ୟ ବ୍ରହ୍ମଚାରୀମାନଙ୍କ ସହିତ ବେଦବେଦାଙ୍ଗ ପଢ଼ାଇ ଥିଲେ । ମୁନିଙ୍କ ଆଶ୍ରମରେ ଉତ୍ତର ପାଞ୍ଚାଳ ଦେଶର ନରପତି ମହାରାଜ ବୃଷଦ୍‌ଙ୍କ ପୁତ୍ର ଦ୍ରୁପଦ ମଧ୍ୟ ଅଧ୍ୟୟନ କରୁଥିଲେ । ବିଦ୍ୟା ଅଧ୍ୟୟନ ସମୟରେ ରାଜପୁତ୍ର ଓ ମୁନିପୁତ୍ରଙ୍କ ମଧ୍ୟରେ କିଛି ଭେଦଭାବ କି ଭେଦ ବିଚାର କି ଥାଏ । ତେଣୁ ଦ୍ରୋଣ ଓ ଦ୍ରୁପଦ ସାଙ୍ଗ ହୋଇ ପଢ଼ୁଥିଲେ ଓ ଖେଳୁଥିଲେ । ଦୁହେଁ ଦୁହିଁଙ୍କୁ ଖୁବ୍ ଭଲପାଉଥିଲେ । ଦ୍ରୋଣ ଧନୁର୍ବିଦ୍ୟାରେ ଅଦ୍ୱିତୀୟ ଥିଲେ । ସେ ନିଜ ପିତାଙ୍କ ଶିଷ୍ୟ ଅଗ୍ନିବେଶଙ୍କଠାରୁ ଆଗ୍ନେୟାସ୍ତ୍ର ଶିକ୍ଷା କରିଥିଲେ । ପରଶୁରାମଙ୍କଠାରୁ ମଧ୍ୟ ଧନୁର୍ବିଦ୍ୟା ଶିକ୍ଷା କରିଥିଲେ । କାଳକ୍ରମେ ମହାରାଜ ବୃଷଦ୍ ପରଲୋକ ଗମନ କରିବାରୁ ଦ୍ରୁପଦ ପାଞ୍ଚାଳ ଦେଶର ରାଜା ହେଲେ । ମୁନି ଭରଦ୍ୱାଜଙ୍କ ପରେ ଦ୍ରୋଣ ନିଜ ପିତାଙ୍କ ଆଶ୍ରମର ଦାୟିତ୍ୱ ବହନ କଲେ । ଗୃହସ୍ଥ ହେବା ପାଇଁ ତାଙ୍କର ଇଚ୍ଛା ଜାତ ହେବାରୁ ସେ ମହାରାଜ ଶାନ୍ତନୁଙ୍କ ପାଖକୁ କୃପୀଙ୍କୁ ମାଗିବାକୁ ଗଲେ । ରାଜା ଯୋଗ୍ୟ ବରପାତ୍ର ପାଇ କୃପୀଙ୍କୁ ଦ୍ରୋଣଙ୍କ ସହିତ ବିବାହ କରାଇଦେଲେ । କୃପୀଙ୍କ ପରି ମଧୁରଭାଷୀ ପତ୍ନୀ ପାଇ ଦ୍ରୋଣାଚାର୍ଯ୍ୟ ବିଭିନ୍ନ ଧର୍ମାଚରଣ କରିବାକୁ ଲାଗିଲେ । କିଛିଦିନ ପରେ ତାଙ୍କର ପୁଅଟିଏ ଜନ୍ମ ହେଲା । ପିଲାଟି ଜନ୍ମ ହେବାମାତ୍ରେ ଅଶ୍ୱପରି ଶବ୍ଦ କରିବାରୁ ତା'ର ନାମ ହେଲା ଅଶ୍ୱତ୍ଥାମା ।

ବନରେ ଥିବା ଅନ୍ୟ ମୁନିମାନଙ୍କ ପାଖରେ ଗାଈଥିଲେ ବି ଦ୍ରୋଣ ମୁନିଙ୍କ ପାଖରେ ତପସ୍ୟା ରୂପକ ଧନ ବ୍ୟତୀତ ଅନ୍ୟ କିଛି ନ ଥିଲା । ଅନ୍ୟ ମୁନିକୁମାରମାନେ ଦୁଧ ପିଉଥିବାର ଦେଖି ଅଶ୍ୱତ୍ଥାମା ଦୁଧ ପିଇବା ପାଇଁ ମା'କୁ କହିଲେ । କୃପୀ ଅନ୍ୟ କିଛି ଉପାୟ ନ ଦେଖି ଅଟାକୁ ପାଣିରେ ଗୋଳେଇ ଅଶ୍ୱତ୍ଥାମାକୁ ପିଆଇଲେ । ଅଶ୍ୱତ୍ଥାମା ପରେ ତାହା ସତ ଦୁଧ ନୁହେଁ ବୋଲି ଜାଣିପାରିଲା । ଏହା ଜାଣି ଦ୍ରୋଣାଚାର୍ଯ୍ୟ ଖୁବ୍ ଦୁଃଖିତ ହେଲେ । ସେତେବେଳେ ନିଜର ମିତ୍ର ଦ୍ରୁପଦ ରାଜା ହୋଇଥିବା କଥା ତାଙ୍କର ମନେ ପଡ଼ିଲା । ମିତ୍ର ଦ୍ରୁପଦ ଯେ ତାଙ୍କୁ ସାହାଯ୍ୟ କରିବେ ଏଥିରେ ତାଙ୍କର ସନ୍ଦେହ ନ ଥିଲା । ଏହା ଭାବି ସେ ଦ୍ରୁପଦଙ୍କ ରାଜଧାନୀକୁ ଗଲେ । ଦ୍ରୁପଦଙ୍କୁ ସାକ୍ଷାତ କରି ସେ ନିଜର ପ୍ରସନ୍ନତା ଜଣାଇ କହିଲେ—ରାଜନ୍ ! ଆପଣ ମୋତେ ଚିହ୍ନି ପାରୁଛନ୍ତି କି ନାହିଁ ? ମୁଁ ମୁନି ଭରଦ୍ୱାଜ ପୁତ୍ର ଓ ଆପଣଙ୍କ ସୁହୃତ୍ ମିତ୍ର ଦ୍ରୋଣ । ଆପଣ ଦିନେ କହିଥିଲେ—ମୁଁ ରାଜା ହେଲେ ତୁମେ ମୋ' ସହିତ ରାଜ ଐଶ୍ୱର୍ଯ୍ୟ ଭୋଗ କରିବ ।

ଏକଥା ଶୁଣୁ ଶୁଣୁ ଐଶ୍ୱର୍ଯ୍ୟ ମଦରେ ପ୍ରମତ୍ତ ପାଞ୍ଚାଳ ଦେଶାଧିପତି ମହାରାଜ ଦ୍ରୁପଦ କହିଲେ—ବ୍ରାହ୍ମଣ ! ତୁମେ ବଡ଼ ସରଳ । ଜଣେ ଐଶ୍ୱର୍ଯ୍ୟଶାଳୀ ରାଜା ସହିତ ଜଣେ ଦରିଦ୍ର ବ୍ରାହ୍ମଣର ମିତ୍ରତା କ'ଣ ସମ୍ଭବ ? ହଁ ତୁମେ ଓ ମୁଁ ସେତେବେଳେ ଏକା ଅବସ୍ଥାରେ ଥିଲେ ଓ ପରସ୍ପର ପ୍ରତି ସ୍ନେହ କରୁଥିଲେ । କିନ୍ତୁ ସମାନ ଗୁଣ ଥିବା ଲୋକଙ୍କ ମଧ୍ୟରେ ମିତ୍ରତା ହୁଏ । ଏବେ ମୁଁ ରାଜା ହୋଇଛି ଆଉ ତୁମେ ସେହି ଦରିଦ୍ର ବ୍ରାହ୍ମଣ ଅବସ୍ଥାରେ ରହିଅଛ । ତେଣୁ ପୁରୁଣା କଥା ଭୁଲିଯାଅ । ତୁମେ ଐଶ୍ୱର୍ଯ୍ୟ ଭୋଗ କରିବାର ଇଚ୍ଛା ମନରୁ ପୋଛି ଦିଅ । ଯଦି ଇଚ୍ଛା କରୁଛ ତେବେ ଦିନେ ଦୁଇଦିନ ପାଇଁ ତୁମକୁ କିଛି ଅର୍ଥ ଦିଆଯାଇ ପାରିବ ।

ମହର୍ଷି ସୂତ କହିଲେ—ମୁନିଗଣ ! ମହାରାଜ ଦ୍ରୁପଦଙ୍କଠାରୁ ଏପରି ତିରସ୍କାର ପୂର୍ଣ୍ଣ କଥା ଶୁଣି ଦ୍ରୋଣାଚାର୍ଯ୍ୟ ଅତ୍ୟନ୍ତ ମର୍ମାହତ ଓ କ୍ରୁଦ୍ଧ ହେଲେ । କିନ୍ତୁ ସେ କିଛି କହିଲେ ନାହିଁ । ଆଘାତ ପାଇଥିବା ସର୍ପ ପରି ସେ ମନେ ମନେ ଭବିଷ୍ୟତରେ ଏହି ଅପମାନର ପ୍ରତିଶୋଧ ନେବାର ପ୍ରତିଜ୍ଞା କରି ହସ୍ତିନାପୁରକୁ ଫେରିଆସିଲେ । ସେଠାରେ ସେ ନିଜର ଶଳା କୃପାଚାର୍ଯ୍ୟଙ୍କ ଘରେ ରହିଲେ । ସେତେବେଳେ ଭୀଷ୍ମ ପିତାମହ କୌରବ ଓ ପାଣ୍ଡବ-ମାନଙ୍କୁ ଅସ୍ତ୍ରଶସ୍ତ୍ରରେ ଅଧିକ ଶିକ୍ଷା ଦେବାପାଇଁ ଜଣେ ଯୋଗ୍ୟ ଆଚାର୍ଯ୍ୟ ଖୋଜୁଥିଲେ । ଦ୍ରୋଣାଚାର୍ଯ୍ୟଙ୍କ ଆଗମନ ସମ୍ବାଦ ପାଇ ସେ ଖୁସି ହେଲେ ଏବଂ ତାଙ୍କୁ ଡକାଇ ଆଚାର୍ଯ୍ୟ ପଦରେ ନିଯୁକ୍ତ କଲେ । ସେହିଦିନୁ ଶେଷ ପର୍ଯ୍ୟନ୍ତ ଦ୍ରୋଣାଚାର୍ଯ୍ୟ ନିଜର ପତ୍ନୀ କୃପୀ ଓ ପୁତ୍ର ଅଶ୍ୱତ୍ଥାମା ସହିତ ହସ୍ତିନା ପୁରରେ ଅବସ୍ଥାନ କଲେ, ଗୁରୁଦକ୍ଷିଣା ସ୍ୱରୂପ ସେ ନିଜର ଶିଷ୍ୟମାନଙ୍କଦ୍ୱାରା ଦ୍ରୁପଦଙ୍କୁ ବନ୍ଦୀକରି ଆଣିଲେ ଓ ତାଙ୍କଠାରୁ ଅଧେ ରାଜ୍ୟ ନେଇ ଛାଡ଼ିଦେଇଥିଲେ । କୃପାଚାର୍ଯ୍ୟ ତ' କୌରବମାନଙ୍କର କୁଳଗୁରୁ ଥିଲେ । ମହାଭାରତ ଯୁଦ୍ଧରେ ସେ ବଞ୍ଚିଯାଇଥିଲେ ଓ ଧର୍ମରାଜ ଯୁଧିଷ୍ଠିରଙ୍କ ସହିତ ଶେଷ ପର୍ଯ୍ୟନ୍ତ ରହିଥିଲେ । କୃପ ଓ କୃପୀଙ୍କ କଥା ମୁଁ ଅତି ସଂକ୍ଷେପରେ କହିଲି । ବର୍ତ୍ତମାନ ଆପଣମାନେ ଆଉ କ'ଣ ଶୁଣିବେ କୁହନ୍ତୁ ।

ଶୌନକ କହିଲେ --ମହାଭାଗ ! ଆପଣ ମନ୍ୟୁଙ୍କ ପୁତ୍ର ବୃହତ୍‌କ୍ଷତ୍ରଙ୍କ ବଂଶ ତ ବର୍ଣ୍ଣନା କଲେ । ଏବେ ଆମେ ପାଞ୍ଚାଳଦେଶର ରାଜାମାନଙ୍କ ବଂଶାବଳୀ ଶୁଣିବା ପାଇଁ ଇଚ୍ଛା କରୁଛୁ । ଦୟାକରି ଆମକୁ ସେମାନଙ୍କ କଥା କୁହନ୍ତୁ ।

ମହର୍ଷି ସୂତ କହିଲେ -ଠିକ୍ ଅଛି, ବର୍ତ୍ତମାନ ମୁଁ ପାଞ୍ଚାଳ ଦେଶର ରାଜ ବଂଶାବଳୀ ବର୍ଣ୍ଣନା କରୁଛି, ତାହା ଆପଣମାନେ ଦତ୍ତଚିତ୍ତ ହୋଇ ଶୁଣନ୍ତୁ ।

## ଛପ୍ପୟ

ମିତ୍ରୁ କୁଳ ତେ କୃପ ଭୟେ ସୁତନ କେ ଶିକ୍ଷକ ଘରମହଁ ।
ସୁବର୍ତା ନିରଖୀ କୃପୀ ଭଈ ଚନ୍ତା ନୃପ ଭନ ମହଁ ॥
ଭରଦ୍ୱାଜ ସୁତ ଆଇ ବ୍ୟାହ କୀ ଇଛା କୀହ୍ନୀ ।
ହୈଂ ପ୍ରସନ୍ନ ନୃପ କୃପୀ ଦ୍ରୋଣ କୁଁ ବଧିବତ୍ ଦୀହ୍ନୀ ॥
ଦ୍ରୋଣ ବୀର୍ଯ୍ୟତେଁ କୃପୀ ମହଁ, ଅଶ୍ୱତ୍ଥାମା ସୁତ ଭୟେ ।
ଜଗମହଁ ଦ୍ରୋଣାଚାର୍ଯ୍ୟ ଦ୍ୱିଜ, ବୀର ଅଗ୍ରଣୀ ହ୍ୱୈ ଗୟେ ॥



## ପାଞ୍ଚାଳଦେଶୀୟ ରାଜବଂଶ

ତସ୍ୟ ପୁତ୍ର ଶତଂ ତେଷାଂ ଯବୀୟାନ୍ ପୃଷତଃ ସୁତଃ ।
ଦ୍ରୁପଦୋ ଦ୍ରୌପଦୀ ତସ୍ୟ ଧୃଷ୍ଟଦ୍ୟୁମ୍ନାଦୟଃ ସୁତାଃ ॥
(ଭାଗ-୯ସ୍କ-୨୨ଅ-୨ଶ୍ଳୋ)

ଦିବୋଦାସ ସୁତ ଭୟେ ଭୂପ ମିତ୍ରେୟୁ ଚ୍ୟବନ ତିନ ।
ଚ୍ୟବନ କୁମାର ସୁଦାସ ଭୟେ ସୋମକ ଆଦିକ ଜନ ॥
ସୋମକ କେ ଶତ ତନୟ ପୃଷଦ୍ ସୁତ ଛୋଟେ ସବତେଁ
ପୃଷଦ ପୁତ୍ର ନୃପ ଦ୍ରୁପଦ ଦ୍ରୌପଦୀ ତନୟା ଜନିତେଁ ॥
ଧୃଷ୍ଟଦ୍ୟୁମ୍ନ ଆଦିକ ତନୟ, ଭୟେ ଦ୍ରୁପଦ କେ ଜଗ ବିଦିତ ।
ଶତ୍ରୁସେନ ଘର ଦୂରି କର, ରବି ସମ ରଣ ମହଁ ହ୍ୱୈ ଉଦିତ ॥

ପ୍ରାଣୀମାନଙ୍କଠାରେ ପ୍ରତିଶୋଧ ଭାବନା ସ୍ୱାଭାବିକ । ପିମ୍ପୁଡ଼ିଟିକୁ ଅଙ୍ଗୁଳିରେ ଚିପିଦେଲେ ସେ ବି ସଙ୍ଗେ ସଙ୍ଗେ କାମୁଡ଼ି ଦିଏ । ଯେତେ ଶ୍ରେଷ୍ଠ ହେଲେ ବି ଜୀବ ପ୍ରତିଶୋଧ ନେବା ପାଇଁ ତତ୍ପର ହୋଇଉଠେ । ସେଥିପାଇଁ ନୀତିଶାସ୍ତ୍ରକାରମାନେ

କହିଛନ୍ତି—ମାରିବାକୁ ଆସୁଥିବା ପ୍ରାଣୀକୁ ମାରିଦେବାରେ କିଛି ଦୋଷ ଲାଗେ ନାହିଁ । ଯେତେ ବଡ଼ ବଡ଼ ଲୋକ ଜନ୍ମ ହୋଇଛନ୍ତି, ଭଗବାନ୍ ସ୍ୱୟଂ ଯେତେ ଅବତାରରେ ଅବତୀର୍ଣ୍ଣ ହୋଇଛନ୍ତି । ସମସ୍ତେ ଜଗତରେ ଅପକାରୀ ଲୋକର ପ୍ରତିଶୋଧ ନେଇଛନ୍ତି । ଯେଉଁମାନେ ଅପକାରୀ ଲୋକର ପ୍ରତିଶୋଧ ନିଅନ୍ତି ନାହିଁ ବରଂ ହୃଦୟରେ ତାକୁ କ୍ଷମା ଦିଅନ୍ତି, ସେମାନେ ହିଁ ସନ୍ଥ ଓ ସେମାନେ ସର୍ବବନ୍ଦନୀୟ । ନୋହିଲେ ଅପକାରୀ ଲୋକ ପ୍ରତି ସମସ୍ତଙ୍କର କ୍ରୋଧ ଜାତ ହୁଏ । ପ୍ରତିଶୋଧ ପରାୟଣ ଲୋକେ ଶକ୍ତି ଅନୁସାରେ ପରର ଅନିଷ୍ଟ କରିବା ପାଇଁ ଯତ୍ନଶୀଳ ହୁଅନ୍ତି । ଯଦି ନିଜେ ପ୍ରତିଶୋଧ ନେଇ ନ ପାରିଲେ ତେବେ ପୁଅଙ୍କୁ କହିଯାଆନ୍ତି—ଅମୁକ ବ୍ୟକ୍ତିଙ୍କ ଉପକାର ବା ଅପକାର ନିଶ୍ଚୟ ପରିଶୋଧ କରିବ ।

ମହର୍ଷି ସୂତ କହିଲେ—ମୁନିଗଣ ! ଆପଣମାନେ ମୋତେ ପାଞ୍ଚାଳ ଦେଶର ନୃପତିମାନଙ୍କ ବଂଶାବଳୀ କଥା ପଚାରିଥିଲେ । ତାହା ମୁଁ ବର୍ଣ୍ଣନା କରୁଛି, ଶୁଣନ୍ତୁ । ମହାରାଜ ଭର୍ମ୍ୟାଶ୍ୱଙ୍କର ପାଞ୍ଚ ପୁଅ ଥିଲେ ବୋଲି ମୁଁ ଆଗରୁ କହିଛି । ସେମାନେ ସମ୍ମିଳିତ ଭାବେ ଶାସନ କରୁଥିବା ଦେଶ ପାଞ୍ଚାଳ ନାମରେ ଖ୍ୟାତ ହେଲା ଏବଂ ସେମାନେ ମଧ୍ୟ ପାଞ୍ଚାଳ ନାମରେ ଅଭିହିତ ହେଲେ । ସେହି ପାଞ୍ଚ ପୁଅଙ୍କ ମଧ୍ୟରେ ମୁଦ୍‌ଗଲ ସବୁଠୁ ବଡ଼ ଥିଲେ । ତାଙ୍କର ଦିବୋଦାସ ନାମକ ପୁଅ ଓ ଅହଲ୍ୟା ନାମ୍ନୀ କନ୍ୟା ଜାତ ହେଲେ । ଅହଲ୍ୟାଙ୍କ ବଂଶ କଥା ଆଗରୁ କହିଛି । ଏବେ ପୁତ୍ର ଦିବୋଦାସଙ୍କ କଥା ଶୁଣନ୍ତୁ ।

ମହାରାଜ ଦିବୋଦାସଙ୍କର ପୁତ୍ର ହେଲେ ମିତ୍ରେୟୁ । ତାଙ୍କର ଚ୍ୟବନ, ସୁଦାସ, ସହଦେବ ଓ ସୋମକ ନାମରେ ଚାରିପୁଅ ଜନ୍ମଗ୍ରହଣ କଲେ । ସେମାନଙ୍କ ମଧ୍ୟରୁ ସୋମକଙ୍କର ଶହେ ପୁଅ ହେଲେ ଯେଉଁମାନଙ୍କ ମଧ୍ୟରେ ଜନ୍ତୁ ସମସ୍ତଙ୍କଠାରୁ ବଡ଼ ଏବଂ ପୃଷତ ସମସ୍ତଙ୍କଠାରୁ ସାନ ଥିଲେ । ପୃଷତଙ୍କର ପୁଅ ହେଲେ ମହାରାଜ ଦ୍ରୁପଦ । ତାଙ୍କଦ୍ୱାରା ଅନୁଷ୍ଠିତ ଯଜ୍ଞ କୁଣ୍ଡରୁ ଦ୍ରୌପଦୀ ଓ ଅଗ୍ନିବେଦୀରୁ ଧୃଷ୍ଟଦ୍ୟୁମ୍ନ ଜନ୍ମ ହୋଇଥିଲେ ।

ଏହା ଶୁଣି ଶୌନକ ପଚାରିଲେ—ମହାତ୍ମନ ! ଯଜ୍ଞ କୁଣ୍ଡରୁ ଦ୍ରୌପଦୀଙ୍କର ଜନ୍ମ କିପରି ହେଲା ଓ ଧୃଷ୍ଟଦ୍ୟୁମ୍ନ ଯଜ୍ଞ ବେଦୀରୁ କିପରି ଜନ୍ମ ହେଲେ ଦୟାକରି ସେକଥା ଆମକୁ କହନ୍ତୁ ।

ମହର୍ଷି ସୂତ କହିଲେ—ଠିକ୍ ଅଛି, ମୁଁ ଏହି ପୁଣ୍ୟପ୍ରଦ ପବିତ୍ର କଥା କହୁଛି । କୃପ ଓ କୃପୀଙ୍କ କଥା ପ୍ରସଙ୍ଗରେ ମୁଁ ଦ୍ରୋଣାଚାର୍ଯ୍ୟଙ୍କ ଜନ୍ମ କଥା କହିସାରିଛି । ସେ ନିଜର ସହପାଠୀ, ବାଲ୍ୟବନ୍ଧୁ ଦ୍ରୁପଦଙ୍କ ପାଖକୁ ଧନ ପ୍ରାର୍ଥନା କରିବାକୁ ଯାଇ ଅପମାନିତ ହୋଇ ଫେରିଥିଲେ । ଦ୍ରୁପଦ ତାଙ୍କୁ କହିଥିଲେ—ରାଜା ହିଁ ରାଜାର ମିତ୍ର ହୋଇପାରେ ।

ମହାରାଜ ଦ୍ରୁପଦଙ୍କର ଏହି କଟୁ କଥା ଧନୁର୍ଦ୍ଧର ଦ୍ରୋଣଙ୍କୁ ବହୁତ ବାଧିଥିଲା । ମନେ ମନେ ସେ ଏହାର ପ୍ରତିଶୋଧ ନେବେ ବୋଲି ସ୍ଥିର କଲେ । ହସ୍ତିନାପୁରକୁ ଆସି

ସେ ଧୃତରାଷ୍ଟ୍ର ଓ ପାଣ୍ଡୁଙ୍କ ପୁତ୍ରମାନଙ୍କର ଧନୁର୍ବେଦର ଅଧ୍ୟାପକ ହେଲେ । ଯେତେବେଳେ ରାଜକୁମାରମାନଙ୍କର ଧନୁର୍ବିଦ୍ୟା ଶିକ୍ଷା ଶେଷ ହେଲା ସେତେବେଳେ ଗୁରୁଦକ୍ଷିଣା ଦେବା କଥା ଉଠିଲା । ଦ୍ରୋଣାଚାର୍ଯ୍ୟ କହିଲେ—ତୁମେ ସମସ୍ତେ ଯାଇ ରାଜା ଦ୍ରୁପଦଙ୍କୁ ତାଙ୍କ ମନ୍ତ୍ରୀଙ୍କ ସହିତ ବାନ୍ଧି ମୋ' ପାଖକୁ ନେଇଆସ । ଏହି ଦକ୍ଷିଣା ଦେଲେ ମୋ ପାଇଁ ତାହା ଯଥେଷ୍ଟ ହେବ ।

ଏହା ଶୁଣିବାମାତ୍ରେ କୁମାରମାନେ ଶୀଘ୍ର ଚାଲିଗଲେ । ରାଜା ଦ୍ରୁପଦଙ୍କର ସୈନ୍ୟମାନଙ୍କୁ ପରାସ୍ତ କରି ଅବଲୀଳାକ୍ରମେ ଦ୍ରୁପଦଙ୍କୁ ବନ୍ଦୀ କରି ଦ୍ରୋଣାଚାର୍ଯ୍ୟଙ୍କ ପାଖକୁ ନେଇଆସିଲେ । ଆଗରେ ବନ୍ଦୀ ଦ୍ରୁପଦଙ୍କୁ ଦେଖି ନିଜର ଦାଢ଼ୀକୁ ସାଉଁଳି ସାଉଁଳି ମୁରୁକେଇ ହସି ଆଚାର୍ଯ୍ୟ ଦ୍ରୋଣ କହିଲେ - ରାଜନ୍ ! ବାଲ୍ୟକାଳରେ ଆପଣଙ୍କର ଓ ମୋର ମିତ୍ରତା ଥିଲା । ଏହି କଥା ମନେପକାଇ ଦେବା ପାଇଁ ଯେତେବେଳେ ଆପଣଙ୍କ ପାଖକୁ ଯାଇଥିଲି, ସେତେବେଳେ ଆପଣ କହିଥିଲେ—ପିଲାଦିନ କଥା ଭୁଲିଯାଅ । ସେତେବେଳେ ଆମ ଦୁହିଁଙ୍କ ଅବସ୍ଥା ଏକ ଥିଲା । ଏବେ ମୁଁ ରାଜା, ତୁମେ ଭିକ୍ଷୁକ । ତେଣୁ ଏବେ ତୁମର ଓ ମୋର ମୈତ୍ରୀ କିପରି ସମ୍ଭବ ? ରାଜାର ମିତ୍ରତା ରାଜା ସହିତ ହୋଇ-ପାରେ ।

ମହାରାଜ ! ଆପଣଙ୍କ ସହିତ ପୁଣି ମିତ୍ରତା କରିବା ପାଇଁ ମୋର ଇଚ୍ଛା ହେଉଛି । କିନ୍ତୁ ମୁଁ ରାଜା ନ ହେଲେ ମିତ୍ରତା କିପରି ହେବ ? ତେଣୁ ମୁଁ ଆପଣଙ୍କୁ ବନ୍ଦୀ କରି ଆଣିଛି । ଆପଣଙ୍କର ବିସ୍ତୃତ ରାଜ୍ୟ ଗଙ୍ଗାନଦୀର ଦକ୍ଷିଣ ଓ ଉତ୍ତର ଦିଗରେ ଉଭୟ ତଟକୁ ବିସ୍ତୃତ ହୋଇ ରହିଛି । ଆଜିଠାରୁ ଆପଣ ଦକ୍ଷିଣ ପଟେ ଥିବା ରାଜ୍ୟରେ ରାଜତ୍ୱ କରନ୍ତୁ । ମୁଁ ଉତ୍ତର ତୀରରେ ଥିବା ରାଜ୍ୟରେ ରାଜତ୍ୱ କରିବି । ଏହାଦ୍ୱାରା ମୋ' ସହିତ ଆପଣଙ୍କର ପୁଣି ମିତ୍ରତା ସ୍ଥାପିତ ହୋଇଯିବ । ମୁଁ ଠିକ୍ କହିଲି କି ନାହିଁ ?

ଦ୍ରୁପଦ ଅତ୍ୟନ୍ତ ଲଜ୍ଜିତ ହେଲେ । ସେ ପରାସ୍ତ ହୋଇଥିଲେ ଓ ଦ୍ରୋଣଙ୍କ ଦ୍ୱାରା ବନ୍ଦୀ ହୋଇଥିଲେ ଓ ଅଧୀନରେ ଥିଲେ ; ତେଣୁ ସେ ଲାଜରେ ଅତ୍ୟନ୍ତ ବିମର୍ଷ ହୋଇ କହିଲେ—ବ୍ରହ୍ମନ୍ ! ଆପଣଙ୍କ ବୁଦ୍ଧି ବିଶାଳ । ଆପଣ ଫଳବତୀ ବିଦ୍ୟାର ଅଧିକାରୀ । ଆପଣଙ୍କ ଗୁଣ ଅପାର । ମୁଁ ଆପଣଙ୍କଦ୍ୱାରା ପରାସ୍ତ ହୋଇଛି । ଏବେ ଆପଣ ଯେପରି କହିବେ ମୁଁ ସେହିପରି କରିବି ।

ଦ୍ରୁପଦଙ୍କର ଏପରି ବିନମ୍ର ପୂର୍ଣ୍ଣ କଥା ଶୁଣି ଦ୍ରୋଣାଚାର୍ଯ୍ୟ ପୁର୍ବ ପରି ମିତ୍ରତା ସ୍ଥାପନ କଲେ ଓ ତାଙ୍କୁ ଛାଡ଼ିଦେଲେ । ଦ୍ରୋଣାଚାର୍ଯ୍ୟଙ୍କୁ କୃତଜ୍ଞତା ଜଣାଇ ରାଜା ଦ୍ରୁପଦ ନିଜ ନଗରକୁ ଫେରିଗଲେ । କିନ୍ତୁ ଦ୍ରୋଣାଚାର୍ଯ୍ୟଙ୍କ ଦ୍ୱାରା ପରାଜିତ ହୋଇଥିବାରୁ ତାଙ୍କର ଅଶେଷ ଆତ୍ମଗ୍ଳାନି ହେଲା । ପ୍ରେମ ଯେପରି ପ୍ରେମଦ୍ୱାରା ବଢ଼େ ଦ୍ୱେଷ ସେହିପରି ଦ୍ୱେଷ ଦ୍ୱାରା ବଢ଼େ । ତେଣୁ ଦ୍ରୁପଦ ମନ ଭିତରେ ଦ୍ରୋଣାଚାର୍ଯ୍ୟଙ୍କ ଏହି ଅପମାନର

ପ୍ରତିଶୋଧ ନେବା ବିଷୟରେ ଉପାୟ ଖୋଜିବାକୁ ଲାଗିଲେ । ସେ ଭାବିଲେ—ମୁଁ ଯୁଦ୍ଧରେ ଦ୍ରୋଣାଚାର୍ଯ୍ୟଙ୍କୁ ପରାସ୍ତ କରିପାରିବି ନାହିଁ । ଏକରେ ସେ ଧନୁର୍ବିଦ୍ୟାରେ ବିଶାରଦ, ଦ୍ୱିତୀୟରେ ସେ ପରଶୁରାମଙ୍କଠାରୁ ଦିବ୍ୟାସ୍ତ୍ର ପ୍ରୟୋଗର ଶିକ୍ଷା ଲାଭ କରିଛନ୍ତି । ପୁଣି କୌରବ ଓ ପାଣ୍ଡବ ତାଙ୍କର ଶିଷ୍ୟ । ତେଣୁ ଯୁଦ୍ଧରେ ଦେବେନ୍ଦ୍ର ମଧ୍ୟ ତାଙ୍କର ସମ୍ମୁଖୀନ ହୋଇ ପାରିବେ ନାହିଁ । କୌଣସି ପ୍ରକାର ମନ୍ତ୍ର ବଳରେ ମୁଁ ତାଙ୍କର ପ୍ରତିଶୋଧ ନେଇ-ପାରେ । କିନ୍ତୁ ଅଭିଚାର ଯଜ୍ଞ କରିବା ପାଇଁ ମୁଁ ଆଚାର୍ଯ୍ୟ କେଉଁଠୁ ପାଇବି ? ଏହିପରି ଭାବି ରାଜା ଅତ୍ୟନ୍ତ ଚିନ୍ତାଗ୍ରସ୍ତ ହୋଇପଡ଼ିଲେ । ମନ୍ତ୍ରିମାନଙ୍କ ଉପରେ ରାଜ୍ୟଭାର ଦେଇ ରାଜା ଦ୍ରୁପଦ ବନକୁ ବନ ବୁଲି ବିଦ୍ୱେଷ ଅଗ୍ନିରେ ସନ୍ତପ୍ତ ହୋଇ ଆଚାର୍ଯ୍ୟ ଅନ୍ୱେଷଣ କରିବାକୁ ଲାଗିଲେ ।

ଦିନେ ବୁଲି ବୁଲି ସେ ଏକ ସୁନ୍ଦର ଆଶ୍ରମ ପାଖରେ ପହଞ୍ଚିଲେ । ସେଠାରେ ଦୁଇଜଣ ତେଜସ୍ୱୀ ମୁନିଙ୍କୁ ଦେଖି ଦ୍ରୁପଦ ସେମାନଙ୍କ ପାଖକୁ ଗଲେ । ସେମାନଙ୍କ ଦ୍ୱାରା ନିଜର କାର୍ଯ୍ୟ ସିଦ୍ଧି ହେବ ବୋଲି ତାଙ୍କ ମନରେ ବିଶ୍ୱାସ ଜାତ ହେଲା । ତେଣୁ ସେ ମନଦେଇ ସେହି ମୁନି ଦୁହିଁଙ୍କ ସେବା ଶୁଶ୍ରୂଷା କରିବାକୁ ଲାଗିଲେ । ସେ ଦୁଇମୁନିଭାଇଙ୍କ ନାମ ଥିଲା ଯାଜ ଓ ଉପଯାଜ, ଉପଯାଜ କନିଷ୍ଠ ଥିଲେ ମଧ୍ୟ ଦୁହିଁଙ୍କ ମଧ୍ୟରେ ଅଧିକ ତେଜସ୍ୱୀ ଥିଲେ ।

ଦିନେ ଯାଜ ନ ଥିବା ସମୟରେ ଉପଯାଜଙ୍କୁ ବିଧିବତ୍ ପୂଜା କରି ଦ୍ରୁପଦ କହିଲେ—ବ୍ରହ୍ମନ୍ ! ଦ୍ରୋଣାଚାର୍ଯ୍ୟଙ୍କ ସହ ମୋର କଳି ହୋଇଛି । ସେ ମୋତେ ଅତ୍ୟନ୍ତ ଅପମାନିତ କରିଛନ୍ତି । ସେହି ଅପମାନର ଅଗ୍ନିରେ ମୁଁ ଅହର୍ନିଶି ଜଳୁଛି । ବ୍ରହ୍ମନ୍ ! ମୁଁ ଯୁଦ୍ଧରେ ଦ୍ରୋଣାଚାର୍ଯ୍ୟଙ୍କୁ ଜୟ କରି ପାରିବି ନାହିଁ । ତେଣୁ ଆପଣଙ୍କ ଶରଣ ପଶିଛି । ଆପଣ ମୋ'ପାଇଁ ଏକ ଯଜ୍ଞ କରନ୍ତୁ । ମୋର ପୁଅଟିଏ ହେଉ, ଯେ ଦ୍ରୋଣାଚାର୍ଯ୍ୟଙ୍କୁ ବଧ କରିପାରିବ ।

ଏହା ଶୁଣି ଉପଯାଜ ମଧୁର ସ୍ୱରରେ କହିଲେ—ରାଜନ୍ ! ଆପଣ ମୋତେ ଏତେ ନୀଚ ଭାବୁଛନ୍ତି ? ମୋ ଦ୍ୱାରା ଏହି ଜଘନ୍ୟ କାର୍ଯ୍ୟ ହୋଇପାରିବ ନାହିଁ । ଧୈର୍ଯ୍ୟ ନ ହରାଇ ଦ୍ରୁପଦ ପୁଣି କହିଲେ—ବ୍ରହ୍ମନ୍ ! ମୁଁ ଆପଣଙ୍କୁ ଦଶ କୋଟି ଗାଈ ଦେବି । ଆଉ ଯାହା ମାଗିବେ ତାହା ଦେବି ।

ରାଜାଙ୍କ କଥା ଶୁଣି ଉପଯାଜ କହିଲେ—ରାଜନ୍ ! ଆପଣ ମୋତେ ପ୍ରଲୋଭିତ କରନ୍ତୁ ନାହିଁ । ଲୋଭରେ ପଡ଼ି ମୁଁ କୌଣସି ନୀଚ କାର୍ଯ୍ୟ କରିବି ନାହିଁ ।

ଏହା ଶୁଣି ରାଜା ଦ୍ରୁପଦ ମର୍ମାହତ ହୋଇପଡ଼ିଲେ; କିନ୍ତୁ ସେ ନିରାଶ ହେଲେ ନାହିଁ । ସେ ଅଧିକ ସାବଧାନତାର ସହିତ ଉପଯାଜଙ୍କର ସେବା କରିବାକୁ ଲାଗିଲେ ।

ମହର୍ଷି ସୂତ କହିଲେ—ମୁନିଗଣ ! ସେବା ଏପରି ଏକ କାର୍ଯ୍ୟ ଯେ ତାହାଦ୍ୱାରା ଭଗବାନ ମଧ୍ୟ ବଶ ହୋଇଯାଆନ୍ତି । ଯେ, କୌଣସି ଉପାୟରେ ବଶୀଭୂତ ହୁଏ ନାହିଁ ସେ ସେବାଦ୍ୱାରା ହିଁ ବଶୀଭୂତ ହୋଇଯାଏ । ସତୀ ନିଜର ପତିକୁ ସେବାଦ୍ୱାରା ହିଁ ବଶୀଭୂତ କରିଥାଏ । ସତ୍‌ସେବକ ନିଜର ପ୍ରଭୁଙ୍କୁ ସେବାଦ୍ୱାରା ହିଁ ଅନୁଚିତ କାର୍ଯ୍ୟରୁ ନିବୃତ୍ତ କରେ ଓ ଉଚିତ କାର୍ଯ୍ୟରେ ପ୍ରବର୍ତ୍ତିତ କରେ । ସେବକ ସେବା କରୁ କରୁ ସ୍ୱାମୀ ମଧ୍ୟ ହୋଇଯାଏ ଏବଂ ସ୍ୱାମୀ ତାର ଅଧୀନ ହୋଇଯାଏ । ହୃଦୟର ସର୍ବସ୍ୱ ସମର୍ପଣ କରି ଯେ ସେବା କରିଥାଏ, ସେ କେବେ ସ୍ୱାର୍ଥ ସିଦ୍ଧି ନିମନ୍ତେ ସେବା କଲେ ତାହା ମଧ୍ୟ ବ୍ୟର୍ଥ ହୁଏ ନାହିଁ । ଦ୍ରୁପଦଙ୍କ ସେବାରେ ପ୍ରସନ୍ନ ହୋଇ ଦିନେ ଉପଯାଜ କହିଲେ—ରାଜନ୍ ! ଆପଣ ଏତେ ମନୋଯୋଗ ସହକାରେ କାହିଁକି ମୋର ସେବା କରୁଛନ୍ତି ? ମୋ'ଠାରୁ ସେପରି କାର୍ଯ୍ୟର ଆଶା ରଖନ୍ତୁ ନାହିଁ ।

ରାଜା କହିଲେ—ବ୍ରହ୍ମନ୍ ! ଏବେ ମୁଁ କୁଆଡ଼େ ଆଉ ଯିବି ? ମୁଁ ତ' ଆପଣଙ୍କ ପାଦତଳେ ଶରଣ ପଶିଛି । ଆପଣ ମୋତେ ରଖନ୍ତୁ ନୋହିଲେ ପାଦରେ ଠେଲିଦିଅନ୍ତୁ । ଆପଣ ନିଜେ ସେ ଯଜ୍ଞ ନ କଲେ ବି ତାହା କରିବା ପାଇଁ କିଛି ଉପାୟ ବତାଇଦିଅନ୍ତୁ ।

ମୁନି ଉପଯାଜ କହିଲେ—ହେଉ ମହାରାଜ ! ମୁଁ ଆପଣଙ୍କୁ ଉପାୟ ବତାଇଦେଉଛି । ମୋର ବଡ଼ ଭାଇ ଯାଜ ଏହି କାର୍ଯ୍ୟ କରିବା ପାଇଁ ସମର୍ଥ । ମୋର ଅନୁମାନ ଏତେ ପରିମାଣ ଦକ୍ଷିଣା ପାଇବା କଥା ଜାଣିଲେ ସେ ଉଚିତ ଅନୁଚିତ ବିଚାର କରିପାରିବେ ନାହିଁ । ଥରେ ଆମେ ଦୁଇ ଭାଇ କୌଣସି ଏକ ଜାଗାକୁ ଯାଉଥିଲୁ । ବାଟରେ ଗୋଟିଏ ଫଳ ପଡ଼ିଥିଲା । ମୋ'ଭାଇ ସେ ଫଳଟିକୁ ନେଇ ଗ୍ରହିବାକୁ ଲାଗିଲେ । ଫଳଟି ପଡ଼ିଥିବା ପବିତ୍ର କି ଅପବିତ୍ର ଫଳଟି ଗ୍ରାହ୍ୟ କି ଅଗ୍ରାହ୍ୟ ତାହା ସେ ବିଚାର କରିନଥିଲେ । ପବିତ୍ରତା ଅପବିତ୍ରତା କଥା ନ ବିଚାରି କୌଣସି ଦ୍ରବ୍ୟକୁ ଯେ ଗ୍ରହଣ କରେ ତା'ପାଇଁ ଉଚିତ ଅନୁଚିତ ବୋଲି କିଛି ନାହିଁ ! ପିଲାଦିନେ ଆମେ ଦୁଇଭାଇ ପଢ଼ୁଥିବାବେଳେ ଅନ୍ୟମାନେ ଛାଡ଼ିଯାଇଥିବା ଖାଦ୍ୟ ମଧ୍ୟ ଖାଇଦେଉଥିଲେ । ସ୍ୱାଦିଷ୍ଟ ଖାଦ୍ୟ ଦ୍ରବ୍ୟ ମିଳିଲେ ସେ ଉଚ୍ଛିଷ୍ଟ କି ନୁହେଁ ତାହା ବିଚାର କରୁ ନ ଥିଲେ । ଏଥିରୁ ମୋର ଅନୁମାନ ହେଉଛି, ସେ ନିଶ୍ଚୟ ତୁମର ଅଭିଚାର ଯଜ୍ଞ କରିପାରିବେ ।

ଉପଯାଜଙ୍କର ଏପରି କଥା ଶୁଣି ମହାରାଜ ଦ୍ରୁପଦଙ୍କର ମନ ଭିତରେ ଯାଜଙ୍କ ପ୍ରତି ଘୃଣା ଆସିଲା । କିନ୍ତୁ ସେ କ'ଣ କରିଥାନ୍ତେ ? ସ୍ୱାର୍ଥପର ଲୋକ ତ ଦୋଷାଦୋଷ ବିଚାର କରେ ନାହିଁ । କାରଣ, ସ୍ୱାର୍ଥ ସିଦ୍ଧି ହିଁ ତା'ର ଲକ୍ଷ୍ୟ । ଉପଯାଜଙ୍କ ପରାମର୍ଶ ଅନୁସାରେ ସେ ଯାଜଙ୍କ ପାଖକୁ ଗଲେ ।

ଯାଜଙ୍କ ପାଖରେ ପହଞ୍ଚି ସେ ମୂଳରୁ ଶେଷ ପର୍ଯ୍ୟନ୍ତ ସବୁ କହି ପ୍ରାର୍ଥନା କଲେ—ପ୍ରଭୁ ! ଆପଣ ସର୍ବସମର୍ଥ । ମୋ'ପାଇଁ ଏପରି ଏକ ଯଜ୍ଞ କରନ୍ତୁ, ଯେଉଁଥିରୁ ଦ୍ରୋଣଙ୍କୁ

ମାରଦେବା ପାଇଁ ସମର୍ଥ ପୁତ୍ର ମୋର ଜନ୍ମ ହେବ । ମୁଁ ଆପଣଙ୍କୁ ଏକ ଅର୍ବୁଦ ଗାଈ ଦକ୍ଷିଣା ଦେବ ।

ମୁନିବର ଯାଜ ରାଜାଙ୍କ ପ୍ରାର୍ଥନା ଆନନ୍ଦରେ ସ୍ୱୀକାର କଲେ । ଦ୍ରୁପଦ ଆନନ୍ଦିତ ହେଲେ । ଯାଜମୁନି ଯେଉଁ ଯେଉଁ ସାମଗ୍ରୀ ଏକତ୍ରିତ କରିବାକୁ କହିଲେ ସେ ଅଳ୍ପ ସମୟ ମଧ୍ୟରେ ସେଗୁଡ଼ିକ ସଂଗ୍ରହ କଲେ । କାର୍ଯ୍ୟ ବଡ଼ ଆକାରରେ ହେବାର ଥିଲା । ସେଥିପାଇଁ ସେ ଉପଯାଜଙ୍କୁ ମଧ୍ୟ ନିମନ୍ତ୍ରଣ କଲେ ଓ ସାହାଯ୍ୟ କରିବା ପାଇଁ ଅନୁରୋଧ କଲେ । ଉପଯାଜଙ୍କର ଇଚ୍ଛା ନ ଥିଲା । ତଥାପି ବଡ଼ଭାଇଙ୍କୁ ସମ୍ମାନ ଦେଖାଇ ଓ ଦ୍ରୁପଦଙ୍କ ଆଗ୍ରହ ଦେଖି ସେ କାର୍ଯ୍ୟରେ ସହଯୋଗ କଲେ । ବିଧିବିଧାନ ପୂର୍ବକ ଯଜ୍ଞ ଆରମ୍ଭ ହେଲା । ଯଜ୍ଞ ଶେଷରେ ମୁନି ଦ୍ରୁପଦଙ୍କ ରାଣୀଙ୍କୁ ଡାକି କହିଲେ—ଦେବି ! ତୁମେ ସଙ୍ଗେ ସଙ୍ଗେ ଏଠାକୁ ଆସି ଯଜ୍ଞର ଏହି ସୁମିଷ୍ଟ ଦଧି ପାନକର ।

ରାଣୀ କହିଲେ—ବ୍ରହ୍ମନ୍ ! ଆଜି ମୁଁ ବହୁତ ଡେରିଯାଏ ଶୋଇପଡ଼ିଲି । ଏବେ ମୁଁ ମୁହଁ ଧୋଇନି କି ଦାନ୍ତ ଘଷିନାହିଁ । ରାତିର ଅଙ୍ଗରାଗ ଚନ୍ଦନାଦି ମଧ୍ୟ ଏପର୍ଯ୍ୟନ୍ତ ଶରୀରରେ ଲାଗିଛି । ବର୍ତ୍ତମାନ ମୁଁ ନିତ୍ୟକର୍ମ କରିବାକୁ ଯାଉଛି । ସ୍ନାନାଦି ସାରି ଆପଣଙ୍କ ପାଖକୁ ଆସିବି । ଆପଣ ଅପେକ୍ଷା କରନ୍ତୁ ।

ମହାରାଣୀଙ୍କ କଥାରେ ମହାମୁନି ଯାଜ ଅପମାନିତ ବୋଧ କଲେ ଓ କହିଲେ — ଦେଖ ରାଣୀ ! ମୁଁ ବହୁତ ପରିଶ୍ରମ କରିଛି ଓ ଅତି କଠୋର ବିଧିବିଧାନ ସହକାରେ ଏହି ହବି ପ୍ରସ୍ତୁତ କରିଛି । ଯଜ୍ଞ କାର୍ଯ୍ୟରେ ବିଳମ୍ବ କରିବା ଉଚିତ ନୁହେଁ । ତୁମେ ସଙ୍ଗେ ସଙ୍ଗେ ଏହି ହବିକୁ ଗ୍ରହଣ କର ନୋହିଲେ କ'ଣ ହେବାକୁ ଯାଉଛି ତାହା ଦେଖୁଥାଅ ।

ଏହା କହି ମୁନି ଅଭିମନ୍ତ୍ରିତ ହବିକୁ ସନ୍ତାନ ସଂକଳ୍ପ କରି ସଙ୍ଗେ ସଙ୍ଗେ ଯଜ୍ଞ ଅଗ୍ନିକୁ ପକାଇଦେଲେ । ତାହା ଅଗ୍ନିରେ ପଡ଼ିବାମାତ୍ରେ ଅଗ୍ନିଭିତରୁ ଏକ ମହାତେଜସ୍ୱୀ ପୁରୁଷ କବଚ ଧାରଣ କରି ବାହାରି ଆସିଲେ । ପରମ ତେଜସ୍ୱୀ ସେହି ପୁରୁଷ ନିର୍ଭୟରେ ଚାରିଆଡ଼କୁ ଗର୍ଜିବାକୁ ଲାଗିଲା । ଠିକ୍ ଏହା ପରେ ପରେ ଏକ ରୂପବତୀ କନ୍ୟା ସେହି ଯଜ୍ଞକୁଣ୍ଡରୁ ଉତ୍ପନ୍ନ ହେଲା । ତା'ର ବର୍ଣ୍ଣ କୃଷ୍ଣ କମଳ ପରି ଥିଲା । ସୌନ୍ଦର୍ଯ୍ୟରେ ସେ ଥିଲା ଅଦ୍ୱିତୀୟା । ଋଷିମାନେ ପୁଅର ନାମ ଦେଲେ ଧୃଷ୍ଟଦ୍ୟୁମ୍ନ ଓ ଝିଅ ନାମ କୃଷ୍ଣା ରଖିଲେ । ଦ୍ରୁପଦଙ୍କର ଝିଅ ହୋଇଥିବାରୁ ସେ ଦ୍ରୌପଦୀ ନାମରେ ନାମିତା ହେଲେ । ଧୃଷ୍ଟଦ୍ୟୁମ୍ନ ଜନ୍ମ ହେବା ପରେ ପରେ ଆକାଶ ବାଣୀ ଶୁଣାଗଲା—ଏହି ପାଞ୍ଚାଳର ଯଶ ବୃଦ୍ଧି କରିବ ଓ ଦ୍ରୋଣଙ୍କୁ ବଧ କରିବ ।

ଦ୍ରୁପଦଙ୍କ ରାଣୀ ଯଜ୍ଞକୁଣ୍ଡରୁ ଉତ୍ପନ୍ନ ଅତ୍ୟନ୍ତ ସୁନ୍ଦର ଓ ସୁକୁମାର ପୁତ୍ରପୁତ୍ରୀଙ୍କୁ ପାଇ ଖୁବ୍ ପ୍ରସନ୍ନ ହେଲେ । ସେ ହାତଯୋଡ଼ି ଋଷିମାନଙ୍କୁ କହିଲେ—ବିପ୍ରଗଣ ! ଏ ଦୁଇ

ପୁତ୍ର ପୁତ୍ରୀ ଯେମିତ ମୋତେ ହିଁ ମାତା ବୋଲି ଭାବିବେ ସେହି ଆଶୀର୍ବାଦ ଦିଅନ୍ତୁ । ଅନ୍ୟ କାହା ପ୍ରତି ଏମାନଙ୍କର ମାତୃଭାବ ନ ହେଉ ।

ବ୍ରାହ୍ମଣମାନେ କହିଲେ—ତାହା ହିଁ ହେବ । ସେହି ସମୟଠାରୁ ପିଲା ଦୁଇଟି ଦ୍ରୁପଦଙ୍କର ବଡ଼ରାଣୀଙ୍କୁ ନିଜର ମାଆ ବୋଲି ମାନିବାକୁ ଲାଗିଲେ ।

ଧୃଷ୍ଟଦ୍ୟୁମ୍ନ ବଡ଼ ହେବା ପରେ ଦ୍ରୁପଦ ତାଙ୍କୁ ଦ୍ରୋଣାଚାର୍ଯ୍ୟଙ୍କ ପାଖକୁ ନେଇ ନିବେଦନ କରିଲେ—ଆଚାର୍ଯ୍ୟ ପ୍ରବର ! ଏ ବାଳକ ଆପଣଙ୍କର ସନ୍ତାନ ତୁଲ୍ୟ । ଏହାକୁ ଆପଣ ବିଧିବତ୍ ଧନୁର୍ବିଦ୍ୟାଶିକ୍ଷା ଦିଅନ୍ତୁ ।

ଦ୍ରୋଣାଚାର୍ଯ୍ୟ ତ' ସବୁ କଥା ଜାଣିଥିଲେ । 'ମୋତେ ମାରିବାକୁ ଏ ଯଜ୍ଞକୁଣ୍ଡରୁ ଉତ୍ପନ୍ନ ହୋଇଛି'—ଏହା ତାଙ୍କୁ ଅବିଦିତ ନ ଥିଲା । ତଥାପି ସେ ଆଚାର୍ଯ୍ୟର ଗୌରବ ରକ୍ଷାକରି ତାଙ୍କୁ ଧନୁର୍ବିଦ୍ୟା ଶିକ୍ଷା ଦେଲେ । କୃଷ୍ଣା ବଡ଼ ହେବା ପରେ ପାଞ୍ଚ ପାଣ୍ଡବଙ୍କର ପତ୍ନୀ ହୋଇଥିଲେ ।

ମହର୍ଷି ସୂତ ପୁଣି କହିଲେ—ମୁନିଗଣ ! ଅତି ସଂକ୍ଷେପରେ ମୁଁ ଆପଣମାନଙ୍କୁ ଧୃଷ୍ଟଦ୍ୟୁମ୍ନ ଓ ଦ୍ରୌପଦୀଙ୍କର ଉତ୍ପତ୍ତିକଥା କହିଲି । ଏବେ ଆପଣମାନେ ଆଉ କ'ଣ ଶୁଣିବା ପାଇଁ ଇଚ୍ଛା କରୁଛନ୍ତି ? ଧୃଷ୍ଟଦ୍ୟୁମ୍ନଙ୍କ ପୁତ୍ର ହେଲେ ଧୃଷ୍ଟକେତୁ । ଏହିପରି ଭାବେ ପାଞ୍ଚାଳବଂଶ ବଢ଼ି ଚାଲିଥିଲା ।

ଶୌନକ ପଚାରିଲେ ମହାଭାଗ ! ବର୍ତ୍ତମାନ ଆମକୁ କୌରବ ବଂଶ କଥା କହନ୍ତୁ । ଏ କୁରୁମାନେ କିଏ ?

ମହର୍ଷି ସୂତ କହିଲେ—ମହାଶୟ ! ଏହି କୁରୁଗଣ ଥିଲେ ଭରତବଂଶୀୟ । ମହାରାଜ ବୃହତ୍କ୍ଷତ୍ରଙ୍କ ପୁତ୍ର ହସ୍ତୀଙ୍କର ଜ୍ୟେଷ୍ଠ ପୁତ୍ର ଅଜମୀଢ଼ଙ୍କର ଅନେକ ଗୁଣୀ ଥିଲେ । ଏହାଙ୍କର କେତେକ ପୁଅଙ୍କର ବଂଶାବଳୀ ମୁଁ ଆଗରୁ ବର୍ଣ୍ଣନା କରିସାରିଛି । ଅଜମୀଢ଼ଙ୍କର ଋକ୍ଷ ନାମରେ ଏକ ପୁଅ ଥିଲା । ତାଙ୍କର ପୁତ୍ର ସମ୍ବରଣ ଥିଲେ ଜଣେ ଯଶସ୍ୱୀ ଓ ଧର୍ମାତ୍ମା ପୁରୁଷ । ସେ ସୂର୍ଯ୍ୟଙ୍କ କନ୍ୟା ତପତୀଙ୍କୁ ବିବାହ କରିଥିଲେ । କୁରୁକୁଳର ସଂସ୍ଥାପକ ମହାରାଜା କୁରୁ ତପତୀଙ୍କ ଗର୍ଭରୁ ଜନ୍ମ ଗ୍ରହଣ କରିଥିଲେ । ମହାରାଜ ସମ୍ବରଣ ସୂର୍ଯ୍ୟ ଭଗବାନଙ୍କର ଆରାଧନା କରି ତାଙ୍କର କନ୍ୟା ତପତୀଙ୍କୁ ପାଇଥିଲେ । ସେଥିପାଇଁ କୌରବ ଓ ପାଣ୍ଡବମାନେ ତାପତ୍ୟ ନାମରେ ଖ୍ୟାତିଲାଭ କରିଥିଲେ ।

ଏହା ଶୁଣି ଶୌନକ ପଚାରିଲେ—ମହାଭାଗ ! ଆପଣ ଆମକୁ ପରମ ଧର୍ମାତ୍ମା ମହାରାଜ ସମ୍ବରଣଙ୍କ କଥା ବିସ୍ତୃତଭାବେ କୁହନ୍ତୁ । ତପତୀଙ୍କ ସହିତ ତାଙ୍କର ବିବାହ କିପରି ହେଲା ।

ମହର୍ଷି ସୂତ କହିଲେ—ଠିକ୍ ଅଛି ମହାଶୟ ! ବର୍ତ୍ତମାନ ମୁଁ ସମ୍ବରଣ ଓ ତପତୀଙ୍କ କଥା ଆପଣମାନଙ୍କୁ କହୁଛି । ସାବଧାନ ହୋଇ ଆପଣମାନେ ଶୁଣନ୍ତୁ ।

## ଛପ୍‌ପୟ

ହସ୍ତୀସୁତ ଅଜମୀଢ ନୃପତି କେ ଋକ୍ଷ ଅପର ସୁତ ।
ତାସୁ ପୁତ୍ର ସମ୍ବରଣ ତେଜ-ତପ ପରମ କୀର୍ତ୍ତିଯୁତ ॥
ନୃପ ବଡ଼ଭାଗୀ ପରମ ସେନ ସଙ୍ଗ ମୃଗୟା ହିତ ବନ ।
ଗୟେ ପ୍ରକୃତି ସୌନ୍ଦର୍ଯ୍ୟ ନିରଖି ପ୍ରମୁଦିତ ନୃପ କୋ ମନ ॥
ଲକ୍ଷ୍ୟୋ ବିଶାଲ ବରାହ ବନ, ଏକାକୀ ପୀଛେ କୟୋ ।
ଦୌରତ୍ ଠୋକର ଖାୟ କେଁ,ଗିର୍‌ୟୋ ତୁରତ ହୟ ମରିଗୟୋ ॥



# ମହାରାଜା ସମ୍ବରଣଙ୍କ କଥା

ଧୃଷ୍ଟଦ୍ୟୁମ୍ନାଦ୍ ଧୃଷ୍ଟକେତୁର୍ଭାର୍ଯ୍ୟାଃ ପଞ୍ଚାଲକା ଇମେ ।
ଯୋଽଜମୀଢସୁତୋ ହ୍ୟନ୍ୟ ଋକ୍ଷଃ ସମ୍ବରଣସ୍ତତଃ ॥

(ଭାଗ—୯ସ୍କ, ୨୨ଅ-୩ଶ୍ଲୋ)

## ଛପ୍ପୟ

ପାଁଇ ପିଆଦେ ଅଶ୍ୱହୀନ ନୃପ ବନ ମହିଁ ଡୋଲେଁ ।
ପରମ ମନୋହର ପ୍ରାନ୍ତ ମଧୁର ସୁର ଶୁକ ପିକ ବୋଲେଁ ।
ଶୀତଳ ମନ୍ଦ ସୁଗନ୍ଧ ପବନ ବହି ସୁଖ ଉପଜାୱେଁ ।
ହରିତ ଦୂବ ଦଳ ନୀର ଝରଣି ନୃପ ନୟନ ଜୁଡ଼ାୱେଁ ॥
ଝରଣିଁ ନିଭୃତ ନିକୁଞ୍ଜ ମହିଁ, ନାରୀ ନୟନା ନନ୍ଦିନୀ ।
କରତ ପ୍ରକାଶିତ ପ୍ରାନ୍ତକୁଁ, କନକଲତା ସମ କାମିନୀ ॥

ବିପଦ ପଡ଼ିଲେ ଆମେ ଅଧୀର ହୋଇପଡ଼ୁ । କ୍ଷତିହେଲେ ଆମେ ଦୁଃଖିତ ହେଉ । କିନ୍ତୁ ମଙ୍ଗଳମୟ ପ୍ରଭୁ ତାଙ୍କ ସନ୍ତାନମାନଙ୍କର ଅମଙ୍ଗଳ କରନ୍ତି ନାହିଁ—ଏହା ଆମେ ଭୁଲିଯାଉ । ନିତ୍ୟ ସୁଖସ୍ୱରୂପ ଶ୍ୟାମ କାହାରିକୁ ଦୁଃଖ ଦେଇ ପାରିବେ ନାହିଁ । ସମ୍ପତ୍ତି ନିମନ୍ତେ ବିପତ୍ତି ଆସେ । ସୁଖ ପାଇଁ ଦୁଃଖ ମିଳିଥାଏ । କ୍ଷତି ହୁଏ ଲାଭ ପାଇଁ । କ୍ଷତି ହେଉଥିବା ବେଳେ ଭଗବାନଙ୍କ ଉପରେ ପୂର୍ଣ୍ଣ ବିଶ୍ୱାସ ରଖିବା ଉଚିତ ଯେ ଅଧିକ ଲାଭ ନିମିତ୍ତ ଭଗବାନ୍ ଏହି ସାମୟିକ କ୍ଷତି ଆଣିଛନ୍ତି ।

ମହର୍ଷି ସୂତ କହିଲେ—ମୁନିଗଣ ! ଆପଣମାନେ ପୁଣ୍ୟଶ୍ଲୋକ ମହାରାଜ ସମ୍ବରଣଙ୍କ କଥା ପଚାରିଲେ । ମହାରାଜ ଋକ୍ଷଙ୍କ ପୁତ୍ର ସମ୍ବରଣ ବଡ଼ ସୁନ୍ଦର ଓ ପ୍ରିୟଦର୍ଶନ ପୁରୁଷ ଥିଲେ । ତାଙ୍କୁ ଦେଖି ପ୍ରଜାମାନେ ଶରତ ଋତୁର ପୂର୍ଣ୍ଣଚନ୍ଦ୍ରଙ୍କୁ ଦେଖି ଚକୋରମାନେ ପ୍ରମୁଦିତ ହେବାପରି ଖୁସି ହେଉଥିଲେ । ସେ ଥିଲେ ଧର୍ମାତ୍ମା, ନ୍ୟାୟପରାୟଣ, ସତ୍ୟବାଦୀ ଓ ଦୀନବତ୍ସଳ । ରୂପରେ, ଉଦାରତାରେ ଓ ଅନ୍ୟାନ୍ୟ ସମସ୍ତ ସୁଗୁଣରେ ସେ ଅଦ୍ୱିତୀୟ

ଥିଲେ । ମହାରାଜ ଥିଲେ ମୃଗୟା ପ୍ରିୟ । ଅନେକ ସମୟରେ ସେ ସୈନିକ ଓ ସେବକ-ମାନଙ୍କୁ ନେଇ ମୃଗୟା କରିବାକୁ ବଣକୁ ଯାଉଥିଲେ ।

ଦିନେ ନିଜର ମନ୍ତ୍ରୀ, ସୈନ୍ୟସାମନ୍ତ ଓ ସେବକମାନଙ୍କ ସହିତ ରାଜା ମୃଗୟା କରିବା ନିମିତ୍ତ ଏକ ରମଣୀୟ ପର୍ବତ ପ୍ରାନ୍ତକୁ ଗଲେ । ସେଠାରେ ସେ ଅନେକ ହିଂସ୍ରକ ମେଧ ପଶୁଙ୍କୁ ଶିକାର କଲେ ଓ ବଣରୁ ବଣକୁ ଆନନ୍ଦରେ ବୁଲିବାକୁ ଲାଗିଲେ । କିଛି ଦୂର ଯିବା ପରେ ମହାରାଜ ଏକ ବିଶାଳକାୟ ବାର୍ହା ଦେଖି ତା' ପଛରେ ଘୋଡ଼ା ଦଉଡ଼ାଇଲେ । ବାର୍ହା ଅତି ଦ୍ରୁତ ବେଗରେ ବାୟୁ ପରି ଦଉଡ଼ିବାକୁ ଲାଗିଲା । ରାଜା ମଧ୍ୟ ସମସ୍ତ ଶକ୍ତି ପ୍ରୟୋଗ କରି ତା' ପଛରେ ଅନୁଧାବନ କଲେ । ରାଜାଙ୍କ ଘୋଡ଼ା ଆକାଶରେ ଉଡ଼ିଲା ପରି ଦୌଡ଼ିବାକୁ ଲାଗିଲା । ସମ୍ମୁଖରେ ଏକ ବଡ଼ ପଥର ଥିଲା । ଘୋଡ଼ାଟି ସେହି ପଥରରେ ଆଘାତ ପାଇ ପଡ଼ିଗଲା ଓ ସଙ୍ଗେ ସଙ୍ଗେ ମୃତ୍ୟୁବରଣ କଲା । ରାଜା ଛିଟ୍‌କି ଯାଇ ଖଣ୍ଡେ ଦୂରରେ ବାଲି ଉପରେ ପଡ଼ିଲେ ।

ନିର୍ଜନ ବନରେ ରାଜା ଏକୁଟିଆ ବାଲି ଉପରେ ପଡ଼ି ରହିଲେ । ତାଙ୍କର ଏକମାତ୍ର ସାଙ୍ଗ ଥିଲା ଘୋଡ଼ାଟି, ସେ ବି ପଞ୍ଚତ୍ୱ ପ୍ରାପ୍ତ ହେଲା । ବାଲି ଉପରେ ପଡ଼ିଥିବାରୁ ରାଜାଙ୍କୁ ବିଶେଷ ଆଘାତ ଲାଗି ନ ଥିଲା । କିଛି ସମୟ ପରେ ସେ ଘୋଡ଼ାକୁ ସେହିଠାରେ ଛାଡ଼ି ପର୍ବତର ଏଣେ ତେଣେ ପ୍ରାକୃତିକ ଦୃଶ୍ୟ ଦେଖି ଦେଖି ବୁଲିବାକୁ ଲାଗିଲେ । ବସନ୍ତ ଋତୁ । ବନଶ୍ରୀ ସମ୍ପୂର୍ଣ୍ଣଭାବେ ସୁସଜ୍ଜିତା ହୋଇ ନିଜର ପ୍ରିୟତମଙ୍କୁ ସନ୍ତୁଷ୍ଟ କରିବା ପାଇଁ ଅପେକ୍ଷା କରି ରହିଥିଲା । ଶୀତଳ ସୁଗନ୍ଧିତ ମନ୍ଦ ମନ୍ଦ ପବନ ରହି ରହି ବହୁଥିଲା । ଝରଣାର କୁଳୁ କୁଳୁ ନାଦର ଅପୂର୍ବ ସଙ୍ଗୀତରେ ବନଭୂମି ପୂରିଉଠୁଥିଲା । ଗଛ ଉପରେ ଚଢ଼େଇମାନେ ଅବ୍ୟକ୍ତ ମଧୁର ଧ୍ୱନି କରି ରାଜାଙ୍କୁ ସ୍ୱାଗତ କଲାପରି ମନେ ହେଉଥିଲା । ପ୍ରକୃତିର ଏପରି ଅପରୂପ ସୁଷମା ଦେଖି ରାଜା ଅତ୍ୟନ୍ତ ଆନନ୍ଦ ଅନୁଭବ କରୁଥିଲେ । ମନଖୁସିରେ ସେ ଆଗକୁ ଆଗକୁ ଚାଲୁଥିଲେ । ଆଗରେ ଏକ ସୁନ୍ଦର ଶିଖର ଥିଲା । ତା' ପାଖରେ ପାରିଜାତର ଶ୍ରେଷ୍ଠ ଶ୍ରେଷ୍ଠ ବୃକ୍ଷ ଥିଲା । ସେହି ବୃକ୍ଷଗୁଡ଼ିକରୁ ଧଳା ଫୁଲଗୁଡ଼ିକ ଝଡ଼ିପଡ଼ି ମନକୁ ମନ ଭୂମି ଉପରେ ଏକ ଚାଦର ପରି ବିଛେଇ ହୋଇ ଯାଇଥିଲେ । ବୃକ୍ଷ ଗହଳରେ ରାଜା ଦେଖିଲେ ସୁବର୍ଣ୍ଣ ପ୍ରତିମା ପରି ଏକ ସୁନ୍ଦରୀ ସୁକୁମାରୀ କନ୍ୟା ବସିଛି । ତା' ଶରୀରରୁ ଏକ ଦିବ୍ୟ ତେଜ ପ୍ରକାଶ ପାଉଛି । ତାହା ଠିକ୍ ସୂର୍ଯ୍ୟଙ୍କ ତେଜ ଅଥବା ଅଗ୍ନି ଜ୍ୱାଳାର ଘନୀଭୂତ ତେଜପରି ଦେଖାଯାଉଛି । କିନ୍ତୁ ତା'ର ମୁଖମଣ୍ଡଳ ପଦ୍ମ ପରି କୋମଳ, ମୃଦୁଳ ଓ ସ୍ନିଗ୍ଧ ଜଣା ପଡ଼ୁଛି । ତାର କୁଞ୍ଚିତ କୃଷ୍ଣ କେଶ ଉଡ଼ୁଥିବା ଭ୍ରମରମାନଙ୍କ ପରି ମୁଖମଣ୍ଡଳର ଏଣେ ତେଣେ ପଡ଼ିଛି । ସୌନ୍ଦର୍ଯ୍ୟର ମୂର୍ତ୍ତିମନ୍ତ ପ୍ରତିମା ପରି ସେ ଦେଖାଯାଉଛି । ତା'ର ବିଶାଳ ଲଲାଟ ଉପରେ ଥିବା ତିଳକ ସୁବର୍ଣ୍ଣ କମଳରେ ପାଟପୋକ ବସିଥିବା ପରି ଶୋଭା ପାଉଛି । କମଳ ପରି ତାର ବଡ଼ ବଡ଼ ଆଖି ସରସ ଅନୁରାଗରେ ପୂର୍ଣ୍ଣ ହୋଇଛି । ପିଠି ଉପରେ କଳା ନାଗୁଣୀ ପରି ତାର

ବେଣୀ ଝୁଲୁଛି । ସେ ଅଳ୍ପ ଅଳ୍ପ ହସି ପ୍ରକୃତିର ସୌନ୍ଦର୍ଯ୍ୟକୁ ଅନୁରାଗ ସହକାରେ ଦେଖିବାରେ ବ୍ୟସ୍ତ ଅଛି । ଏପରି ଅପୂର୍ବ ସୁନ୍ଦରୀ କନ୍ୟା ଉପରେ ଆଖି ପଡ଼ିଯିବା ମାତ୍ରେ ମହାରାଜ ସମ୍ବରଣ ନିଜକୁ ନିଜେ ଭୁଲିଗଲେ । ତା' ପାଖକୁ ଯାଇ ଅତୀବ ମଧୁର ସ୍ୱରରେ କହିଲେ ଦେବି ! ତୁମେ କିଏ ? ଏମିତି ସୌନ୍ଦର୍ଯ୍ୟ ମୁଁ କେବେହେଲେ ଦେବତା, କିନ୍ନର ଗନ୍ଧର୍ବ ବା ବିଦ୍ୟାଧରୀଙ୍କଠାରେ ଦେଖି ନ ଥିଲି, ମଣିଷ କଥା କିଏ ପଚାରେ ।

ଏହା ଶୁଣି ସେହି ସୁନ୍ଦରୀ ଯୁବତୀ ସଙ୍କୋଚର ସହିତ ଠିଆ ହୋଇ ପଡ଼ିଲା । ତା' ପାଟିରୁ ପଦଟିଏ କଥା ବି ବାହାରିଲା ନାହିଁ । ରାଜା ଅଧୀର ହୋଇ ପଚାରିଲେ—ହେ ବରବର୍ଣ୍ଣିନି ! ତୁମେ ଲାଜ କାହିଁକି କରୁଛ ? ମୋତେ ତୁମର ପରିଚୟ ଦିଅ । ମୁଁ ଭରତ ବଂଶର ରାଜା ଋକ୍ଷଙ୍କ ପୁତ୍ର ସମ୍ବରଣ । ତୁମକୁ ଦେଖି ମୁଁ ବିମୋହିତ ହୋଇପଡ଼ିଛି । ମୋ' ପ୍ରତି ତୁମେ ଦୟାକର । ମୁଁ ଅନେକ ଯୁବତୀ ଦେଖିଛି, କିନ୍ତୁ ଆଜିପର୍ଯ୍ୟନ୍ତ ଏମିତି ସୌନ୍ଦର୍ଯ୍ୟ, ଏତେ ମାଧୁର୍ଯ୍ୟ, ଏପରି ଅନୁପମ ଆଭା ମୁଁ କେଉଁଠି ହେଲେ ଦେଖିନାହିଁ ।

ରାଜାଙ୍କଠାରୁ ନିଜର ଏପରି ପ୍ରଶଂସା ଶୁଣି ସେହି ସୁନ୍ଦରୀ ହସିଲା ଓ ହସି ହସି ଆକାଶରେ ଅନ୍ତର୍ଦ୍ଧାନ ହୋଇଗଲା । ସେହି ରୂପରାଶିର ଲଳନାଲଲାମ ଦୃଷ୍ଟିରୁ ଅନ୍ତର୍ହିତ ହୋଇଯିବା, ପରେ ରାଜା ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । ନିଜ ଶରୀରର କୌଣସି କଥା ତାଙ୍କୁ ଜଣା ପଡ଼ିଲା ନାହିଁ । ସେ ଶୋକାକୁଳ ହୋଇ କେବଳ ଦୀର୍ଘ ନିଶ୍ୱାସ ତ୍ୟାଗ କରିବାକୁ ଲାଗିଲେ ।

କିଛି ସମୟ ପରେ ରାଜାଙ୍କ ଆଖି ଖୋଲିଗଲା । ସେ ଦେଖିଲେ ରତିଙ୍କ ପରି ସେହି ସୁନ୍ଦରୀ ରମଣୀ ତାଙ୍କ ଆଗରେ ଠିଆ ହୋଇଛି । ସଙ୍କୋଚର ସହିତ ବୀଣାବିନିନ୍ଦିତ ସ୍ୱରରେ ସେ ଧୀରେ ଧୀରେ ତାଙ୍କୁ କହୁଛି—ହେ ନରଦେବ ! ଆପଣ ସପ୍ତଦ୍ୱୀପା ବସୁମତୀର ଏକଛତ୍ର ଅଧିପତି । ଆପଣଙ୍କ ପକ୍ଷରେ ଏପରି ମୋହଗ୍ରସ୍ତ ହେବା ଉଚିତ ନୁହେଁ ।

ଯୁବତୀର କଥା କାନରେ ଅମୃତ ଢାଳିଲା ପରି ରାଜା ଅନୁଭବ କଲେ । ତାହାର ମଧୁର ସଙ୍ଗୀତମୟ ସରସ ଶବ୍ଦାବଳୀକୁ ଶୁଣି ସମ୍ବରଣ କହିଲେ —ଦେବି ! ମୁଁ ତୁମର ସୌନ୍ଦର୍ଯ୍ୟ ସୁଧାସାଗରରେ ବୁଡ଼ି ମୂର୍ଚ୍ଛିତ ହୋଇଯାଇଥିଲି । ହେ ଭାମିନି ! ତୁମେ ହିଁ ମୋ'ତେ ନିଜର କରିନେବ, ଅନୁଚର କରିନେବ ତାହାହେଲେ ମୁଁ ପ୍ରାୟ ବଞ୍ଚିଯିବ, ନଚେତ୍ ମୋର ଜୀବନ ଧାରଣ କରିବା ସମ୍ଭବ ନୁହେଁ ।

ଏହା ଶୁଣି ସେହି ତେଜପୁଞ୍ଜ ସ୍ୱରୂପା ରମଣୀ କହିଲେ—ହେ ନରଦେବ ! ଆପଣ ତ ସଂସାରର ସବୁ ପୁରୁଷମାନଙ୍କ ମଧ୍ୟରେ ସୁନ୍ଦର । ଆପଣଙ୍କର ଅପାର ଐଶ୍ୱର୍ଯ୍ୟ । ଆପଣ ଏତେ ବ୍ୟାକୁଳ କାହିଁକି ହେଉଛନ୍ତି ?

ରାଜା କହିଲେ—ହେ ଚନ୍ଦ୍ରାନନେ ! ତୁମକୁ ନିମିତ୍ତ କରି ଅନଙ୍ଗ ଲୁଚିରହି ନିରନ୍ତର ମୋତେ ଶରହାର ଆଘାତ କରୁଛି । ସେ ମୋର ଶରୀରକୁ କ୍ଷତବିକ୍ଷତ କରି

ସାରନ୍ତିଣି । ଯଦି ତୁମେ ମୋର ବଶବର୍ତ୍ତିନୀ ହୋଇଯିବ ତେବେ ମୁଁ ନିଜକୁ ବିଶ୍ୱବିଜୟୀ ବୋଲି ମନେ କରିବି । ଯଦି ତୁମେ ମୋ' ସହିତ ଗାନ୍ଧର୍ବ ବିବାହ କରନ୍ତ ତେବେ ମୁଁ ନବଜୀବନ ଲାଭ କରନ୍ତି ।

ରାଜାଙ୍କ କଥା ଶୁଣି ଯୁବତୀ କହିଲେ—ହେ ପୁରୁଷୋତ୍ତମ ! ମୁଁ ମୋର ଶରୀରକୁ କାହାରି ଅଧୀନ କରିବା ପାଇଁ ସ୍ୱାଧୀନ ନୁହେଁ । ମୁଁ ଏବେ କୁମାରୀ ଅଛି । ମୋର ପିତା ମୋତେ ଯାହାକୁ ଦେବେ ମୁଁ ତାଙ୍କର ସହିତ ଜୀବନ ଅତିବାହିତ କରିବି ।

ରାଜା ପଚାରିଲେ—ହେ ସୁଭ୍ରୁ ! ତୁମେ କାହାର କନ୍ୟା ? ତୁମର ପିତା କେଉଁଠି ରହନ୍ତି ।

ଯୁବତୀ ଜଣକ କହିଲେ—ପ୍ରଭୋ ! ମୁଁ ପ୍ରାଣୀମାନଙ୍କ କର୍ମରେ ସାକ୍ଷୀ, ଚରାଚର ଜଗତର ସ୍ୱାମୀ, ତେଜରାଶି ଭଗବାନ୍ ସୂର୍ଯ୍ୟନାରାୟଣଙ୍କ ପୁତ୍ରୀ । ସାବିତ୍ରୀ ମୋର ବଡ଼ ଭଉଣୀ । ମୁଁ ତା'ଠାରୁ ସାନ, ମୋର ନାମ ତପତୀ । ଯଦି ଆପଣ ମୋତେ ପାଇବା ପାଇଁ ଇଚ୍ଛା କରୁଛନ୍ତି ତେବେ ମୋ' ପିତାଙ୍କ ପାଖକୁ ଯାଇ ପ୍ରାର୍ଥନା କରନ୍ତୁ । ମହାରାଜ ଆପଣ ଯେପରି ମୋ' ପାଇଁ ବିକଳ ହେଉଛନ୍ତି, ମୁଁ ମଧ୍ୟ ସେହିପରି ଆପଣଙ୍କୁ ପାଇବା ପାଇଁ ଅଧୀର ହେଉଛି । କିନ୍ତୁ ପଣ୍ଡିତମାନେ ସ୍ତ୍ରୀମାନଙ୍କର ସ୍ୱତନ୍ତ୍ରତାକୁ ନିନ୍ଦା କରିଛନ୍ତି । କନ୍ୟା ବାଲ୍ୟକାଳରେ ପିତା ତଥା ପାଳକର ଅଧୀନରେ ଅର୍ଥାତ୍ ଦାୟିତ୍ୱରେ ରହେ । ଯୌବନରେ ପତି ତାକୁ ସୁରକ୍ଷିତ ରଖେ ଏବଂ ବୃଦ୍ଧାବସ୍ଥାରେ ପୁଅମାନେ ତା'ର ଦାୟିତ୍ୱ ବହନ କରନ୍ତି । ତେଣୁ ଇଚ୍ଛା ଥିଲେ ବି ମୁଁ ଆପଣଙ୍କୁ ପତି ରୂପେ ବରଣ କରିପାରିବି ନାହିଁ । ଆପଣ ପୂଜା, ବ୍ରତ, ତପସ୍ୟା, ଉପବାସ ଓ ପ୍ରଣାମ ଦ୍ୱାରା ମୋ' ପିତାଙ୍କୁ ପ୍ରସନ୍ନ କରନ୍ତୁ । ସେ ପ୍ରସନ୍ନ ହେଲେ ନିଶ୍ଚୟ ମୋତେ ଆପଣଙ୍କୁ ଦେବେ । ଏହା କହି ସଙ୍ଗେ ସଙ୍ଗେ ଆକାଶରେ ଅନ୍ତର୍ଦ୍ଧାନ ହୋଇଗଲେ ।

ମହାରାଜ ସମ୍ବରଣ ପୁଣି ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । ଏହି ସମୟରେ ରାଜାଙ୍କ ସୈନ୍ୟ ଓ ସେବକମାନେ ତାଙ୍କୁ ଖୋଜି ଖୋଜି ସେଠାରେ ଆସି ପହଞ୍ଚିଗଲେ । ଘୋଡ଼ାକୁ ମରି ପଡ଼ିଥିବାର ଦେଖି ସମସ୍ତେ ଡରିଯାଇଥିଲେ ଓ ନାନା ପ୍ରକାର କଳ୍ପନା କଳ୍ପନା କରିଥିଲେ । କିଛିଏ ଆଗରୁ ଯାଇ ରାଜାଙ୍କୁ ମୂର୍ଚ୍ଛିତ ହୋଇ ପଡ଼ିଥିବାର ଦେଖି ସମସ୍ତେ ଦୁଃଖିତ ହେଲେ । ରାଜାଙ୍କ ଚେତନା ଫେରାଇ ଆଣିବା ପାଇଁ ସେମାନେ ନାନା ପ୍ରକାର ଚେଷ୍ଟା କଲେ । ମସ୍ତକରୁ ମୁକୁଟ ବାହାର କରି ଦେଇ ଥଣ୍ଡା ପାଣି ଛିଞ୍ଚିଲେ । ପଦ୍ମ ଫୁଲର ମୁକୁଟ କରି ମୁଣ୍ଡରେ ଲଗାଇଲେ । କିନ୍ତୁ ସେହି ପଦ୍ମଫୁଲ ମୁଣ୍ଡ ଉପରେ ରହୁ ରହୁ କିମିଷକ ମଧ୍ୟରେ ଶୁଖିଗଲା । ରାଜା ଚେତନା ଫେରି ପାଇ ନିଜର ମନ୍ତ୍ରୀ, ସୈନ୍ୟ ଓ ସେବକମାନଙ୍କୁ ଦେଖି ଆହୁରି ଅଧୀର ହୋଇ ପଡ଼ିଲେ । ବୃଦ୍ଧ ମନ୍ତ୍ରୀ, ରାଜାଙ୍କର ହାବଭାବ ଦେଖି କାମପୀଡ଼ିତ ହୋଇ ସେ ଏପରି କରୁଛନ୍ତି ବୋଲି

ଜାଣିପାରିଲେ । ସେ ସମନ୍ତଙ୍କୁ ସେଠାରୁ ଦୂରକୁ ଯିବାକୁ କହି ଧୀରେ ଧୀରେ ସବୁ କଥା ପଚ୍ଚାରି ବୁଝିଲେ । ରାଜା ଗୋଟି ଗୋଟି କରି ସବୁ କଥା ତାଙ୍କୁ କହିଲେ । ମନ୍ତ୍ରୀ ରାଜାଙ୍କ-ଠାରୁ ଆଦେଶ ପାଇ ସୈନ୍ୟମାନଙ୍କୁ ରାଜ୍ୟକୁ ଫେରାଇ ଦେଲେ । ରାଜାଙ୍କ ପାଖରେ ସେ ଏକୁଟିଆ ରହିଲେ ।

ମହର୍ଷି ସୂତ କହିଲେ—ମୁନିଗଣ ! ମହାରାଜ ସମ୍ବରଣ ନିଜର ବୃଦ୍ଧ ମନ୍ତ୍ରୀଙ୍କ ପରାମର୍ଶ ଅନୁସାରେ ସୂର୍ଯ୍ୟନାରାୟଣଙ୍କୁ ପ୍ରସନ୍ନ କରିବା ପାଇଁ ତପସ୍ୟା ତଥା ଅନ୍ୟାନ୍ୟ ଅନୁଷ୍ଠାନ କରିବାକୁ ଲାଗିଲେ ।

## ଛପ୍ପୟ

ନିରଖି ଭଯେ ଆସକ୍ତ ଦେହ କୀ ସୁଧି ବିସରାଇ ।
ମୂର୍ଚ୍ଛିତ ଭୂପତି ଲଖେ ସୁନ୍ଦରୀ ନୃପତିଙ୍ଗ ଆଇ ॥
ସମୁଖାୟେ ବହୁ ଭ୍ରାନ୍ତ କହେ ସମ୍ବରଣ ଭ୍ରାମିନୀ ।
ତୀନ ଲୋକ ମୁହଁ ଲଖୀ ନହୀ ତବ ସରସ କାମିନୀ ॥
ମୋହଁ କର୍ତୃଓ କାମ ତେଁ, ମାରହି ଶର ଘାୟଲ କରହି ।
ଅପନାଓ ଯଦି ମୋଇ ତୁମ, ତୋ ମୃହ ଅରି ଡରିକେ ଭଗହି ॥



# ତପତୀ ଓ ସମ୍ବରଣଙ୍କ ବିବାହ

ତପତ୍ୟାଂ ସୂର୍ଯ୍ୟ କନ୍ୟାୟାଂ କୁରୁକ୍ଷେତ୍ର ପତିଃ କୁରୁଃ ।
ପରୀକ୍ଷିତ ସୁଧନ୍ୱଜହ୍ନୁନିଷଧାଶ୍ୱଃ କୁରୋଃ ସୁତାଃ ॥

(ଭାଗ ୯ସ୍କ, ୨୨ଅ, ୪ଶ୍ଲୋ)

## ଛପ୍‌ପୟ

ବୋଲେ ତପତୀ-ନୃପତି ମୋହି ! ରବିତନୟା ମାନୋ ।
କନ୍ୟା ଜନକ ଅଧୀନ ହୋଇ ତୁମ ସବ କଛୁ ଜାନୋ ॥
କରେ ଯାଚନା ଜାଇ ଦାନ ଯଦି ପିତୁ ଦେ ଦେବୈଁ ।
ତୋ ହମ ତୁମ୍ ମିଲି ଧର୍ମଯୁକ୍ତ କାମହିଁ ଚିତ ସେବୈଁ ॥
ଯୌଁ କହି ଅନ୍ତରହିତ ଭଈ, ନୃପ ପୁନି ମୂର୍ଚ୍ଛା ତେଁ ଜଗେ ।
ତପତୀ ହିତ ଉପବାସ ବ୍ରତ, ଦୃଢ଼ ଜପ ତପ କରିବେ ଲଗେ ॥

ଯାହାର କୌଣସି କାମନା ନାହିଁ ସେ ଜୀବ ନୁହେଁ । କାମନା ଥିବାହେତୁ ଜୀବ-ସଂଜ୍ଞା ରହିଛି । ଭଗବାନଙ୍କର କିଛି କାମନା ନାହିଁ । ସେ ଯେତେବେଳେ ଜୀବମାନଙ୍କୁ ସୁଖ ଦେବା ପାଇଁ ଇଚ୍ଛା କରନ୍ତି ସେତେବେଳେ ନିଜର ଭଗବତ୍ତାକୁ ଭୁଲି ଅବନୀରେ ଅବତୀର୍ଣ୍ଣ ହୁଅନ୍ତି ଓ ଜୀବମାନଙ୍କ ପରି କର୍ମ କରନ୍ତି । ଜୀବ ଯଦି ତାଙ୍କୁ ନିଜର ସଖା, ସୁହୃତ୍ ଓ ସର୍ବସ୍ୱ ମନେକରେ ଏବଂ ନିଜର ସମସ୍ତ କାମନା ବାସନା ତାଙ୍କଠାରେ ଅର୍ପଣ କରେ, ତେବେ ତାକୁ ସବୁକିଛି ମିଳିଥାଏ । ଇହଲୋକ ଓ ପରଲୋକର ସୁଖ ତା' ପାଇଁ ସହଜ ହୁଏ । ଯଦି ଏପରି ଆତ୍ମସମର୍ପଣ ନ କରେ ତେବେ ସେ କାମର ଅଧୀନ ହୋଇଯାଏ । ଏହା ଫଳରେ ତାକୁ ଚଉରାଶି ଯୋନିରେ ବୁଲିବାକୁ ପଡ଼େ । ଧର୍ମ, ଅର୍ଥ, କାମ ବା ମୋକ୍ଷ ଯେଉଁଥିପାଇଁ ମଣିଷର ଇଚ୍ଛା ହେଉଛି ସେ ସେଥିପାଇଁ ଭଗବାନଙ୍କର ଶରଣ ନେବା ଉଚିତ୍ । ତାଙ୍କରି ପାଇଁ ଜପ, ତପ, ବ୍ରତ, ଉପବାସ କରିବା ଉଚିତ୍ । ବାଞ୍ଛାକଳ୍ପତରୁ ଭଗବାନ୍ ଜୀବର ସବୁ ଅଭିଳାଷ ପୂର୍ଣ୍ଣ କରନ୍ତି, ସେ ଇଚ୍ଛା ବା ଅଭିଳାଷ ଇହଲୋକ ସମ୍ପର୍କରେ ହେଉ ବା ପରଲୋକ ସମ୍ବନ୍ଧରେ ହେଉ ।

ମହର୍ଷି ସୂତ କହିଲେ—ମୁନିଗଣ ! ନାମ ସନ୍ତପ୍ତ ମହାରାଜ ସମ୍ବରଣଙ୍କୁ ତପତୀ ଯେତେବେଳେ ସୂର୍ଯ୍ୟନାରାୟଣଙ୍କ ଶରଣାପନ୍ନ ହେବା ପାଇଁ କହିଗଲେ, ସେତେବେଳେ ମହାରାଜ ନିଜର ସମସ୍ତ ଅନୁଗାମୀଙ୍କୁ ବିଦାୟ କରିଦେଲେ । ପର୍ବତ ଶିଖର ଉପରେ ବସି ସେ ଏକୁଟିଆ ସୂର୍ଯ୍ୟଦେବଙ୍କ ଆରାଧନା କରିବାକୁ ଲାଗିଲେ । ଶୁଦ୍ଧପୂତ ହୋଇ ସେ ଜଗତ୍ପତି ସୂର୍ଯ୍ୟନାରାୟଣଙ୍କୁ ପ୍ରଣାମ କଲେ ଓ ନିରାହାରେ ରହି, ଗୋଟିଏ ଗୋଡରେ ଠିଆହୋଇ ତପସ୍ୟା କରିବାକୁ ଲାଗିଲେ । ସେ ନିଜର କୁଳଗୁରୁ ଭଗବାନ୍ ବଶିଷ୍ଠଙ୍କୁ ସ୍ମରଣ କଲେ । ବାରଦିନ ପରେ ବ୍ରହ୍ମର୍ଷି ବଶିଷ୍ଠ ଆସି ରାଜାଙ୍କ ପାଖରେ ଉପସ୍ଥିତ ହେଲେ । ଏକାନ୍ତରେ ନିଜର ଗୁରୁଙ୍କୁ ପାଇ ମହାରାଜା ସମ୍ବରଣ ବହୁତ ଖୁସିହେଲେ । ସେ ଗୁରୁଦେବଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି ଯଥୋପଲବ୍ଧ ଉପଚାରରେ ତାଙ୍କୁ ପୂଜା କଲେ ।

ରାଜାଙ୍କ ପୂଜା ସ୍ୱୀକାର କରି ମୁନି ବଶିଷ୍ଠ କହିଲେ—ରାଜନ୍ ! ମୁଁ ଯୋଗବଳରେ ଆପଣଙ୍କର ସବୁ ମନକଥା ଜାଣିପାରିଛି । ମୁଁ ଭଗବାନ୍ ବିବସ୍ୱାନ୍ ସୂର୍ଯ୍ୟନାରାୟଣଙ୍କ ପାଖକୁ ଯାଇ ତୁମ ପାଇଁ ତାଙ୍କ କନ୍ୟାକୁ ପ୍ରାର୍ଥନା କରିବି । ମୋର ଆଶା, ଭଗବାନ୍ ଭୁବନ-ଭାସ୍କର ମୋତେ ନିରାଶ କରିବେ ନାହିଁ । ସେ ନିଶ୍ଚୟ ତୁମକୁ ନିଜର ପରମା ସୁନ୍ଦରୀ କନ୍ୟା ସୁକୁମାରୀ ତପତୀଙ୍କୁ ଦାନ କରିବେ ।

ରାଜା ହାତଯୋଡ଼ି ବିନୀତଭାବେ କହିଲେ—ବ୍ରହ୍ମନ୍ ! ଆପଣହିଁ ତ' ମୋର ଏକମାତ୍ର ଭରସା । ଆପଣ ଯାହା କହିବେ ତାହାହିଁ ହେବ ।

ରାଜାଙ୍କ କଥା ଶୁଣି ମୁନି ପ୍ରସନ୍ନ ହେଲେ । ଆକାଶମାର୍ଗରେ ଉଡ଼ି ଉଡ଼ି ଯୋଗ ପ୍ରଭାବରେ ସେ ସୂର୍ଯ୍ୟଲୋକରେ ପହଞ୍ଚିଲେ । ସେଠାରେ ନିଜର ଦିବ୍ୟରଥ ଉପରେ ବିରାଜମାନ ପ୍ରଖରପ୍ରଚଣ୍ଡ ଭଗବାନ୍ ସୂର୍ଯ୍ୟଦେବଙ୍କୁ ଦେଖି ବଶିଷ୍ଠ ହାତଯୋଡ଼ି କହିଲେ—ପ୍ରଭୋ ! ମୋର ନାମ ବଶିଷ୍ଠ । ମୁଁ ବ୍ରହ୍ମାଙ୍କର ମାନସପୁତ୍ର । ମୁଁ ଆପଣଙ୍କର ଚରଣ ତଳେ ଶ୍ରଦ୍ଧାଭକ୍ତିସହିତ ପ୍ରଣାମ କରୁଛି ।

ବଶିଷ୍ଠଙ୍କ ପରିଚୟ ପାଇ ସୂର୍ଯ୍ୟଦେବ ଅତୀବ ପ୍ରସନ୍ନ ହେଲେ ଓ କହିଲେ—ବଶିଷ୍ଠ ! ଆପଣ ଆସିଲେ ଭଲହେଲା । ଆପଣଙ୍କୁ ସ୍ୱାଗତ କରୁଛି । ଆସନ୍ତୁ ମୋ' ପାଖରେ ଏହି ଆସନରେ ବସନ୍ତୁ ।

ଏହା କହି ସତ୍କାର ପୂର୍ବକ ସୂର୍ଯ୍ୟଦେବ ବଶିଷ୍ଠଙ୍କୁ ନିଜ ପାଖରେ ବସାଇଲେ ଓ କହିଲେ—ବଶିଷ୍ଠ ! ଯଦି କିଛି ବିଶେଷ ଉଦ୍ଦେଶ୍ୟ ନେଇ ଆପଣ ଆସିଛନ୍ତି ତେବେ ନିର୍ଦ୍ଦ୍ୱନ୍ଦ୍ୱରେ ତାହା ମୋତେ ନିଃସଙ୍କୋଚରେ କୁହନ୍ତୁ ।

ସୂର୍ଯ୍ୟଦେବଙ୍କ ଦ୍ୱାରା ସତ୍କୃତ ହୋଇ ବ୍ରହ୍ମର୍ଷି ପ୍ରବର ବଶିଷ୍ଠ କହିଲେ—ଭଗବନ୍ ! ଆଜିକାଲି ପୃଥିବୀରେ ଋକ୍ଷଙ୍କ ପୁତ୍ର ସମ୍ବରଣ ରାଜତ୍ୱ କରୁଛନ୍ତି । ପୃଥିବୀରେ ତାଙ୍କ ପରି

ସୁନ୍ଦର, ତେଜସ୍ୱୀ, ଧାର୍ମିକ ରାଜା ଆଉ କେହି ନାହାନ୍ତି । ସେଥିପାଇଁ ତାଙ୍କର ବିବାହ ପାଇଁ ଆପଣଙ୍କ କନ୍ୟା ତପତୀଙ୍କୁ ମାଗିବାକୁ ଆସିଛୁ ।

ଏହା ଶୁଣି ସୂର୍ଯ୍ୟଦେବ ନିଜର ପ୍ରସନ୍ନତା ପ୍ରକାଶ କରି କହିଲେ—ମୁନିବର ! ମୁଁ ମୋର ସ୍ନେହ ଝିଅ ତପତୀର ବିବାହପାଇଁ ବଡ଼ ଚିନ୍ତିତ ଥିଲି । କାରଣ ସେ ଯେପରି ସୁନ୍ଦରୀ, ସୁଶୀଳା, ତା' ପାଇଁ ଯୋଗ୍ୟ ପତିଟିଏ ମିଳିବା ବଡ଼ କଷ୍ଟକର କଥା । ରୂଷକୁମାର, ମହାରାଜ ସମ୍ବରଣ ନରପତିମାନଙ୍କ ମଧ୍ୟରେ ଶ୍ରେଷ୍ଠ । ତାଙ୍କ ପରି ସୁଶୀଳ ସୁନ୍ଦର ସର୍ବଗୁଣ ସମ୍ପନ୍ନ ଦ୍ୱିତୀୟ ବର ତପତୀ ପାଇଁ ମୁଁ କେଉଁଠି ପାଇବି ? ତା'ପରେ ଆପଣଙ୍କ ପରି ବ୍ରହ୍ମଜ୍ଞାନୀ ଋଷିଶ୍ରେଷ୍ଠ ମୋତେ କନ୍ୟା ପ୍ରାର୍ଥନା କରିବା ପାଇଁ ଆସିଛନ୍ତି । ଏହା ମୋର ଓ ତପତୀ ପକ୍ଷରେ ସୌଭାଗ୍ୟର କଥା । ବ୍ରହ୍ମନ୍ ! ତପତୀ ଆପଣଙ୍କର ହିଁ କନ୍ୟା । ଆପଣ ଯାହାକୁ ଇଚ୍ଛା କରୁଛନ୍ତି ତାଙ୍କୁ ନେଇ ଦିଅନ୍ତୁ । ଏହା କହି ସୂର୍ଯ୍ୟ ଭଗବାନ୍ ତପତୀଙ୍କୁ ବଶିଷ୍ଠଙ୍କ ସାଙ୍ଗରେ ପଠାଇଦେଲେ । ସୂର୍ଯ୍ୟଙ୍କ ପ୍ରଭା ପରି ଉଜ୍ଜ୍ୱଳ ସେହି କନ୍ୟାକୁ ଆକାଶ ମାର୍ଗରେ ଆଣି ପୃଥିବୀ ଉପରେ ଅବତରଣ କରିବାକୁ ଲାଗିଲେ ।

ଏଣେ ତପତୀଙ୍କୁ ପାଇବା ପାଇଁ ମହାରାଜ କିଛି ନ ଖାଇ ନ ପିଇ ମୌନବ୍ରତ ଅବଲମ୍ବନ କରି ଘୋର ତପସ୍ୟା କରୁଥିଲେ । ବିନା ଅନ୍ନ ଜଳରେ ବାରଦିନ ଅତିବାହିତ ହୋଇସାରିଥିଲା । ଦ୍ୱାଦଶାଦିତ୍ୟ ଭଗବାନ୍ ସୂର୍ଯ୍ୟ ତାଙ୍କ ଗୁଣକୁ ଦେଖି ତାଙ୍କୁ କନ୍ୟା ଦେଇଥିଲେ । ଗୁରୁଦେବ ବଶିଷ୍ଠଙ୍କ ସହିତ ବିଜୁଳି ପରି, ମୂର୍ତ୍ତିମତୀ ତପସ୍ୟା ପରି ସେହି କନ୍ୟା ପୃଥିବୀ ଉପରକୁ ଆସିବାର ଦେଖାଗଲା । ତାହା ଦେଖି ରାଜାଙ୍କ ଚକ୍ଷୁ ବିସ୍ଫାରିତ ହୋଇଗଲା । ନିଜର ଆନନ୍ଦ ପ୍ରକାଶ କରି ରାଜା ମୁନିଙ୍କ ପାଦ ପଦ୍ମରେ ଭୂମିଷ୍ଠ ପ୍ରଣାମ କଲେ । ବଶିଷ୍ଠ ତପତୀଙ୍କ ସହିତ ମହାରାଜାଙ୍କ ବିବାହ ଯଥାବିଧି କରାଇଥିଲେ ।

ତପତୀଙ୍କୁ ପତ୍ନୀ ରୂପେ ପାଇ ମହାରାଜା ପରମ ସନ୍ତୋଷ ଲାଭ କଲେ । ସେ ନିଜର ହୃଦୟ ଓ ସର୍ବସ୍ୱ ତପତୀଙ୍କୁ ଅର୍ପଣ କରିଦେଲେ । ତପତୀ ମଧ୍ୟ ନିଜକୁ ରାଜାଙ୍କ ଚରଣତଳେ ଅର୍ପଣ କରିଦେଲେ । ତପତୀଙ୍କ ଛଡ଼ା ରାଜାଙ୍କୁ ଆଉ କିଛି ଭଲ ଲାଗିଲା ନାହିଁ । ରାଜ୍ୟ, ପୁତ୍ର, ପରିବାର, ରାଜ୍ୟଶାସନ ସବୁଥିରେ ସେ ଉଦାସୀନ ହୋଇ ପଡ଼ିଲେ । ପ୍ରଧାନ ବୃଦ୍ଧ ମନ୍ତ୍ରୀ ତାଙ୍କ ପାଖରେ ଥିଲେ । ମହାରାଜ ତାଙ୍କୁ ରାଜ୍ୟଭାର ଦେଇ ତପତୀଙ୍କୁ ସାଙ୍ଗରେ ନେଇ ବଣରେ ହିଁ ରହିବାକୁ ଲାଗିଲେ । ସେ ତପତୀଙ୍କୁ ସୁନ୍ଦର ସୁନ୍ଦର ବନ ଉପବନ ବୁଲାଇ-ନେଲେ । ଅନେକ ପ୍ରକାରର ଫୁଲ ତୋଳି ସେ ତପତୀଙ୍କ ପାଇଁ ହାର ଗୁନ୍ଥି ଦେଉ-ଥିଲେ ଓ ସ୍ନେହ ପୂର୍ଣ୍ଣ ହୃଦୟରେ ତାକୁ ନେଇ ତପତୀଙ୍କୁ ପିନ୍ଧାଇ ଦେଉଥିଲେ । ବେଣୀରେ ନାନାରଙ୍ଗର ଫୁଲ ଖୋସି ଦେଉଥିଲେ । ଏହିପରିଭାବେ ତାଙ୍କର ସମ୍ପୂର୍ଣ୍ଣ ସମୟ ତପତୀଙ୍କୁ ଖୁସି କରାଇବାରେ ହିଁ କଟିଲା । ପ୍ରଜାପାଳନ କରିବା କ୍ଷତ୍ରିୟର ଧର୍ମ । ସେଥିପ୍ରତି ସେ ପରାଙ୍ମୁଖ ହୋଇପଡ଼ିଲେ । ଏହାଫଳରେ ଠିକ୍ ସମୟରେ ବର୍ଷା ହେଲା ନାହିଁ କି ପୃଥିବୀରେ ଅନ୍ନ ଉତ୍ପନ୍ନ ହେଲା ନାହିଁ । କ୍ଷୁଧା ଓ ଅନାହାରରେ

ପ୍ରଜାମାନେ ହାହାକାର କରିବାକୁ ଲାଗିଲେ । ମହାରାଜା ଏହି ଅବସ୍ଥା ପ୍ରତି ଦୃଷ୍ଟି ନ ଦେଇ ବଣରେ ବାରବର୍ଷକାଳ ଅତିବାହିତ କଲେ । ତା ପରେ ପ୍ରଜାମାନେ ଏକତ୍ରିତ ହୋଇ ଭଗବାନ୍ ବଶିଷ୍ଠଙ୍କ ପାଖକୁ ଯାଇ କହିଲେ—ବ୍ରହ୍ମନ୍ ! ଆପଣ ଆମ ରାଜାଙ୍କୁ କେଉଁଠି ଛାଡ଼ି ଆସିଲେ ? ଆମେମାନେ ଅନ୍ନ ଜଳ ବିନା ମୃତପ୍ରାୟ ହେଲୁଣି । ଆପଣ ଶୀଘ୍ର ଏହାର କିଛି ପ୍ରତିକାର କରନ୍ତୁ ।

ପ୍ରଜାମାନଙ୍କର ଆକୁଳ ଆବେଦନ ଶୁଣି ବଶିଷ୍ଠ କହିଲେ— ପ୍ରଜାଗଣ ! ତୁମେ-ମାନେ ଆଉ ଚିନ୍ତା କରନାହିଁ । ମୁଁ ତୁମର ଦୁଃଖ ଦୂର କରିଦେବି ।

ଏହା କହି ବଶିଷ୍ଠ ତପତୀ ଓ ମହାରାଜାଙ୍କୁ ଡ଼କାଇ ପଠାଇଲେ । ସେମାନେ ନଗରରେ ପ୍ରବେଶ କରିବା ମାତ୍ରେ ବର୍ଷା ହେଲା । ତା'ପରେ ରାଜା ବାରବର୍ଷ ପର୍ଯ୍ୟନ୍ତ ନିରବଚ୍ଛିନ୍ନଭାବେ ଯଜ୍ଞାଦି ଅନୁଷ୍ଠାନ କରିବାକୁ ଲାଗିଲେ । ଏହା ଫଳରେ ଦେଶରେ ସୁଭିକ୍ଷ ଆସିଲା ଓ ପ୍ରଜାମାନେ ଶାନ୍ତ ସନ୍ତୋଷରେ ରହିଲେ । ରାଜା ପୁଣି ଧର୍ମ ପୂର୍ବକ ପ୍ରଜାପାଳନ କରିବାକୁ ଲାଗିଲେ । କେତେ ଦିନ ପରେ ରାଣୀଙ୍କ ଗର୍ଭରୁ କୁରୁ ନାମରେ ବଡ଼ ତେଜସ୍ୱୀ, ପ୍ରଭାବଶାଳୀ ପୁତ୍ର ଜନ୍ମ ହେଲା । ତାଙ୍କର ନାମ ଅନୁସାରେ ଏହି ବଂଶ କୌରବ ବଂଶ ରୂପେ ବିଖ୍ୟାତ ହେଲା ।

ମହର୍ଷି ସୂତ କହିଲେ—ମୁନିଗଣ ! କୁରୁଙ୍କଠାରୁ ପରୀକ୍ଷିତ, ସୁଧନୁ, ଜହ୍ନୁ ଓ ନିଷଧାଶ୍ୱ ନାମରେ ଚାରି ପୁଅ ଜନ୍ମଗ୍ରହଣ କଲେ । ଏମାନଙ୍କ ମଧ୍ୟରେ ସୁଧନୁଙ୍କଠାରୁ ସୁହୋତ୍ର, ତାଙ୍କଠାରୁ ଚ୍ୟବନ, ତାଙ୍କଠାରୁ କୃତୀ ଓ ମହାରାଜା କୃତୀଙ୍କଠାରୁ ଉପରିଚର ବସୁ ଜନ୍ମ ହେଲେ । ସେ ବଡ଼ ଧାର୍ମିକ ଥିଲେ । ସେ ବିମାନରେ ବସି ଉଡ଼ି ଉଡ଼ି ଯିବା ଆସିବା କରୁଥିଲେ । ସେଥିପାଇଁ ତାଙ୍କ ନାମ ଉପରିଚର ଥିଲା । ମୁଁ ସେହି ଧାର୍ମିକ ରାଜାଙ୍କର କଥା କହୁଛି, ଆପଣମାନେ ମନ ଦେଇ ଶୁଣନ୍ତୁ ।।

## ଛପ୍ପୟ

ଗୁରୁ ବଶିଷ୍ଠ ଋଷି ନିକଟ ଗୟେ ବିନତୀ କହୁ କୀନ୍ହୀ ।
ମାଁଗୀ ତପତୀ ହରଷି ସୂର୍ଯ୍ୟ ନୃପହିତ ଦେ ଦୀନ୍ହୀ ।।
ବିଧିବତ୍ କର୍‌ୟୋ ବିବାହ ଭୟେ ଦୋଉ ଅତି ପ୍ରମୁଦିତ ।
ପ୍ରିୟା ପ୍ରେମ ମହଁ ଫଁସେ ସମ୍ୱରଣ ଭୂପତୀ କୋ ଚିତ ।।
ରାନୀ ତପତୀ ଗର୍ଭ ତେଁ, ଭୟେ ପୁତ୍ର କୁରୁ ଯଶ ବିଦିତ ।
କୁଲ କୌରବ ତେହି ନାମ ତେଁ, ଭୟୋ ପୁତ୍ର ତିନି ପରୀକ୍ଷିତ ।।

—*—

# ମହାରାଜ ଉପରିଚର ବସୁଙ୍କ କଥା

ସୁହୋତ୍ରୋଽଭୂତ୍ ସୁଧନୁଷശ୍ଚ୍ୟବନୋଽଥ ତତଃ କୃତୀ ।
ବସୁ ସ୍ତସ୍ୟୋପରିଚରୋ ବୃହଦ୍ରଥ ମୁଖାସ୍ତତଃ ॥
(ଭାଗ-୯ସ୍କ-୨୨ଅ-୫ଶ୍ଳୋ)

## ଛପ୍‌ପୟ

ସୁଧନୁ ଜହ୍ନୁ ନିଷଧାଶ୍ୱ ତୀନ ସୁତ ଔରହୁ ତନକେ ।
ତହେ ପ୍ରଥମ ସୁତ ହୀନ ସୁହୋତ୍ରହୁ ଭୟେ ସୁଧନୁ କେ ॥
ଚ୍ୟବନ ସୁହୋତ୍ର କୁମାର ଚ୍ୟବନ କେ କୃତୀ ଭୟେ ସୁତ ।
କୃତୀ ପୁତ୍ର ବସୁ ନୃପତି ଉପରିଚର ଅଷ୍ଟ ସିଦ୍ଧି ଯୁତ ॥
ସୁରଋଷି ବାଦବିବାଦ ମହଁ, ପକ୍ଷ ପାତ ନୃପନେ କୟୋ ॥
କ୍ରୁଦ୍ଧ ଭୟେ ଋଷି ଭୂପ କୁଁ, ପତନ ଶାପ ମିଲ ତୈଁ ଦୟୋ ॥

ସଂସାରରେ ଶ୍ରୀମନ୍ନାରାୟଣ ଭକ୍ତି ହିଁ ସାର କଥା । ନାରାୟଣ ନାମ ଭବଭୟ ବନ୍ଧନକୁ ଛିନ୍ନ ଭିନ୍ନ କରିଦେବାକୁ ସମର୍ଥ । ନାରାୟଣ ହିଁ ପରମ ତତ୍ତ୍ୱ । ବାୟୁ ରୋଗକୁ ଯେପରି ନାରାୟଣ ତୈଳ ନଷ୍ଟ କରିଦିଏ, ଯେପରି ଉଦର ବିକାର ପାଇଁ ନାରାୟଣ ଚୂର୍ଣ୍ଣ ପରମ ଔଷଧ ଅଟେ, ଠିକ୍ ସେହିପରି ସଂସାର ସାଗର ପାରହେବା ନିମିତ୍ତ ନାରାୟଣ ନାମ ହିଁ ସବୁ ପ୍ରକାରେ ସମର୍ଥ ଅଟେ । ସଂସାରର ସମସ୍ତ ପ୍ରାଣୀଙ୍କଠାରେ ଯେ ସ୍ୱାମୀ ନାରାୟଣଙ୍କୁ ଦେଖିଥାଏ, ଯେ କାହାରି ପ୍ରତି ହିଂସା ନ କରି ସବୁ ଜୀବ ପ୍ରତି ଦୟା କରିଥାଏ, ଶ୍ରୀମନ୍ନାରାୟଣ ତାକୁହିଁ ଦର୍ଶନ ଦିଅନ୍ତି । ଯଦି କୌଣସି କାରଣରୁ ତା'ର ଅଧଃପତନ ଘଟେ ତେବେ ନାରାୟଣଙ୍କ ନାମ ନେଲେ ପୁଣି ତା'ର ଉତ୍‌ଥାନ ହୁଏ । ନାରାୟଣଙ୍କ ଶରଣାପନ୍ନ ହେଲେ ସମସ୍ତ ଅଶୁଭ ଦୂରହୁଏ ।

ମହର୍ଷି ସୂତ କହିଲେ—ମୁନିଗଣ ! କୁରୁକୁଳରେ ମହାରାଜା କୃତୀଙ୍କ ପୁତ୍ର ଉପରିଚର ବସୁ ବଡ଼ ଧାର୍ମିକ ଓ ଭଗବଦ୍ ଭକ୍ତ ଥିଲେ । ସେ ଭଗବାନ୍ ବୃହସ୍ପତିଙ୍କୁ ନିଜର ପୁରୋହିତ ରୂପେ ବରଣ କରିଥିଲେ । ସେ ଅହିଂସା ପରାୟଣ ଓ ଉଦାର ଥିଲେ । ଅଶ୍ୱମେଧ ଯଜ୍ଞ କରି ମଧ୍ୟ ସେ ପଶୁହିଂସା କରୁ ନ ଥିଲେ । ଅଙ୍ଗିରା ପୁତ୍ର ଭଗବାନ

ବୃହସ୍ପତିଙ୍କୁ ସେ ପଚାରିଲେ—ବ୍ରହ୍ମନ୍ ! ଫଳ ଫୁଲ ଓ ଅନ୍ୟ ସାମଗ୍ରୀ ଦ୍ୱାରା ମହାଯଜ୍ଞ ହୋଇ ପାରିବ ନାହିଁ ।

ବୃହସ୍ପତି କହିଲେ—ରାଜନ୍ ! ହୋଇ ପାରିବ ନାହିଁ କାହିଁକି ? ଯଜ୍ଞରେ ପଶୁହିଂସା କରିବାକୁ ହେବ ଏପରି କୌଣସି ନିୟମ ନାହିଁ ।

ରାଜା କହିଲେ—ପ୍ରଭୋ ! ମୋ' ପାଇଁ ସେହିପରି ଯଜ୍ଞର ଆୟୋଜନ କରନ୍ତୁ ଯେଉଁଥିରେ ପଶୁବଳି ଦରକାର ପଡ଼ିବ ନାହିଁ ।

ଏହା ଶୁଣି ବୃହସ୍ପତି କହିଲେ—ରାଜନ୍ ! ଆପଣଙ୍କ ଅଭିଳାଷ ଅନୁସାରେ ହିଁ ଯଜ୍ଞ ଅନୁଷ୍ଠିତ ହେବ । ଏହା କହି ସେ ଯଜ୍ଞର ଆବଶ୍ୟକୀୟ ସାମଗ୍ରୀର ଏକ ତାଲିକା କରିଦେଲେ । ରାଜା ସଙ୍ଗେ ସଙ୍ଗେ ସମସ୍ତ ସାମଗ୍ରୀ ଏକତ୍ରିତ କଲେ । ଯଜ୍ଞ ଆରମ୍ଭ ହେଲା । ଏଥିରେ ବୃହସ୍ପତି ହୋତା ହେଲେ ଏବଂ ପ୍ରଜାପତିଙ୍କ ପୁତ୍ର ଏକତ, ଦ୍ୱିତ ଓ ତ୍ରିତ ଏହି ଯଜ୍ଞର ସଦସ୍ୟ ଥିଲେ । ଧନୁଷାକ୍ଷ୍ୟ, ରୈଭ୍ୟ, ଅର୍ବାବସୁ, ପରାବସୁ, ମେଧାତିଥି, ତାଣ୍ଡ୍ୟ, ଶାନ୍ତି, ବେଦଶିରା, କପିଳ, ଆଦ୍ୟ, କଠ, ତୈତ୍ତିରି, କଣ୍ୱ ଓ ଦେବହୋତ୍ର ପ୍ରଭୃତି ଷୋଳ ଜଣ ସୁପ୍ରସିଦ୍ଧ ମହର୍ଷି ଏହି ଯଜ୍ଞରେ ଯୋଗଦାନ ହେଲେ । ଏ ଯଜ୍ଞର ଏହି ବିଶେଷତ୍ୱ ଥିଲା ଯେ ଏଥିରେ ପଶୁହିଂସା ହୋଇ ନ ଥିଲା । ଫଳ, ଫୁଲ, ଅଙ୍କୁର ଓ ବୀଜରେ ହିଁ ଭଗବାନ୍ ବିଷ୍ଣୁଙ୍କର ଆରାଧନା କରା ହୋଇଥିଲା ।

ମହାରାଜ ଉପରିଚରଙ୍କର ଏପରି ଭକ୍ତିରେ ରମାରମଣ, ଶ୍ରୀମନ୍ନାରାୟଣ ପ୍ରସନ୍ନ ହେଲେ । ସେ ରାଜାଙ୍କୁ ପ୍ରତ୍ୟକ୍ଷ ଦର୍ଶନ ଦେଇ ଯଜ୍ଞୀୟ ପୁରୋଡ଼ାଶକୁ ସ୍ୱୟଂ ଗ୍ରହଣ କଲେ । ସେ ଅନ୍ୟ କାହାକୁ ଦର୍ଶନ ଦେଇ ନ ଥିଲେ । ଅଦୃଶ୍ୟ ରୂପରେ ସେ ହବିର୍ଭାଗ ଗ୍ରହଣ କରିଥିଲେ ।

ବୃହସ୍ପତି କ୍ରୁଦ୍ଧ ହୋଇ କହିଲେ—ମୁଁ କେତେବେଳୁ ଯଜ୍ଞଭାଗ ଦେବାକୁ ଦେବତା-ମାନଙ୍କୁ ଡାକୁଛି । ଦେବଗଣ ମୋ' ଆଗକୁ ଆସୁ ନାହାନ୍ତି କାହିଁକି ?

ରାଜା କହିଲେ—ବ୍ରହ୍ମନ୍ ! ଭଗବାନ୍ ବିଷ୍ଣୁ ଆପଣ ଦେଇଥିବା ହବିର୍ଭାଗ ଗ୍ରହଣ କରି ସାରିଲେଣି ।

ବୃହସ୍ପତି କହିଲେ—ମୁଁ ଏହା ମାନିବି ନାହିଁ । ମୁଁ ଦେବଗଣଙ୍କ ପାଇଁ ଏହି ପୁରୋଡ଼ାଶ ତିଆରି କରିଛି । ଦେବଗଣ ପ୍ରକଟ ହୋଇ ଏହା ଗ୍ରହଣ କରନ୍ତୁ ଅଥବା ସମସ୍ତଙ୍କ ଆଗରେ ଭଗବାନ୍ ବିଷ୍ଣୁ ଏହାକୁ ଗ୍ରହଣ କରିବା ଉଚିତ । ଅଦୃଶ୍ୟ ରୂପରେ ଭଗବାନ୍ ଏହାକୁ କାହିଁକି ଗ୍ରହଣ କଲେ ? ଏହା କହି ବୃହସ୍ପତି ସ୍ରୁବକୁ ଉପରକୁ ଫିଙ୍ଗିଦେଲେ ।

ଏହା ଦେଖି ରାଜା ଅତିବ ମଧୁର ସ୍ୱରରେ କହିଲେ—ବ୍ରହ୍ମନ୍ ! ଆପଣ ଏ ନୂଆକଥା କାହିଁକି କରୁଛନ୍ତି ? ସତ୍ୟ ଯୁଗରେ ତ କେହି କ୍ରୋଧ କରନ୍ତି ନାହିଁ । ଏହା ତ

ଅନ୍ୟ ଯୁଗର ଲକ୍ଷଣ । ପୁରୋହିତଙ୍କୁ ବୁଝାଇବାକୁ ଯାଇ ରାଜା ପୁଣି କହିଲେ—ବ୍ରହ୍ମନ୍ ! ଆପଣ କ୍ରୋଧ କରି ଦେବାଧିଦେବଙ୍କ ଦର୍ଶନ ପାଇପାରିବେ ନାହିଁ । ସେ ହେଉଛନ୍ତି ଜିତକ୍ରୋଧ । ତାଙ୍କୁ କ୍ରୋଧରହିତ ପୁରୁଷ ପ୍ରେମରେହିଁ ପାଇଥାଏ ।

ରାଜାଙ୍କର ଏହି କଥାକୁ ସମର୍ଥନ କରି ମହର୍ଷି ଏକତ, ଦ୍ୱିତ ଓ ତ୍ରିତ ନିଜର ଅଙ୍ଗେ ନିଭେଇଥିବା କଥା କହିବାକୁ ଆରମ୍ଭ କଲେ । ସେମାନେ କହିଲେ—ଭଗବାନଙ୍କୁ ଦେଖିବା ପାଇଁ ଆମମାନଙ୍କର ମଧ୍ୟ ଥରେ ପ୍ରବଳ ଇଚ୍ଛା ହେଲା । ସେତେବେଳେ ଆମକୁ ଆକାଶବାଣୀ ହେଲା—ମୁନିଗଣ ! ଆପଣମାନେ କ୍ଷୀରସାଗର ଉତ୍ତରରେ ଥିବା ମହା ପ୍ରଭାବାନ୍ ଶ୍ୱେତଦ୍ୱୀପକୁ ଯାଆନ୍ତୁ । ସେଠାରେ ମୋର ପ୍ରତ୍ୟକ୍ଷ ସ୍ୱରୂପ ବିଦ୍ୟମାନ ଅଛି । ସେହି ଲୋକରେ ନାରାୟଣ ପରାୟଣ, ଚନ୍ଦ୍ରବତ୍ କାନ୍ତିଯୁକ୍ତ, ପରମ ଐକାନ୍ତିକ ଭଗବଦ୍ ଭକ୍ତମାନେ ବାସ କରୁଛନ୍ତି । ସେମାନେ ଇନ୍ଦ୍ରିୟରହିତ, ନିରାହାରୀ, ଅପଲକ ଦୃଷ୍ଟି ଓ ଦିବ୍ୟ ଗନ୍ଧଯୁକ୍ତ ଅଟନ୍ତି ।

ଏହିପରି ଆକାଶବାଣୀ ଶୁଣି ଆମେ ସମସ୍ତେ ଶ୍ୱେତଦ୍ୱୀପ ଗଲୁ । ସେଠାରେ ଏତେ ତେଜ ଥିଲା ଯେ ଆମେ ସମସ୍ତେ ଅନ୍ଧପ୍ରାୟ ହୋଇପଡ଼ିଲୁ । ଆମକୁ କିଛି ଦିଶିଲା ନାହିଁ । କିନ୍ତୁ ସେଠାରେ ମଧ୍ୟ ଆମେ ନାରାୟଣଙ୍କ ଦର୍ଶନ ପାଇଲୁ ନାହିଁ । ନିଜ ନିଜକୁ ତପ ରହିତ ବୋଲି ଭାବି ଆମେମାନେ ପୁଣି ଘୋର ତପସ୍ୟା କରିବାକୁ ଲାଗିଲୁ । ସେହି ଲୋକରେ ତପସ୍ୟାରେ ଶହେ ବର୍ଷ କାଳ ଅତିବାହିତ ହେବା ପରେ ସେଠାରେ ଥିବା ଭଗବଦ୍ ଭକ୍ତ ମହାପୁରୁଷମାନଙ୍କ ସାକ୍ଷାତ ମିଳିଲା । ସେମାନେ ସମସ୍ତେ ଚନ୍ଦ୍ରପରି କାନ୍ତିଯୁକ୍ତ ଓ ଭଗବଦ୍ ଭକ୍ତିପରାୟଣ ଥିଲେ । ସେମାନେ ସମସ୍ତେ ଦିନେ ହଠାତ୍ ବଡ଼ ଉତ୍କଣ୍ଠାରେ ନୈବେଦ୍ୟ ପୂଜାସାମଗ୍ରୀ ଏକାଠି କରି ହାତଯୋଡ଼ି କହିଲେ—ହେ ପୁଣ୍ଡରୀକାକ୍ଷ ! ହେ ବିଶ୍ୱୋତ୍ପାଦକ ! ହେ ହୃଷୀକେଶ ! ହେ ଜନାର୍ଦ୍ଦନ ! ହେ ନାରାୟଣ ! ଆପଣଙ୍କର ଜୟ ହେଉ, ଜୟହେଉ । ସେମାନଙ୍କର ସ୍ତୁତି, ପୂଜା, ଚେଷ୍ଟା ଓ ମୁଖାକୃତି ଦେଖି ଆମେ ଭାବିଲୁ ଯେ ଭଗବାନ୍ ସେଠାରେ ଉପସ୍ଥିତ ଅଛନ୍ତି । କିନ୍ତୁ ଆମକୁ ଦର୍ଶନ ମିଳିଲା ନାହିଁ । ସେ ଦ୍ୱୀପରେ ରହୁଥିବା ଅନ୍ୟ ଲୋକମାନେ ତାଙ୍କର ପ୍ରତ୍ୟକ୍ଷ ଦର୍ଶନ କରୁଥିଲେ । କିଛି ସମୟ ପରେ ପୂଜା ସରିଗଲା । କିନ୍ତୁ ସେଠିକାର ଲୋକେ ଆମ ସହିତ କିଛି କଥାବାର୍ତ୍ତା ହେଲେ ନାହିଁ । ତା'ପରେ ଆମେ ପୁଣି ଘୋର ତପସ୍ୟାରେ ଲାଗିଗଲୁ । ତପସ୍ୟା କରି କରି ଆମେ କ୍ଷୀଣକାୟ ହୋଇଗଲୁ । ତା'ପରେ ପୁଣି ଆମକୁ ଆକାଶବାଣୀ ହେଲା—ଯେଉଁମାନେ ଭଗବଦ୍ ଭକ୍ତମାନଙ୍କର ଭକ୍ତ ନୁହଁନ୍ତି ସେମାନେ ମୋର ଦର୍ଶନ ପାଇବେ ନାହିଁ । ଏ ଲୋକରେ ରହିବା ପାଇଁ ସେମାନଙ୍କର ଅଧିକାର ନାହିଁ । ପୃଥିବୀକୁ ଫେରିଯାଇ ଆପଣ-ମାନଙ୍କୁ ଅନେକ କାମ କରିବାକୁ ହେବ । ବହୁ ଜୀବଙ୍କୁ ଭଗବାନଙ୍କ ଅଭିମୁଖୀ କରିବାକୁ ପଡ଼ିବ । ଆପଣମାନେ ଏ ଲୋକର ମହାପୁରୁଷମାନଙ୍କ ଦର୍ଶନ ପାଇସାରିଲେଣି, ତାହାହିଁ ଆପଣମାନଙ୍କ ପକ୍ଷରେ ଯଥେଷ୍ଟ । ସେମାନଙ୍କୁ ଭକ୍ତି କରନ୍ତୁ । ପରେ ଆପଣମାନେ ଯେତେ-

ବେଳେ ଏ ଲୋକକୁ ଆସିବେ ସେତେବେଳେ ମୋର ଦର୍ଶନ ପାଇବେ । ଯେଉଁମାର୍ଗରେ ଆପଣମାନେ ଆସିଥିଲେ ବର୍ତ୍ତମାନ ସେହିମାର୍ଗରେ ଫେରଯାଆନ୍ତୁ ।

ଏକତ ମୁନି କହିଲେ—ବୃହସ୍ପତି ମହାଶୟ ! ଏହି ଆଦେଶ ଶୁଣି ଆମେମାନେ ସମସ୍ତେ ଫେରିଆସିଲୁ । ଦେଖନ୍ତୁ, ଆମେ ତପସ୍ୟା କଲୁ, ଶ୍ୱେତଦ୍ୱୀପକୁ ଗଲୁ, ତଥାପି ଭଗବାନଙ୍କ ଦର୍ଶନ ପାଇପାରିଲୁ ନାହିଁ । ଭଗବାନ୍ ତ ହବ୍ୟକବ୍ୟ ପାଇଁ ବ୍ୟାକୁଳ ନାହାନ୍ତି । ତାଙ୍କର କୃପାହେଲେ ତାଙ୍କ ଦର୍ଶନ ମିଳେ । ସେ ସାଧନସାଧ୍ୟ ନୁହନ୍ତି କି କୃପାସାଧ୍ୟ ନୁହନ୍ତି । ତେଣୁ ଆପଣ କ୍ରୋଧ ପରିହାର କରନ୍ତୁ । ଭଗବାନଙ୍କର ଯେବେ କୃପା ହେବ ସେତେବେଳେ ଆପଣ ତାଙ୍କୁ ଦେଖିପାରିବେ ।

ଯେତେବେଳେ ଏକତ ମୁନି ଏକଥା କହିଲେ ଏବଂ ଦ୍ୱିତ ଓ ତ୍ରିତ ତାଙ୍କ କଥାକୁ ଅନୁମୋଦନ କଲେ । ସେତେବେଳେ ବୃହସ୍ପତି ତାଙ୍କର କ୍ରୋଧ ପରିତ୍ୟାଗ କଲେ । ସେ ଭଗବଦ୍ଭକ୍ତ ମହାରାଜ ଉପରିଚର ବସୁଙ୍କ ଯଜ୍ଞକୁ ବିଧିବତ୍ ସମାପନ କଲେ । ମହାରାଜଙ୍କ ଉପରେ ଭଗବାନ ପ୍ରସନ୍ନ ହେଲେ । କାଳାନ୍ତରରେ ସେ ସ୍ୱର୍ଗଗାମୀ ହେଲେ ଓ ପୁଣି ପରେ ଋଷିମାନଙ୍କ ଅଭିଶାପ ହେତୁ ପୃଥିବୀକୁ ଆସିଲେ ।

ଏହା ଶୁଣି ଶୌନକ ପଚାରିଲେ—ମହାଭାଗ ! ଏତେ ବଡ଼ ଭଗବଦ୍ଭକ୍ତ ରାଜାଙ୍କର ପତନ କିପରି ହେଲା ? ମହାରାଜ ଉପରିଚର ବସୁ ଋଷିମାନଙ୍କର କି ଅପରାଧ କରିଥିଲେ ?

ମହର୍ଷି ସୂତ କହିଲେ—ମହାଶୟ ! କିଏ କାହାର ଅପରାଧ କରେ ? ସବୁ କିଛି ଭଗବାନଙ୍କ ଲୀଳା । ସେ ଯାହାକୁ ଯେଉଁ କାମରେ ଲଗାଇବାକୁ ଚାହାନ୍ତି ତାକୁ ସେହି ପ୍ରବୃତ୍ତି ଦେଇ ଦିଅନ୍ତି । ଭଗବଦ୍ଭକ୍ତମାନଙ୍କ ପାଇଁ ଭଗବାନଙ୍କ ସ୍ମୃତି ରହିଥିବ, ମୁଖରେ ତାଙ୍କ ନାମ ଉଚ୍ଚାରିତ ହେଉଥିବ, ତେବେ ଯାଇ ସେମାନଙ୍କ ପାଇଁ ସ୍ୱର୍ଗ, ନର୍କ, ପୃଥ୍ୱୀ ଓ ଅନ୍ୟାନ୍ୟ ଉଚ୍ଚନୀଚ ସବୁଲୋକ ସମାନ ବୋଲି ଦେଖାଯିବେ । ଭଗବଦ୍ଭକ୍ତମାନଙ୍କର ସମବୁଦ୍ଧି ଆସିଲେ ଭେଦବୁଦ୍ଧି ନଷ୍ଟ ହୋଇଯାଏ । ସେହିପରି ମହାରାଜ ଉପରିଚର ଭଗବଦ୍ଭକ୍ତ ଥିଲେ । କିନ୍ତୁ ପକ୍ଷପାତ ମୂଳ କଥା କହିବାରୁ ତାଙ୍କର ସ୍ୱର୍ଗରୁ ପତନ ଘଟିଲା । ସେହି ପ୍ରସଙ୍ଗ ମଧ୍ୟ ମୁଁ ଆପଣମାନଙ୍କୁ କହୁଛି, ଶୁଣନ୍ତୁ ।

ଥରେଦେବତାମାନେ ଋଷିମାନଙ୍କୁ କହିଲେ—ଋଷିବୃନ୍ଦ ! ଆପଣମାନେ ଯଜ୍ଞରେ କେବଳ ଅଜାକୁ ହବନ କରିବେ । ଅନ୍ୟ ପଶୁ ହବନ କରିବେ ନାହିଁ ।

ଋଷିମାନେ ପଚାରିଲେ—ଅଜାର ଅର୍ଥ କ'ଣ ?

ଦେବତାମାନେ କହିଲେ—ଅଜାର ଅର୍ଥ ଛେଳି ।

ଋଷିମାନେ କହିଲେ—ପଶୁକୁ ମାରି ହବନ କରିବା ସତ୍ପୁରୁଷମାନଙ୍କର କାର୍ଯ୍ୟ ନୁହେଁ । ବୀଜଧାନ୍ୟ ଆଦିରେ ପୁରୋଡ଼ାଶ କରି ବଧି ପୂର୍ବକ ହବନ କରିବା ପାଇଁ ବେଦ ଅନୁମତ ଦେଇଛି । ସେହି ପକ୍ୱବୀଜର ନାମ ହିଁ ଅଜ ବା ଅଜା ।

ଦେବତାମାନେ କହିଲେ—ନାଁ, ଅଜର ଅର୍ଥ ଛେଳି । ଯଜ୍ଞରେ ଛେଳିକୁ ହିଁ ବଳି ଦେବା ଉଚିତ ।

ଏହିପରି ଦେବତା ଓ ଋଷିମାନଙ୍କ ମଧ୍ୟରେ ବାଦବିବାଦ ଚାଲିଥିବା ସମୟରେ ଧର୍ମାତ୍ମା ମହାରାଜ ଉପରିଚର ସେଠାରେ ପହଞ୍ଚିଗଲେ । ସେ ନିଜର ତପସ୍ୟା ପ୍ରଭାବରୁ ବିମାନରେ ବସି ଆକାଶରେ ବିଚରଣ କରୁଥିଲେ । ଦେବତା ଓ ଋଷିମାନେ କହିଲେ—ମହାରାଜ ଉପରିଚର ହେଉଛନ୍ତି ଜଣେ ଧାର୍ମିକ ରାଜା । ସେ କେବେହେଲେ ଅସତ୍ୟ ଭାଷଣ କରିବେ ନାହିଁ । ଏହି ବାଦବିବାଦରେ ଆମେ ତାଙ୍କୁ ମଧ୍ୟସ୍ଥ ବୋଲି ମାନୁଛୁ । ଦୁଇପକ୍ଷ ରାଜାଙ୍କୁ ବିଚାରକ ହେବା ପାଇଁ ଅନୁରୋଧ କଲେ । ଦୁଇପକ୍ଷଙ୍କ କଥା ଶୁଣି ରାଜା ଦେବତାମାନଙ୍କ ପକ୍ଷ ସମର୍ଥନ କରି କହିଲେ—ଯଜ୍ଞରେ ଛେଳିକୁ ହବନ କରିବା ଉଚିତ ।

ଏହା ଶୁଣିବା ମାତ୍ରେ ଋଷିମାନେ ରାଗିଗଲେ । ସେମାନେ ତାଙ୍କୁ ଅଭିଶାପ ଦେଇ କହିଲେ—ରାଜନ୍ ! ଆପଣ ପକ୍ଷପାତ ବିଚାର କଲେ । ତେଣୁ ଆପଣଙ୍କର ଅନ୍ତରୀକ୍ଷରେ ଭ୍ରମଣ କରିବା ସାମର୍ଥ୍ୟ ଆଜିଠାରୁ ନଷ୍ଟ ହୋଇଯାଉ । ଆପଣ ସ୍ୱର୍ଗଚ୍ୟୁତ ହୋଇ ପୃଥିବୀର ବିବରରେ ରହନ୍ତୁ ।

ଋଷିମାନଙ୍କ ଅଭିଶାପ ପାଇବା ସଙ୍ଗେ ସଙ୍ଗେ ରାଜା ସ୍ୱର୍ଗଭ୍ରଷ୍ଟ ହୋଇ ପୃଥିବୀରେ ରହିବାକୁ ଲାଗିଲେ । କିନ୍ତୁ ତାଙ୍କର ପୂର୍ବଜନ୍ମର ସ୍ମୃତି ଅତୁଟ ଥିଲା । ଦେବତାମାନେ ଦେଖିଲେ ସେମାନଙ୍କ ପକ୍ଷ ସମର୍ଥନ କରିଥିବାରୁ ରାଜାଙ୍କୁ ବିପଦ ପଡ଼ିଲା । ତେଣୁ ସେମାନେ ତାଙ୍କ ପାଖକୁ ଯାଇ କହିଲେ—ରାଜନ୍ ! ଆପଣ କୌଣସି ଚିନ୍ତା କରନ୍ତୁ ନାହିଁ । ଶ୍ରୀମନ୍ନାରାୟଣ ଆପଣଙ୍କର ନିଶ୍ଚୟ ମଙ୍ଗଳ କରିବେ । ଶାପପାଇଥିଲେ ମଧ୍ୟ ଆପଣ କେବେ-ହେଲେ ବ୍ରାହ୍ମଣମାନଙ୍କ ପ୍ରତି ଦ୍ୱେଷ କରନ୍ତୁ ନାହିଁ । ଯଜ୍ଞରେ ପୂର୍ଣ୍ଣାହୁତି ସମୟରେ ଆମେ ଆପଣଙ୍କୁ ବସୁଧାରା ଦେବୁ । ତାକୁ ପାନ କରି ଆପଣ ସନ୍ତୁଷ୍ଟ ରହନ୍ତୁ । ଏପରି ବର ଦେଇ ଦେବତାମାନେ ଚାଲିଗଲେ । ତା' ପରେ ରାଜା ବସୁ ପୃଥ୍ୱୀ ଗହ୍ୱରରେ ରହି ଦେବତାମାନେ କହିବା ଅନୁଯାୟୀ ଯଜ୍ଞୀୟ ବସୁଧାରାକୁ ପାନକରି କାଳଯାପନ କରିବାକୁ ଲାଗିଲେ ।

ଏହାପରେ ରାଜା ସର୍ବଦା ଭଗବାନଙ୍କ ଆରାଧନାରେ ଲାଗିଗଲେ । କାରଣ ହରିସ୍ମୃତି ସମସ୍ତ ବିପତ୍ତିକୁ ପୁରାପୁରି ବିନଷ୍ଟ କରେ ବୋଲି ସେ ଜାଣିଥିଲେ । ଶ୍ରୀମନ୍ନାରାୟଣଙ୍କ ସ୍ମରଣ କୀର୍ତ୍ତନ ସମସ୍ତ ଶୋକ ସନ୍ତାପକୁ ଦୂର କରିବା ପାଇଁ ସମର୍ଥ । ଏହା ଭାବି ସେ ନିରନ୍ତର ନାରାୟଣ ମନ୍ତ୍ର ଜପ କରିବାକୁ ଲାଗିଲେ ।

ପ୍ରତିଦିନ ନିୟମ ଅନୁସାରେ ସେ ଭଗବାନଙ୍କର ପୂଜା କରୁଥିଲେ । ନାରାୟଣଙ୍କ ନାମ କୀର୍ତ୍ତନ, ନାରାୟଣ ମନ୍ତ୍ର ଜପ ଓ ନାରାୟଣଙ୍କ ପୂଜା ଅର୍ଚ୍ଚନା ଆଦିରେ ସେ ନିଜର ସମସ୍ତ ଅତିବାହିତ କରିବାକୁ ଲାଗିଲେ । ବ୍ରାହ୍ମଣମାନଙ୍କ ସତ୍କାର ମଧ୍ୟ କରୁଥିଲେ । ବ୍ରାହ୍ମଣ-

ମାନଙ୍କଠାରେ ତାଙ୍କର କେବେହେଲେ ଦ୍ୱେଷଭାବ ନ ଥିଲା । ଏହା ଦେଖି ଶ୍ରୀମନ୍ନାରାୟଣ ପରମ ସନ୍ତୋଷ ଲାଭ କଲେ । ରାଜାଙ୍କୁ ପୁଣି ଥରେ ଉପରିଚର କରିଦେବା ପାଇଁ ଅନ୍ତରୀକ୍ଷରେ ଭ୍ରମଣ କରିବା ଶକ୍ତି ତାଙ୍କୁ ଦେବା ପାଇଁ ସେ ଗରୁଡ଼ଙ୍କୁ ଆଦେଶ ଦେଲେ ।

ଏହା ଶୁଣି ଗରୁଡ଼ ସଙ୍ଗେ ସଙ୍ଗେ ପୃଥିବୀ ବିବରକୁ ଯାଇ ରାଜାଙ୍କୁ ଉଡ଼ାଇ ଆଣି ଆକାଶରେ ଛାଡ଼ିଦେଲେ । ସେହିଦିନଠାରୁ ସେ ପୁଣି ଉପରିଚର ହୋଇଗଲେ ଏବଂ ପୂର୍ବ ପରି ଆକାଶରେ ଭ୍ରମଣ କରିବାକୁ ଲାଗିଲେ । ସେ ସଶରୀରରେ ବ୍ରହ୍ମଲୋକକୁ ଗଲେ ।

ମହର୍ଷି ସୂତ କହିଲେ—ମୁନିଗଣ ! ଭଗବଦ୍‌ଭକ୍ତର ଏହାହିଁ ମାହାତ୍ମ୍ୟ । ଦେବତା-ମାନଙ୍କ ପକ୍ଷ ସମର୍ଥନ କରି ପକ୍ଷପାତ ବିଚାର କରିଥିବାରୁ ମହାରାଜ ଉପରିଚର ବାଣୀ ଦୋଷରେ ଦୂଷିତ ହୋଇ ବ୍ରାହ୍ମଣମାନଙ୍କ ଅଭିଶାପ ପାଇ ମଧ୍ୟ ଶ୍ରୀମନ୍ନାରାୟଣଙ୍କ ପ୍ରତି ଅଚଳା ଭକ୍ତି ପୋଷଣ କରିଥିବାରୁ ସଶରୀରରେ ବ୍ରହ୍ମଲୋକ ଯାଇପାରିଥିଲେ । ମୁନିଗଣ ! ମହାରାଜ ଉପରିଚର ବସୁଙ୍କ କଥା ମୁଁ ସଂକ୍ଷେପରେ ଆପଣମାନଙ୍କୁ କହିଲି । ଆପଣମାନେ ଆଉ କ'ଣ ଶୁଣିବା ପାଇଁ ଇଚ୍ଛା କରୁଛନ୍ତି ?

ଶୌନକ କହିଲେ—ମହାଭାଗ ! ବର୍ତ୍ତମାନ ଆପଣ ଆମମାନଙ୍କୁ କୌରବ ବଂଶ ଛଡ଼ା ଅନ୍ୟ ମୁଖ୍ୟ ରାଜାମାନଙ୍କର ଚରିତ କହନ୍ତୁ ।

ମହର୍ଷି ସୂତ କହିଲେ—ଠିକ୍ ଅଛି, ମହାଶୟ ! ଏବେ ଆପଣ କୌରବ ବଂଶର ପରବର୍ତ୍ତୀ ରାଜାମାନଙ୍କ ଚରିତ ଶୁଣନ୍ତୁ ।

### ଛପ୍‌ପୟ

ସ୍ୱର୍ଗଚ୍ୟୁତ ହ୍ୱୈ ଭୂମିବିବର ମହଁ ବସହିଁ ଉପରିଚର ।<br>
ନାରାୟଣ କୋ ମନ୍ତ୍ର ଜପେଂ ପୂଜାମହଁ ତତ୍ପର ॥<br>
ନାରାୟଣ କୋ ନାମ ନୀରନ୍ତର ନିତ ନିତ ଗାଵେଂ ।<br>
ନାରାୟଣ କୋ ଧ୍ୟାନ କରେଁ ତନ୍ମୟ ହ୍ୱୈ ଜାଵେଁ ॥<br>
ନାରାୟଣ ଅଜ୍ଞା ଦଈ, ଗରୁଡ଼ ଶାପ ମୋଚନ କର୍‌ୟୋ ।<br>
ନାରାୟଣ ନେ ନୃପତି କୋ, ତାପ ଶାପ ସବଈ ହର୍‌ୟୋ ॥



## ଚେଦିରାଜାମାନଙ୍କ କଥା

ଅନନ୍ୟସ୍ୟାଂ ଶୃତି ଶ୍ରାଣ୍ୟାୟୁଂ ଖଣ୍ଡଲେ ଦ୍ୱେ ବୃହଦ୍ରଥାତ୍ ।
ତେ ମାତ୍ରା ବହିରୁତ୍ସୃଷ୍ଟେ ଜରୟା ଚାଭି ସନ୍ଧିତେ ।
ଜୀବ ଜୀବେତି କ୍ରୀଡ଼ନ୍ତ୍ୟା ଜରାସନ୍ଧୋଽଭବତ୍ସୁତଃ ॥

(ଭାଗ ୯ସ୍କ-୨୨ଅ ୭-୮ଶ୍ଳୋ)

### ଛପ୍ପୟ

ବସୁକେ ଚେଦ ନରେଶ ବୃହଦ୍ରଥ ତିନ କୁଶାଗ୍ର ସୁତ ।
ତିନ କେ ସୁତ ନୃପ ଋଷଭ ଋଷଭକେ ପୁତ୍ର ସତ୍ୟହିତ ॥
ନୃପତି ବୃହଦ୍ରଥ ଅପର ନାରି ଦ୍ୱୈଭଗ ଦେହ କେ ।
ଜନେ ମୃତକ ଲଖି ତୁରତ ଫେଁକାୟେ ନିକଟ ଦେହରିକେ ॥
ଜରା ନାମ କୀ ରାକ୍ଷସୀ, ଭଗ ଉଭୟ ଜୋଡ଼େ ଜବହିଁ ।
ଜୀବ ଜୀବ କହିବେ ଲଗୀ, ଉଠି ରୋୟୋ ସୋ ଶିଶୁ ତବହିଁ ॥

ଭଗବାନଙ୍କର ବିଧାନ ଜୀବ ବୁଝିପାରିବ ନାହିଁ । ଯଦି ସେ ସବୁ ବୁଝିପାରୁଥାନ୍ତା, ତାହାହେଲେ ତା'ର ଜୀବ ସଂଜ୍ଞା ରହନ୍ତା ନାହିଁ, ସେ ଶିବସ୍ୱରୂପ ହୋଇଯାନ୍ତା । ଯେଉଁ ଜିନିଷକୁ ଆମେ ବ୍ୟର୍ଥ ବୋଲି ଭାବି ଫୋପାଡ଼ି ଦେଉଁ, ପରେ ତାହା ଅମୂଲ୍ୟ ହୋଇଯାଏ । ତାହାକୁ ବହୁ ମୂଲ୍ୟର ଜିନିଷ ଭାବି, ବଡ଼ ଯତ୍ନ ସହକାରେ ରଖୁ, ପରେ ତାହା ପଇସାକର ଜିନିଷ ହୋଇ ରହେ ନାହିଁ । ନିର୍ଜନ ସ୍ଥାନରେ ମଲା ଲୋକ ଜୀବନ ପାଏ ଓ ଭଗବାନଙ୍କ ଇଚ୍ଛା ଯୋଗୁଁ ଜୀବନ୍ତ ପ୍ରାଣୀ ଆଖି ପିଛୁଳାକେ ଶବରେ ପରିଣତ ହୋଇଯାଏ । ସେଥିପାଇଁ ଦୈବବଳ ହିଁ ଯଥାର୍ଥ ବଳ ରୂପେ ଅଭିହିତ ।

ମହର୍ଷି ସୂତ କହିଲେ —ମୁନିଗଣ ! ବର୍ତ୍ତମାନ ମୁଁ କୌରବ ବଂଶର ପରବର୍ତ୍ତୀ ରାଜାମାନଙ୍କ ବୃତ୍ତାନ୍ତ କହୁଛି ଶୁଣନ୍ତୁ । ମହାରାଜ ଉପରିଚର ବସୁଙ୍କର ବୃହଦ୍ରଥ, କୁଶାମ୍ବ, ମତ୍ସ୍ୟ, ପ୍ରତ୍ୟଗ୍ର ଏହିପରି ପୁତ୍ରମାନେ ଜନ୍ମ ହେଲେ । ଏମାନେ ସମସ୍ତେ ଚେଦିପ ବୋଲି ବିଖ୍ୟାତ ହେଲେ । ଏମାନଙ୍କ ମଧ୍ୟରେ ବୃହଦ୍ରଥ ସମସ୍ତଙ୍କଠାରୁ ବଡ଼ ଥିଲେ । ଏହାଙ୍କର ପୁତ୍ର ହେଲେ କୁଶାଗ୍ର । ତାଙ୍କଠାରୁ ଋଷଭ, ତାଙ୍କଠାରୁ ସତ୍ୟହିତ, ତାଙ୍କଠାରୁ ପୁଷ୍ପବାନ୍

ଓ ତାଙ୍କଠାରୁ ଜହ୍ନୁ ଜନ୍ମ ଗ୍ରହଣ କଲେ । ବୃହଦ୍ରଥଙ୍କର ଆଉ ଏକ ପୁଅ ଜରାସନ୍ଧ ନାମରେ ବିଖ୍ୟାତ ହେଲା । ସେ ଦୁଇଭାଗରେ ପୃଥକ ହୋଇ ଜନ୍ମଗ୍ରହଣ କରିଥିଲା ।

ଏହା ଶୁଣି ଶୌନକ ପଚାରିଲେ—ମହାଭାଗ ! ପୃଥକ୍ ପୃଥକ୍ ହୋଇ ଜରାସନ୍ଧ କିପରି ଜନ୍ମ ହେଲା ଓ ପରେ କିପରି ଜୀବନ ଲାଭ କଲା ? ଏହା ତ ବଡ଼ ଅଦ୍ଭୁତ କଥା । ଦୟା କରି ଏହାର ରହସ୍ୟ ବୁଝାଇ ଦିଅନ୍ତୁ ।

ମହର୍ଷି ସୂତ କହିଲେ—ମୁନିଗଣ ! ଏହା ବଡ଼ ଅଦ୍ଭୁତ କଥା ନିଶ୍ଚୟ । ମୁଁ ବର୍ତ୍ତମାନ ଜରାସନ୍ଧ କଥା କହୁଛି ଶୁଣନ୍ତୁ । ମଗଧ ଦେଶର ମହାରାଜା ବୃହଦ୍ରଥ ଜଣେ ଧର୍ମାତ୍ମା ଓ ନ୍ୟାୟପ୍ରିୟ ରାଜା ଥିଲେ । କାଶୀରାଜାଙ୍କର ଦୁଇଝିଅ ସହିତ ତାଙ୍କର ବିବାହ ହୋଇଥିଲା । ସେ କନ୍ୟା ଦୁହେଁ ଯାଆଁଳା ସନ୍ତାନ ଥିଲେ । ଦୁହେଁ ଅତ୍ୟନ୍ତ ସୁନ୍ଦରୀ ଓ ସର୍ବଗୁଣ ସମ୍ପନ୍ନା ଥିଲେ । ଦୁହିଁଙ୍କ ମଧ୍ୟରେ ଗଭୀର ସ୍ନେହ ଥିଲା । ଯେଉଁ ରାଜକୁମାର କୌଣସି ପ୍ରକାର ପକ୍ଷପାତ ବିଚାର କରିବେ ନାହିଁ, ସେହିପରି ଏକ ରାଜାଙ୍କୁ ଦୁହେଁ ବିବାହ କରିବେ ବୋଲି ପୂର୍ବରୁ ପ୍ରତିଜ୍ଞା କରିଥିଲେ । ବିବାହ ପୂର୍ବରୁ ବୃହଦ୍ରଥ ପ୍ରତିଜ୍ଞା କଲେ—ମୁଁ ତୁମ ଦୁହିଁଙ୍କ ସହିତ ସମାନ ବ୍ୟବହାର କରିବି । କୌଣସି ପ୍ରକାର ପକ୍ଷପାତ କରିବି ନାହିଁ । ଏହା ଶୁଣି ଦୁଇ ରାଜକୁମାରୀ ଖୁବ୍ ଖୁସିହେଲେ ଏବଂ କାଶୀରାଜ ଦୁଇକନ୍ୟାଙ୍କୁ ରାଜା ବୃହଦ୍ରଥଙ୍କ ସହିତ ବିବାହ କରାଇଦେଲେ । ରାଜା ନିଜର ପ୍ରତିଜ୍ଞା ଅନୁସାରେ ଦୁହିଁଙ୍କ ପ୍ରତି ସମାନ ବ୍ୟବହାର କରିବାକୁ ଲାଗିଲେ । ରାଜା ବିବାହ ହେବାର ଅନେକ ଦିନ ବିତିଗଲେ ମଧ୍ୟ କୌଣସି ରାଣୀ ସନ୍ତାନବତୀ ହେଲେ ନାହିଁ । ଏଥିରେ ରାଜା ଓ ରାଣୀମାନେ ବଡ଼ ଦୁଃଖିତ ଓ ଚିନ୍ତିତ ହୋଇ ପଡ଼ିଲେ । ରାଜା ଧୀରେ ଧୀରେ ବୃଦ୍ଧ ହେବାକୁ ଯାଉଥାନ୍ତି ।

ଦିନେ କକ୍ଷୀବାନ୍ ଗୌତମ ଋଷିଙ୍କ ପୁତ୍ର ପରମତେଜସ୍ୱୀ ମହର୍ଷି ଚଣ୍ଡକୌଶିକ ବୁଲି ବୁଲି ଆସି ମଗଧ ଦେଶରେ ପହଞ୍ଚିଲେ । ନଗରଠାରୁ ଦୂରରେ ଥିବା ଏକ ଆମ୍ବ-ତୋଟାରେ ସେ ରହିଲେ । ବହୁ ଲୋକ ମୁନିଙ୍କ ଦର୍ଶନ ପାଇଁ ଆସିବାକୁ ଲାଗିଲେ । ମହା-ରାଜା ମୁନିଙ୍କ ଆଗମନ କଥା ଶୁଣି ମନ୍ତ୍ରୀ, ପୁରୋହିତ ଓ ଦୁଇ ରାଣୀଙ୍କ ସହିତ ମୁନିଙ୍କୁ ଦର୍ଶନ କରିବା ପାଇଁ ଗଲେ । ଆଷାଢ଼ ମାସ । ସଘନ ବୃକ୍ଷ ତଳେ ଦର୍ଶକମାନଙ୍କ ଭିତରେ ମୁନି ମୂର୍ତ୍ତିମାନ୍ ତପସ୍ୟା ପରି ଦେଖା ଯାଉଥିଲେ । ରାଜା ବିଧିବତ୍ ମୁନିଙ୍କ ଚରଣରେ ପ୍ରଣାମ କଲେ । ତା'ପରେ ରାଣୀ ଦୁହେଁ ମୁଣ୍ଡରେ ଓଢ଼ଣା ଦେଇ ମୁନିଙ୍କ ଚରଣ ସ୍ପର୍ଶ କଲେ । ରାଜା ଓ ରାଣୀମାନେ ମୁନିଙ୍କର ଷୋଡ଼ଶୋପଚାର ପୂଜା କଲେ । ମୁନି ମଧ୍ୟ ଶାସ୍ତ୍ରୀୟ ବିଧିରେ ରାଜାଙ୍କ ପୂଜା ସ୍ୱୀକାର କଲେ । ପୂଜା ପରେ ରାଜା ବଡ଼ କରୁଣ ସ୍ୱରରେ ମହର୍ଷିଙ୍କୁ ସ୍ତୁତିକଲେ । ପୂଜା ଓ ସ୍ତୁତିରେ ପ୍ରସନ୍ନ ହୋଇ ମହର୍ଷି କହିଲେ—ରାଜନ୍ ! ମୁଁ ଆପଣଙ୍କ ପୂଜା ଓ ସ୍ତୁତିରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଛି । ଆପଣ ଯାହା ବର ମାଗିବେ ମାଗନ୍ତୁ ।

ରାଜା କହିଲେ—ବ୍ରହ୍ମନ୍ ! ମୁଁ ବର ନେଇ କଣ କରିବ ? ମୋର ପିତା ସ୍ୱର୍ଗରେ କାନ୍ଦୁଥିବେ ! ମୁଁ ରାଣୀମାନଙ୍କ ସହିତ କାନ୍ଦୁଛି । ଦେଖନ୍ତୁ, ମୋର କେଶ ପାଚିଗଲାଣି । ମୁଁ ତ ଏବେ ବାନପ୍ରସ୍ଥ ପାଇଁ ପ୍ରସ୍ତୁତ ହେଲିଣି ।

ସର୍ବଜ୍ଞ ମୁନି ରାଜାଙ୍କର ଅନ୍ତର୍ବେଦନା ବୁଝି ପାରିଲେ । ସେ ଧ୍ୟାନମଗ୍ନ ହେଲେ ଓ ସେହି ସମୟରେ ଏକ ସୁନ୍ଦର ଆମ୍ବ ମୁନିଙ୍କ କୋଳରେ ଆସି ପଡ଼ିଲା । ସେହି ଆମ୍ବଟି ଧରି ମୁନି କହିଲେ —ରାଜନ ! ଏ ଆମ୍ବକୁ ରାଣୀଙ୍କୁ ଦିଅନ୍ତୁ । ଏଥିରୁ ଆପଣଙ୍କର ସନ୍ତାନ ଜନ୍ମ ହେବ ।

ଫଳ ପାଇ ରାଜା ଖୁସିହେଲେ । ଘରକୁ ଯାଇ ନିୟମାନୁସାରେ ଫଳଟିକୁ ଦୁଇ ଭାଗ କରି ଦୁଇରାଣୀଙ୍କୁ ଖାଇବାକୁ ଦେଲେ । ଫଳକୁ ଖାଇବା ପରେ ଦୁଇରାଣୀ ଗର୍ଭବତୀ ହେଲେ । ଏ ସମ୍ବାଦ ପାଇ ରାଜା ଓ ପ୍ରଜାମାନେ ଖୁସିହେଲେ । ଯଥା ସମୟରେ ଦୁଇରାଣୀ ପ୍ରସବ କଲେ । ପ୍ରତ୍ୟେକଙ୍କ ଗର୍ଭରୁ ଗୋଟିଏ ଦେହର ଅଧା ଅଧା ଭାଗ ଉତ୍ପନ୍ନ ହେଲା । ଗୋଟିଏ ହାତ, ଗୋଟିଏ ଗୋଡ଼, ଗୋଟିଏ ଆଖି, ଗୋଟିଏ କାନ ଏହିପରି । ଅଧା ଅଧା ହୋଇ ଜନ୍ମହୋଇଥିବା ପୁଅକୁ ନେଇ ସେମାନେ କଣ କରିଥାନ୍ତେ । ତେଣୁ ସେମାନେ ଧାଇକୁ ଡାକି କହିଲେ – ଏ ଦୁଇଟିଯାକ ଅଧା ଶରୀରକୁ ନେଇ ରାଜମହଲ ପଛରେ ପକାଇ ଦେଇ ଅସ ।

ଧାଇ ସେ ଦୁଇ ଅଧା ଅଙ୍ଗକୁ ଗୋଟିଏ ପାତ୍ରରେ ରଖି ରାଜମହଲ ପଛରେ ଏକ ଶୂନ୍ୟସ୍ଥାନରେ ରଖିଦେଇ ଆସିଲା । ସେହି ସମୟରେ ଜରା ନାମ୍ନୀ ଏକ ରାକ୍ଷସୀ ସେଠାରେ ପହଞ୍ଚିଗଲା । ସେ ଦେଖିଲା ଦୁଇଟିଯାକ ଅର୍ଦ୍ଧାଙ୍ଗ ଜୀବିତ ଅଛି । ସେ ଦୁଇଟି ଅଧା ଶରୀରକୁ ଆଣି ଗୋଟିଏ ଶରୀର କରି ଯୋଡ଼ିଦେଲା ଓ ଖେଳିଲା ପରି କହିବାକୁ ଲାଗିଲା– ବଞ୍ଚିଯା, ବଞ୍ଚିଯା ।

ଏପରି କରିବା ମାତ୍ରେ ଦୁଇଟିଯାକ ଶରୀର ଯୋଡ଼ିହୋଇଯାଇ ଏକ ବଡ଼ ସୁନ୍ଦର ଶିଶୁ ହେବାର ଦେଖି ରାକ୍ଷସୀର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଶିଶୁଟି ସଙ୍ଗେ ସଙ୍ଗେ କାନ୍ଦିବାକୁ ଲାଗିଲା । ଜରା ଏକ ସୁନ୍ଦରୀ ସ୍ତ୍ରୀ ରୂପ ଧାରଣ କରି ଶିଶୁକୁ ନେଇ ରାଜମହଲକୁ ଗଲା ଓ କହିଲା—ରାଣୀ ! ଏ ପୁଅକୁ ତୁମେ ମଲା ପିଲା ବୋଲି ଭାବି ଫୋପାଡ଼ି ଦେଇଥିଲ । କିନ୍ତୁ ବିଧାତା ଏହାକୁ ରକ୍ଷା କଲା । କାନ୍ଥରେ ଚିତ୍ର କରି ତୁମେମାନେ ମୋର ପୂଜା କରିଥିଲ । ସେଥିପାଇଁ ମୁଁ ତୁମମାନଙ୍କର ଏହି ଉପକାର କଲି ।

ପୁତ୍ରକୁ ପାଇ ରାଜା ଓ ରାଣୀମାନେ ଆନନ୍ଦିତ ହେଲେ । ବ୍ରାହ୍ମଣମାନଙ୍କୁ ଅନେକ ଧନରତ୍ନ ଦାନ କଲେ । ଯାଚକ ଆଶ୍ରିତ ଓ ଅଭ୍ୟାଗତ ମାନଙ୍କ ମନୋରଥ ପୂର୍ଣ୍ଣ କଲେ । ଜରା ରାକ୍ଷସୀ ଦ୍ୱାରା ସନ୍ଧିତ ହୋଇ ବଞ୍ଚିଥିବାରୁ ରାଜା ପୁତ୍ରର ନାମ ରଖିଲେ ଜରାସନ୍ଧ । ସେହିଦିନୁ ମଗଧର ସମସ୍ତଙ୍କ ଘରେ ସେହି ରାକ୍ଷସୀର ପୂଜା ପ୍ରଚଳନ କରାଗଲା ।

ଜରାସନ୍ଧ ବଡ଼ ପରାକ୍ରମଶାଳୀ ବୀର, ବଳୀ ଓ ବଡ଼ ଅଭିମାନୀ ଥିଲା । ସେ ପୃଥିବୀର ସମସ୍ତ ରାଜାଙ୍କୁ ପରାଜିତ କରିଥିଲା । ଜନାରାଣୀ ବାନପ୍ରସ୍ଥାଶ୍ରମ ଗ୍ରହଣ କରି ବନକୁ ଚାଲିଯିବା ପରେ ଜରାସନ୍ଧ ମଗଧର ରାଜା ହୋଇଥିଲେ । ଜଳୁଥିବା ଦୀପ ଶିଖା ପାଖକୁ ଆସି ପତଙ୍ଗ-ମାନେ ଯୋଉଁଭଳି ପଡ଼ି ଶତ୍ରୁମାନେ ଜରାସନ୍ଧ ପାଖକୁ ଆସି ଶ୍ରୀହୀନ ହୋଇଯାଉଥିଲେ । ସେତେବେଳେ ତା'ପରି ସମକକ୍ଷ ବୀର ନଥିଲେ । ଜରାସନ୍ଧ ଶ୍ରୀକୃଷ୍ଣଙ୍କ ବିରୁଦ୍ଧରେ ମଧ୍ୟ ଅଠର ଥର ଯୁଦ୍ଧ କରିଥିଲେ । ଶେଷରେ ତାହାର ଭୟରେ ଶ୍ରୀକୃଷ୍ଣ ନିଜର ପରିବାର ଓ ଜ୍ଞାତିଙ୍କ ସହିତ ଯାଇ ଦ୍ୱାରକାରେ ରହିଲେ । ମହାବଳୀ ଭୀମ ହାତରେ ଭଗବାନ୍ ତାକୁ ବଧ କରାଇଥିଲେ । ସେ କଥା ମୁଁ ପରେ କହିବି ।

ମହର୍ଷି ସୂତ ପୁଣି କହିଲେ—ମୁନିଗଣ ! ଚେଦିରାଜ ବୃହଦ୍ରଥଙ୍କ ପୁଅ ଜରାସନ୍ଧର ଚରିତ କହିଲି । ଜରାସନ୍ଧଙ୍କ ପୁଅ ସହଦେବ ଜଣେ ଶକ୍ତିଶାଳୀ ରାଜା ଥିଲେ । ବର୍ତ୍ତମାନ ଅନ୍ୟ ରାଜବଂଶ କଥା କହୁଛି ଆପଣମାନେ ମନ ଦେଇ ଶୁଣନ୍ତୁ ।

### ଛପ୍ପୟ

ଜରାସନ୍ଧ ଅତି ବଳୀ ଭଜନ୍ତି ନୃପ ଯେତେକଁ ପଦ ରଜ ।  
ନାଥ ତାଙ୍କ ରଣଛାଡ଼ ଦ୍ୱାରକା ଭଗେ ତ୍ୟାଗି ବ୍ରଜ ॥  
ତାସୁ ପୁତ୍ର ସହଦେବ ଭଏନ୍ତୁ ସୋମାପି ତାସୁ ସୁତ ।  
ଶ୍ରୁତଶ୍ରବା ତିନି ତନୟ ଚେଦି କୁଳ ଭୂଷଣ ରଣଜିତ ॥  
ଜହ୍ନୁ ସୁତ ଭୀମର କହ୍ନ ତନ ରୌଦ୍ର ବିଦୁରଥ ହେଁ ଗଏନ୍ତୁ ।  
ତିନି ଜୀ ନବମୀ ମାଁଟି ମହିଁ, ନୃପ ପ୍ରାର୍ଥୀ ଭୂପତି ଭଏନ୍ତୁ ॥



# ମହାରାଜ ଶାନ୍ତନୁଙ୍କ କଥା

### ଛପ୍‌ପୟ

ଅଭବଚ୍ଛନ୍ତନୁ ରାଜା ପ୍ରାଙ୍‌ମହାଭିଷ୍‌ସଂଜ୍ଞିତଃ ।
ଯଂ ଯଂ କରାଭ୍ୟାଂ ସ୍ପୃଶତି ଜୀର୍ଣ୍ଣଂଯୌବନମେତି ସଃ ॥
ଶାନ୍ତିମାପ୍ନୋତି ଚୈବାଗ୍ର୍ୟାଂ କର୍ମଣା ତେନ ଶନ୍ତନୁଃ ।
ସମା ଦ୍ୱାଦଶ ତଦ୍‌ରାଜ୍ୟେ ନ ବବର୍ଷ ଯଦା ବିଭୁଃ ॥

(ଭାଗ-୯ସ୍କ, ୨୨ଅ, ୧୩-୧୪ ଶ୍ଳୋ)

### ଛପ୍‌ପୟ

ନୃପ ପ୍ରତୀପକେ ତୀନ ତନୟ ଦେବାପି ବଡ଼େ ସୁତ ।
ଗୟେ ବଣ ତଜି ନୃପତି ଭୟେ ଶନ୍ତନୁ ଶୋଭାଯୁତ ॥
ପରସେଂ କରତେ ଜାହି ଶାନ୍ତ ପାୱେ ସୋ ପ୍ରାନୀ ।
ଜାନ ଅଗ୍ରଭୁକ୍ ଇନ୍ଦ୍ର ନହୀଁ ବରସାୟୋ ପାନୀ ॥
ଭେଜି ସଚିବ ଷଡ଼ଯନ୍ତ୍ର କରି, ବେଦ-ଭ୍ରଷ୍ଟ ଅଗ୍ରଜ କର୍‌ୟୋ ।
ତବ ସୁରପତି ବରଷା କରୀ, ୟୋଁ ନୃପ ସବକୋ ଦୁଃଖ ହରୟୋ ॥

ଆର୍ଯ୍ୟ ସଂସ୍କୃତିର ସର୍ବଶ୍ରେଷ୍ଠ ସଦାଚାର ହେଉଛି ବଡ଼ମାନଙ୍କ ପ୍ରତି ଉଚିତ ସମ୍ମାନ ପ୍ରଦର୍ଶନ କରିବା । ବଡ଼ମାନଙ୍କ ଆଗରେ ଉଚ୍ଚାସନରେ ନ ବସିବା କି ଅଭିମାନ ପ୍ରଦର୍ଶନ ପୂର୍ବକ ନବସିବା, ବଡ଼ମାନଙ୍କ ଆଗରେ ଶିଷ୍ଟାଚାର ସହିତ ବ୍ୟବହାର ନକରିବା, ବଡ଼ ଥିବାବେଳେ ସ୍ୱୟଂ ସମ୍ମାନକୁ ଗ୍ରହଣ ନକରିବା ପ୍ରଭୃତି ଭାରତର ପ୍ରାଚୀନ ସଂସ୍କୃତିରେ ରହିଛି । ବଡ଼ଭାଇର ସଂସ୍କାର ନ ହେବାଯାଏ ସାନଭାଇର ସଂସ୍କାର କରିବାର ପ୍ରଥା ନାହିଁ । ବଡ଼ ଭାଇର ସଂସ୍କାର ବା ଅଗ୍ନିହୋତ୍ର ହୋଇ ନଥିବାବେଳେ ଯଦି ସାନଭାଇର ନିଜର

ସହ୍ୟାର କରନ୍ତି, ତେବେ ଶାସ୍ତ୍ରକାରମାନେ ତାକୁ 'ପରିବେତ୍ତା' ବୋଲି କହନ୍ତି ଓ ତା'ର ବଡ଼ଭାଇଙ୍କୁ 'ପରିବିତ୍ତି' ବୋଲି କହନ୍ତି । ବଡ଼ଭାଇ ଥିଲା ବେଳେ ସାନଭାଇ ରାଜସିଂହାସନ ଅଧିକାର କରିପାରିବ ନାହିଁ । ଯଦି ବଡ଼ଭାଇ ଅଯୋଗ୍ୟ ହୋଇଥିବ, ମହାବ୍ୟାଧିଗ୍ରସ୍ତ ହୋଇଥିବ, ତେବେ ସାନଭାଇ ରାଜାହେଲେ କିଛି ଦୋଷ ନାହିଁ ।

ମହର୍ଷି ସୂତ କହିଲେ—ମୁନିଗଣ ! ମୁଁ ଚେଦିରାଜ ମହାରାଜ ଜୟଦ୍ରଥଙ୍କ ପୁତ୍ର ଜରାସନ୍ଧର ଜନ୍ମ କଥା କହିଲି । ଏବେ ପରବର୍ତ୍ତୀ ବଂଶକଥା କହୁଛି ଆପଣମାନେ ଶୁଣନ୍ତୁ । ଜରାସନ୍ଧର ପୁତ୍ର ହେଲେ ସହଦେବ । ତାଙ୍କର ପୁତ୍ର ସୋମାପି ଓ ତାଙ୍କଠାରୁ ଶ୍ରୁତଶ୍ରବା ଜନ୍ମଗ୍ରହଣ କଲେ । ସଂକ୍ଷେପରେ ମୁଁ ଚେଦିରାଜବଂଶ ବର୍ଣ୍ଣନା କଲି । ଏବେ କୁରୁବଂଶର ଅନ୍ୟ ରାଜାମାନଙ୍କ ବଂଶ ବିସ୍ତାର କଥା ଶୁଣନ୍ତୁ ।

ମୁଁ ଆଗରୁ କହିଛି ହସ୍ତୀପୁତ୍ର ମହାରାଜ କୁରୁଙ୍କର ପରୀକ୍ଷିତ, ସୁଧନୁ, ଜହ୍ନୁ ଓ ନିଷଧାଶ୍ୱ ନାମରେ ଚାରି ପୁତ୍ର ଜନ୍ମ ହୋଇଥିଲେ । ଏମାନଙ୍କ ମଧ୍ୟରୁ ସୁଧନୁଙ୍କ ବଂଶାବଳୀ କହିସାରିଛି । ଏବେ ବାକି ତିନିଜଣଙ୍କ କଥା କହୁଛି । କୁରୁଙ୍କର ପ୍ରଥମ ପୁତ୍ର ପରୀକ୍ଷିତ ନିଃସନ୍ତାନ ଥିଲେ । ମହାରାଜ ଜହ୍ନୁଙ୍କ ପୁଅ ହେଲେ ସୁରଥ । ତାଙ୍କ ପୁଅ ବିଦୁରଥ, ତାଙ୍କର ସାର୍ବଭୌମ, ତାଙ୍କର ଜୟସେନ, ତାଙ୍କର ରାଧିକ ଓ ତାଙ୍କର ପୁଅହେଲେ ଅୟୁତ ଅୟୁତଙ୍କଠାରୁ କ୍ରୋଧନ, ତାଙ୍କଠାରୁ ଦେବାତିଥି, ତାଙ୍କଠାରୁ ଋଷ୍ୟ, ତାଙ୍କଠାରୁ ଦିଲୀପ ଓ ତାଙ୍କଠାରୁ ପ୍ରତୀପ ଜନ୍ମ ଗ୍ରହଣ କଲେ । ମହାରାଜ ପ୍ରତୀପଙ୍କର ଦେବାପି, ଶାନ୍ତନୁ ଓ ବାହ୍ଲୀକ ନାମରେ ତିନିପୁଅ ହେଲେ । ଏମାନଙ୍କ ମଧ୍ୟରୁ ମଝିଆଁ ପୁଅ ଶାନ୍ତନୁ ରାଜା ହେଲେ । ଗଙ୍ଗାଙ୍କ ସହିତ ଶାନ୍ତନୁଙ୍କର ବିବାହ ହୋଇଥିଲା ।

ଏହା ଶୁଣି ଶୌନକ ପଚାରିଲେ—ମହାଭାଗ ! ମହାରାଜ ପ୍ରତୀପ ନିଜର ବଡ଼ ପୁଅ ଦେବାପିଙ୍କୁ ରାଜ୍ୟ ନ ଦେଇ ଶାନ୍ତନୁଙ୍କୁ କାହିଁକି ରାଜା କଲେ ? ପୁଣି ଶାନ୍ତନୁ ଥିଲେ ମଣିଷ, ଦେବୀ ଗଙ୍ଗାଙ୍କ ସହିତ ତାଙ୍କର ବିବାହ କିପରି ହେଲା ? ଦୟାକରି ଏସବୁ କଥା ଆମକୁ ବୁଝାଇ କହନ୍ତୁ ।

ମହର୍ଷି ସୂତ କହିଲେ—ମହାଶୟ ! ମୁଁ ପୁଣ୍ୟଶ୍ଳୋକ ଶାନ୍ତନୁଙ୍କ କଥା କହୁଛି । ଆପଣ ଧ୍ୟାନ ଦେଇ ସେହି କଥା ଶୁଣନ୍ତୁ । ପୂର୍ବ କାଳରେ ସେ ମହାରାଜ ମହାଭିଷ ଥିଲେ । ବ୍ରହ୍ମାଙ୍କ ଅଭିଶାପ ହେତୁ ବ୍ରହ୍ମଲୋକରୁ ଚ୍ୟୁତ ହୋଇ ସେ ଚନ୍ଦ୍ରବଂଶୀ ମହାରାଜ ପ୍ରତୀପଙ୍କର ପୁଅ ହୋଇ ଜନ୍ମ ଗ୍ରହଣ କଲେ ।

ଶୌନକ ପୁଣି କହିଲେ—ମହାଭାଗ ! ଆପଣ କଥାଭିତରୁ କଥା ବାହାର କରି କହୁଛନ୍ତି । ଆପଣ ପ୍ରତୀପଙ୍କ ପୁତ୍ର ଶାନ୍ତନୁଙ୍କ କଥା ପଛରେ ଶୁଣାଇବେ । ପ୍ରଥମେ ମହାରାଜ ମହାଭିଷ କମଳଯୋନି ବ୍ରହ୍ମାଙ୍କଠାରୁ କାହିଁକି ଅଭିଶାପ ପାଇଲେ ଓ କେଉଁ ଅପରାଧ ହେତୁ ସେ ବ୍ରହ୍ମଲୋକରୁ ବିଚ୍ୟୁତ ହେଲେ ସେହିକଥା କୁହନ୍ତୁ ।

ଏହା ଶୁଣି ମହର୍ଷି ସୂତ କହିଲେ—ଭଗବନ୍ ! ପୂର୍ବକାଳରେ ଇକ୍ଷ୍ୱାକୁ ବଂଶରେ ପରମ ଧର୍ମାତ୍ମା ମହାରାଜ ମହାଭିଷ ନାମରେ ଜଣେ ବଡ଼ ତେଜସ୍ୱୀ, ତପସ୍ୱୀ ଓ ଯଶସ୍ୱୀ ରାଜା ଥିଲେ । ସେ ବଡ଼ ବଡ଼ ଯଜ୍ଞ କରି ବହୁ ଦକ୍ଷିଣା ଦେଲେ ଓ ଅନେକ ପୁଣ୍ୟ କର୍ମ କଲେ । ଯୋଗ୍ୟ ପାତ୍ରମାନଙ୍କୁ ନାନା ପ୍ରକାର ଦାନ ଦେଲେ । ଶେଷରେ ସେ ଏହି ପାଞ୍ଚ ଭୌତିକ ଶରୀର ତ୍ୟାଗ କରି ନିଜ ପୁଣ୍ୟକର୍ମ ବଳରେ ବ୍ରହ୍ମଲୋକକୁ ଗଲେ । ସେଠାରେ ସେ ବ୍ରହ୍ମଲୋକର ସୁଖଭୋଗ କରିବାକୁ ଲାଗିଲେ । ଦିନେ ବ୍ରହ୍ମାଙ୍କ ସଭା ବସିଥିଲା । ସେଠାରେ ବଡ଼ ବଡ଼ ବ୍ରହ୍ମର୍ଷି, ଦେବର୍ଷି, ଦେବତା, ସିଦ୍ଧ, ଚାରଣ, ଗନ୍ଧର୍ବ ଓ ଅନ୍ୟ ପୁଣ୍ୟବାନ୍ ଲୋକେ ବସିଥିଲେ । ସେହି ସମୟରେ ଭଗବତୀ ଗଙ୍ଗା ଏକ ଅତ୍ୟନ୍ତ ସୁନ୍ଦରୀ ନାରୀ ରୂପ ଧରି ସେହି ସଭାରେ ପହଞ୍ଚିଲେ । ଏହି ସମୟରେ ବାୟୁ ତାଙ୍କର ଅତୀବ ସୂକ୍ଷ୍ମ ରେଶମ ବସ୍ତ୍ର ଉଡ଼ାଇ ନେଲା, ଯାହା ଫଳରେ ତାଙ୍କର ବକ୍ଷ ଅନାବୃତ ହୋଇଗଲା । ତାହା ଦେଖି ସବୁ ଋଷି, ମୁନି ଓ ଦେବତାମାନେ ନିଜ ନିଜର ମସ୍ତକ ତଳକୁ କରିଦେଲେ । କିନ୍ତୁ ମହାରାଜ ମହାଭିଷ ଗଙ୍ଗାଙ୍କ ଆଡ଼କୁ ଅପଲକ ନେତ୍ରରେ ଚାହିଁ ରହିଲେ । ତାଙ୍କର ଏପରି ଅବନସ୍ଥ ଭାବ ଦେଖି କମଳଯୋନି ବ୍ରହ୍ମା କ୍ରୁଦ୍ଧ ହୋଇପଡ଼ିଲେ । ତ୍ରିକାଳଦର୍ଶୀ ଭଗବାନ୍ ବେଦଗର୍ଭ ରାଜାଙ୍କ ମନ କଥା ଜାଣିପାରି କହିଲେ—ରାଜନ୍ ! ଏହି ପବିତ୍ର ଲୋକରେ ମଧ୍ୟ ଆପଣଙ୍କ ମନରେ କାମଭାବ ଜାଗ୍ରତ ହୋଇଗଲା । ତେଣୁ ଆପଣଙ୍କର ବର୍ତ୍ତମାନ ଏହି ଲୋକରୁ ପୃଥିବୀ ଲୋକକୁ ପତନ ହେବ । ମନୁଷ୍ୟ ଯେପରି ସଂକଳ୍ପ କରେ ସେ ସେହି ଯୋନିରେ ଜନ୍ମ ଗ୍ରହଣ କରେ । ନାରୀ ପ୍ରତି ଆସକ୍ତ ହେବା ନରର କାମ । ତେଣୁ ଆପଣଙ୍କୁ ମାନବ ଯୋନିରେ ଗ୍ରହଣ କରିବାକୁ ହେବ । ଯେଉଁ ଗଙ୍ଗା ଉପରେ ଆପଣ ଆସକ୍ତ ହେଲେ ସେ ସ୍ତ୍ରୀରୂପ ଧାରଣ କରି ଆପଣଙ୍କର ପତ୍ନୀ ହେବ ଏବଂ ଆପଣଙ୍କ ପାଖରେ କିଛିଦିନ ରହି ଆପଣଙ୍କୁ ଛାଡ଼ି ଚାଲିଯିବ । ତା'ପରେ ଆପଣ ପୁଣି ସ୍ୱର୍ଗକୁ ଫେରି ଆସିବେ ।

ଭଗବାନ ବ୍ରହ୍ମାଙ୍କ ମୁଖରୁ ଏପରି ଶାପବାଣୀ ଶୁଣି ମହାରାଜ ଦୁଃଖିତ ହେଲେ । ଗଙ୍ଗାଙ୍କ ପ୍ରତି ଅତ୍ୟନ୍ତ ଆସକ୍ତ ହୋଇପଡ଼ିଥିବାରୁ ତାଙ୍କୁ ବିଶେଷ ଦୁଃଖ ଲାଗିଲା । ଏବେ ତାଙ୍କୁ ପୃଥିବୀରେ ଜନ୍ମ ନେବାକୁ ପଡ଼ିବ । ସେହି ସମୟରେ ପରମ ଧାର୍ମିକ, ମହାନ୍ ତେଜସ୍ୱୀ ଓ ଯଶସ୍ୱୀ ମହାରାଜ ପ୍ରତୀପ ପୃଥିବୀରେ ରାଜତ୍ୱ କରୁଥିଲେ । ତେଣୁ ମହାଭିଷ ତାଙ୍କର ପୁଅ ହୋଇ ଜନ୍ମ ଗ୍ରହଣ କଲେ ଓ ଶାନ୍ତନୁ ନାମରେ ପ୍ରସିଦ୍ଧ ହେଲେ । ତାଙ୍କର ଏକ ବିଶେଷତ୍ୱ ଥିଲା । ସେ ଯାହାକୁ ଛୁଇଁ ଦେଉଥିଲେ ସେ ବୁଢ଼ା ହେଲେବି ଯୁବକ ପାଲଟି ଯାଉଥିଲା ଓ ପରମ ଶାନ୍ତି ଅନୁଭବ କରୁଥିଲା । ଏହି କାରଣରୁ ତାଙ୍କର ନାମ ଶାନ୍ତନୁ ହେଲା । ତାଙ୍କ ବଡ଼ ଭାଇ ଦେବାପି ବଡ଼ ବୈରାଗୀ ଥିଲେ । ମହାରାଜ ପ୍ରତୀପ ଶାସନ କରୁଥିବାବେଳେ ସେ ରାଜ୍ୟ ତ୍ୟାଗ କରି ବଣକୁ ଯାଇ ଘୋର ତପସ୍ୟା କରିବାକୁ ଲାଗିଲେ । କାଳାନ୍ତରରେ ମହାରାଜ ପ୍ରତୀପ ବୁଢ଼ା ହୋଇଯିବାରୁ ଶାନ୍ତନୁଙ୍କୁ ରାଜ୍ୟ ଭାର

ଦେଇ ତପସ୍ୟାକରିବା ପାଇଁ ବଣକୁ ଚାଲିଗଲେ । ମହାରାଜ ଶାନ୍ତନୁ ଧର୍ମ ପୂର୍ବକ ପ୍ରଜା-ପାଳନ କରିବାକୁ ଲାଗିଲେ । ତାଙ୍କର ମୃଗୟା ପ୍ରତି ବିଶେଷ ଆଗ୍ରହ ଥିଲା । ଶିକାର ନିମନ୍ତେ ଗଙ୍ଗା କୂଳରେ ଥିବା ବନ ପର୍ବତରେ ସେ ବୁଲୁଥିଲେ ।

ଥରେ ମହାରାଜ ଗଙ୍ଗାକୂଳକୁ ମୃଗୟା ନିମନ୍ତେ ଯାଇଥିଲେ । କ୍ଲାନ୍ତ ହୋଇ ସେ ଏକ ସୁନ୍ଦର ସଘନ ବୃକ୍ଷଗୁଚ୍ଛ ତଳେ ବିଶ୍ରାମ ନେଉଥିଲେ । ଏହି ସମୟରେ ଅତୀବ ରୂପଲାବଣ୍ୟବତୀ ଏକ ଲଳନା ତାଙ୍କ ଦୃଷ୍ଟିରେ ପଡ଼ିଲା । ଅରଣ୍ୟର ଚତୁର୍ଦ୍ଦିଗକୁ ନିଜର ସୌନ୍ଦର୍ଯ୍ୟ ଓ କାନ୍ତିରେ ସେ ଆଲୋକିତ କରିଦେଇଥିଲା । ପ୍ରକୃତିର ଅପରୂପ ସୌନ୍ଦର୍ଯ୍ୟ ଦେଖି ସେ ଯେତେବେଳେ ହସୁଥିଲା, ସେତେବେଳେ ତା'ର ମୁଖମଣ୍ଡଳରୁ କୁନ୍ଦପୁଷ୍ପ ବୃଷ୍ଟି ହେଲା ପରି ବୋଧ ହେଉଥିଲା । ସେ ଗଙ୍ଗାନଦୀର ଢେଉ ଉପରେ ନିର୍ଭୟରେ ଚାଲି ଚାଲି ଆସୁଥିଲା । ନିକଟସ୍ଥ ଉପବନରେ ସେହି ଚାରୁହାସିନୀ କ୍ରୀଡ଼ା କରିବାକୁ ଲାଗିଲା । ସେ ଗୌରବର୍ଣ୍ଣା ଥିଲା । ତାର ପାଦତଳ, କରତଳ, ଓଷ୍ଠ, ଅଧର, ଜିହ୍ୱା ଓ ନଖ ଅରୁଣବର୍ଣ୍ଣ ଥିଲା । ପଦ୍ମଫୁଲ ପରି ତା'ର ଆଖି ବଡ଼ ବଡ଼ ଥିଲା । ବଳାଗଣ୍ଠି ଯାଏ ତାର ଘନକୃଷ୍ଣ ବେଣୀ ଲମ୍ବିଥିଲା । ସେ ଏକ ସୁନ୍ଦର ନୀଳବର୍ଣ୍ଣର ରେଶମୀ ଶାଢ଼ୀ ପିନ୍ଧିଥିଲା । ତା'ର ଅଙ୍ଗପ୍ରତ୍ୟଙ୍ଗର ସୌନ୍ଦର୍ଯ୍ୟ ଶାଢ଼ୀଆଢ଼େ ଖେଳାଇ ହୋଇଯାଉଥିଲା । ରାଜହଂସୀ ପରି ପାଦର ନୂପୁର ବଜାଇ, ବିଳାସ ସହିତ ମନ୍ଦ ମନ୍ଦ ଗତିରେ ସେ ଚାଲୁଥିଲା । ଧୀରେ ଧୀରେ ଆସି ସେ ରାଜାଙ୍କ ପାଖରେ ଠିଆ ହୋଇଗଲା ।

ରାଜା ଶାନ୍ତନୁ କେବେହେଲେ ଏପରି ସୁନ୍ଦରୀ ସ୍ତ୍ରୀ ଦେଖି ନ ଥିଲେ । ସେ ତା ରୂପ, ଯୌବନ ଓ ଅଙ୍ଗସୌଷ୍ଠବ ଦେଖି ମନ୍ତ୍ରମୁଗ୍ଧ ହେଲା ପରି ନିର୍ନିମେଷ ଦୃଷ୍ଟିରେ ତାକୁ ଚାହିଁରହିଲେ । ଚେଷ୍ଟା କରି ରାଜା ସେହି ସୁନ୍ଦରୀଠାରୁ ନିଜର ଦୃଷ୍ଟି ଫେରାଇ ଆଣିବାକୁ ଇଚ୍ଛା କରୁଥିଲେ ମଧ୍ୟ ସେଥିରେ ସଫଳ ହୋଇପାରିଲେ ନାହିଁ । ତାକୁ ଯେତେ ଦେଖିଲେ ମଧ୍ୟ ତାଙ୍କର ମନରେ ତୃପ୍ତି ଆସୁ ନ ଥିଲା । ସେ ମଧ୍ୟ କିଛି ନ କହି ରାଜାଙ୍କର ସୁନ୍ଦର ରୂପକୁ ପ୍ରେମ ପୂର୍ବକ ପାନ କରୁଥିଲା ।

କିଛି ସମୟ ନୀରବରେ କଟିବା ପରେ ରାଜା କହିଲେ—ଭାମିନି ! ତୁମେ ପ୍ରଥମ ଦେଖାରେହିଁ ମୋତେ ନିଜର କରିନେଲ । ମୁଁ ତୁମର କୃପାପ୍ରାର୍ଥୀ । ତୁମେ ମୋ' ପ୍ରତି ଅନୁଗ୍ରହ କରି ମୋର ଧର୍ମପତ୍ନୀ ହୋଇ ମୋ' ସହିତ ସୁଖଭୋଗ କର । ମୁଁ ଏହି ପୃଥିବୀର ରାଜା । ମୋର ନାମ ଶାନ୍ତନୁ । ମୋର ସର୍ବସ୍ୱ ତୁମ ଅଧୀନରେ ।

ସେହି ସୁନ୍ଦରୀ ରାଜାଙ୍କ କଥା ଶୁଣି କହିଲେ—ରାଜନ୍ ! ଆପଣଙ୍କୁ ପତି ରୂପେ ବରଣ କରିବା ମୋର ସୌଭାଗ୍ୟର କଥା । କିନ୍ତୁ ମୋର ଏକ ସର୍ତ୍ତ ଅଛି । ମୋର ସେହି ସର୍ତ୍ତ ପାଳନ କରିବେ ବୋଲି ଆପଣ ପ୍ରତିଜ୍ଞା କଲେ ମୁଁ ଆପଣଙ୍କର ଧର୍ମପତ୍ନୀ ହୋଇପାରିବି ।

ରାଜା ଅତ୍ୟନ୍ତ ଉତ୍ସୁକ ହୋଇ କହିଲେ—ହେ ବରବର୍ଣ୍ଣିନି ! ସୁନ୍ଦରି ! ତୁମର ସନ୍ଧିକଥା କୁହ । ତୁମେ ଯାହା କହିବ ମୁଁ ତାହା ସ୍ୱୀକାର କରି ନେବବୋଲି ପ୍ରତିଜ୍ଞା କରୁଛି । ଯାହାଦ୍ୱାରା ତୁମେ ଖୁସି ହେବ ତାହା ମୁଁ ପ୍ରାଣ ବିନିମୟରେ ପୂରଣ କରିବ ।

ଏହା ଶୁଣି ସେହି ସୁନ୍ଦରୀ କହିଲେ -ରାଜନ୍ ! ମୁଁ ଯାହା କିଛି ଉଚିତ ବା ଅନୁଚିତ କାର୍ଯ୍ୟ କରିବି ଆପଣ ସେଥିରେ ହସ୍ତକ୍ଷେପ କରିବେ ନାହିଁ କି ମୋତେ କେବେ-ହେଲେ କଡ଼ା କରି କଥା କହିବେ ନାହିଁ । ଯଦି ଆପଣ ମୋର କୌଣସି କାର୍ଯ୍ୟରେ ହସ୍ତକ୍ଷେପ କରିବେ ଅଥବା ମୋତେ ଗାଳିଦେବେ, ତେବେ ମୁଁ ନିଶ୍ଚୟ ଆପଣଙ୍କୁ ଛାଡ଼ି ଚାଲିଯିବି ।

ମହାରାଜ ସେହି ସର୍ବାଙ୍ଗସୁନ୍ଦରୀ ନାରୀର ସମସ୍ତ କଥା ଆନନ୍ଦରେ ସ୍ୱୀକାର କରି-ନେଲେ । ଧର୍ମକୁ ସାକ୍ଷୀରଖି ସେ ପ୍ରତିଜ୍ଞା କଲେ । ତାଙ୍କ ସହିତ ଧର୍ମ ପୂର୍ବକ ବିବାହ କରି ସାଂସାରିକ ସୁଖଭୋଗ କରିବାକୁ ଲାଗିଲେ ।

ଏହା ଶୁଣି ଶୌନକ କହିଲେ—ମହାଭାଗ ! ମହାରାଜା ଶାନ୍ତନୁ ଉଚ୍ଚବଂଶାବତଂସ, ଧର୍ମାତ୍ମା ଓ ନୀତି ନିପୁଣ ଥିଲେ । ସେ କିପରି ଜଣେ ଅଜ୍ଞାତ କୁଳଶୀଳା ସହିତ ତାର ନାମଗୋତ୍ର ବଂଶର ପରିଚୟ ନ ନେଇ ହଠାତ୍ କିପରି ବିବାହ କଲେ ? ଏପରି କଠୋର ପ୍ରତିଜ୍ଞାରେ ବା ଆବଦ୍ଧ ହୋଇଗଲେ କିପରି ?

ମହର୍ଷି ସୂତ କହିଲେ—ମହାଶୟ ! ସେହି ରମଣୀର ଅନୁପମ ରୂପ ଲାବଣ୍ୟ ଓ ଦିବ୍ୟତେଜର ପ୍ରଭାବରେ ପ୍ରଭାବିତ ହୋଇ କୁଳଗୋତ୍ର କିଛି ପଚାରିବାର ଆବଶ୍ୟକତା ଅନୁଭବ କଲେ ନାହିଁ । କାରଣ, ତାଙ୍କର ପୂଜନୀୟ ପିତା ମହାରାଜ ପ୍ରତାପ ତାଙ୍କୁ ବହୁପୂର୍ବରୁ ବୁଝାଇ କହିଥିଲେ ଯେ, ଯେଉଁ ସ୍ତ୍ରୀ ଏକାନ୍ତରେ ଆସି ବିବାହ ପ୍ରସ୍ତାବ ଦେବ, ତାହା ସ୍ୱୀକାର କରିନେବାକୁ ହେବ ।

ଏହା ଶୁଣି ଶୌନକ କହିଲେ—ମହାଭାଗ ! ମହାରାଜ ପ୍ରତାପ ନିଜ ପୁଅ ଶାନ୍ତନୁଙ୍କୁ କାହିଁକି ଏପରି ଆଦେଶ ଦେଇଥିଲେ ?

ମହର୍ଷି ସୂତ ଶୌନକଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହିଲେ—ମହାଶୟ ! ଏ ବିଷୟରେ ଏକ ଇତିହାସ ଅଛି । ସେକଥା ମୁଁ କହୁଛି । ମହାରାଜ ପ୍ରତାପଙ୍କର କୌଣସି ସନ୍ତାନ ସନ୍ତତି ନ ଥିଲେ । ସେଥିପାଇଁ ସେ ହରିଦ୍ୱାର ଯାଇ ଗଙ୍ଗା ନଦୀ କୂଳରେ ଘୋର ତପସ୍ୟା କରିବାକୁ ଲାଗିଲେ । ମହାରାଜ ଅତି ସୁନ୍ଦର, ବଳିଷ୍ଠ ଓ ଦର୍ଶନୀୟ ପୁରୁଷ ଥିଲେ । ତାଙ୍କୁ ଦେଖିବାମାତ୍ରେ ଚିତ୍ତ ଆକର୍ଷିତ ହୋଇଯାଉଥିଲା । ଦିନେ ମହାରାଜ ସନ୍ଧ୍ୟା ବନ୍ଦନା ପାଠ ଜପ କରିବାକୁ ଯିବାବେଳେ ହଠାତ୍ ତାଙ୍କ ଦକ୍ଷିଣ ଜଙ୍ଘରେ ଏକ ସୁନ୍ଦରୀ ସ୍ତ୍ରୀ ଆସି ବସିପଡ଼ିଲା । ସହସା ଦିବ୍ୟ ରୂପ ଲାବଣ୍ୟଯୁକ୍ତା ସୁନ୍ଦରୀ ଆସି ନିଜ ଜଙ୍ଘରେ ବସି-

ଯିବାର ଦେଖି ମହାରାଜ ମଧୁର ସ୍ୱରରେ କହିଲେ—ଦେବି ! ତୁମେ କିଏ ? କାହିଁକି ମୋ' କୋଳରେ ଆସି ବସିଲ ? ତୁମର ଦୁଃଖ କଣ ? ମୋ'ଦ୍ୱାରା କିଛି ପ୍ରିୟ କାର୍ଯ୍ୟ କରାଇବାକୁ ଇଚ୍ଛା କରୁଛ କି ? କୁହ, ମୁଁ ତୁମର କି ଉପକାର କରିପାରିବି ?

ସେହି ସ୍ତ୍ରୀ କହିଲା—ରାଜନ୍ ! ମୁଁ ତୁମ ସହିତ ସମ୍ଭୋଗ ଇଚ୍ଛା କରୁଛି ।

ରାଜା କହିଲେ—ଦେବି : ମୁଁ ଅନ୍ୟର ପତ୍ନୀକୁ ମାତା ବୋଲି ଭାବେ ।

ସ୍ତ୍ରୀ ଜଣକଟି କହିଲା—ମହାରାଜ ! ମୁଁ ଅନ୍ୟ କାହାରି ପତ୍ନୀ ନୁହେଁ । ମୁଁ ଧର୍ମ-ପୂର୍ବକ ଆପଣଙ୍କର ପତ୍ନୀ ହେବା ପାଇଁ ଇଚ୍ଛା କରୁଛି । ମୁଁ ମାନବୀ ସ୍ତ୍ରୀ ନୁହେଁ, କନ୍ୟା ଅଟେ । ମୋର ନାମ ଗଙ୍ଗା । ଜହ୍ନୁ ତନୟା ହୋଇଥିବାରୁ ଲୋକେ ମୋତେ ଜାହ୍ନବୀ ବୋଲି କହନ୍ତି ।

ଏହା ଶୁଣି ମହାରାଜ ପ୍ରତୀପ କହିଲେ—ଦେବି ! ତୁମେ ଯାହା କହିଲ ତାହା ଯଥାର୍ଥ । କିନ୍ତୁ ଭୁଲବଶତଃ ହେଉ ବା ଦୈବବଶତଃ ହେଉ ତୁମେ ମୋର ପତ୍ନୀ ହେବା ପାଇଁ ନିଜକୁ ଅଯୋଗ୍ୟ କରିଦେଇଛ ।

ସେହି ଦିବ୍ୟ କନ୍ୟା ପଚାରିଲେ—କିପରି ମହାରାଜ !

ରାଜା କହିଲେ—ଦେଖ ଦେବି ! ତୁମେ ଯେଉଁ ଦକ୍ଷିଣ ଜଙ୍ଘରେ ବସିଛ, ତାହା ଉପରେ କେବଳ ପୁଅ ଝିଅଙ୍କର ବସିବାର ଅଧିକାର ଅଛି । ଋଷିମାନେ ପତ୍ନୀର ବସିବା ସ୍ଥାନ ବାମଜଙ୍ଘ ବୋଲି ନିର୍ଦ୍ଦେଶ ଦେଇଛନ୍ତି । ଦକ୍ଷିଣ ଜଙ୍ଘ ଉପରେ ଝିଅ ଅଥବା ପୁତ୍ରବଧୂ ବସିପାରେ । ତେଣୁ ମୁଁ ତୁମକୁ ବିବାହ କରି ପାରିବି ନାହିଁ, କିନ୍ତୁ ମୋର ଯେଉଁ ପୁଅ ହେବ, ସେ ତୁମକୁ ପତ୍ନୀ ରୂପେ ଗ୍ରହଣ କରିପାରିବ । ମୁଁ ତୁମକୁ ମୋର ପୁତ୍ରବଧୂ ରୂପେ ସ୍ୱୀକାର କରୁଛି ।

ଗଙ୍ଗାଦେବୀ କହିଲେ—ଠିକ୍ ଅଛି ମହାରାଜ ! ଏହାକୁ ମୁଁ ମଧ୍ୟ ସ୍ୱୀକାର କଲି । କିନ୍ତୁ ଆପଣ ନିଜର ପୁଅକୁ, ମୋର କୌଣସି କଥାରେ ଯେପରି ହସ୍ତକ୍ଷେପ କରିବେ ନାହିଁ, ତାହା କହିଯାଇଥିବେ ।

ରାଜା କହିଲେ—ହଁ ମୋର ଯଦି ପୁଅ ହେବ, ତେବେ ତାକୁ ମୁଁ ଏ ବିଷୟରେ କହି ଦେଇଥିବି ।

ଏହାପରେ ଗଙ୍ଗା ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ମହାରାଜ ତପସ୍ୟା ଶେଷରେ ଘରକୁ ଫେରି ଆସିଲେ । ଯଥା ସମୟରେ ତାଙ୍କର ଘରେ ପୁଅ ଜନ୍ମ ହେଲେ । ବଡ଼ ଦେବାପି ତପସ୍ୟା କରିବା ପାଇଁ ବଣକୁ ଚାଲିଗଲେ । ରାଜା ବୁଢ଼ା ହୋଇ ରାଜ୍ୟଭାର ଶାନ୍ତନୁଙ୍କୁ ଦେଇ ଯେତେବେଳେ ବଣକୁ ଯିବାକୁ ବାହାରିଲେ, ସେତେବେଳେ ପୁଅକୁ ଡାକି

କହିଲେ—ପୁଅ ! ଗଙ୍ଗାକୂଳରେ ଯଦି କୌଣସି ସ୍ତ୍ରୀ ଏକାନ୍ତରେ ଆସି ତୋତେ ବିବାହ କରିବା କଥା କହିବ, ତେବେ ତୁ ତାକୁ ବିବାହ କରିବୁ । ତାର କୌଣସି କାର୍ଯ୍ୟରେ ହସ୍ତକ୍ଷେପ କରିବୁ ନାହିଁ । ସେ ଯାହା ଇଚ୍ଛା କରିବ ତାହା ତାକୁ କରିବାକୁ ଦେବୁ ।

ମହର୍ଷି ସୂତ କହିଲେ—ମୁନିଗଣ ! ମହାରାଜ ଶାନ୍ତନୁ ପିତାଙ୍କ ଆଦେଶ ଅନୁସାରେ ଗଙ୍ଗାଙ୍କୁ ବିବାହ କରିଥିଲେ ଓ ତାଙ୍କର କୌଣସି କାମରେ ହସ୍ତକ୍ଷେପ କରିବେ ନାହିଁ ବୋଲି ପ୍ରତିଜ୍ଞା କରିଥିଲେ । ଗଙ୍ଗାଙ୍କ ସହିତ ମହାରାଜ ଶାନ୍ତନୁ ସୁଖରେ ଆନନ୍ଦ ବିହାର କରିବାକୁ ଲାଗିଲେ । ରାଜା ଗଙ୍ଗାଙ୍କ ରୂପରେ ଏପରି ଆସକ୍ତ ହୋଇପଡ଼ିଲେ ଯେ ପ୍ରଜା-ମାନଙ୍କ ସୁଖଦୁଃଖର ଖବର କିଛି ତାଙ୍କୁ ଜଣାପଡ଼ିଲା ନାହିଁ । ଏଣେ ବାରବର୍ଷ ଧରି ଇନ୍ଦ୍ର ତାଙ୍କ ରାଜ୍ୟରେ ଠିକ୍ ସମୟରେ ବର୍ଷା ନ କରିବାରୁ ପ୍ରଜାକୁଳ ହାହାକାର କରିବାକୁ ଲାଗିଲେ ।

ଏହା ଶୁଣି ଶୌନକ ପଚାରିଲେ—ମହାଭାଗ ! ଅତିବୃଷ୍ଟି, ଅନାବୃଷ୍ଟି ଆଦି ରାଜାଙ୍କ ପାପଯୋଗୁଁ ହୋଇଥାଏ । ଧର୍ମାତ୍ମା ଶାନ୍ତନୁଙ୍କ ରାଜ୍ୟରେ ଏତେଦିନ ଧରି ଅନାବୃଷ୍ଟି କାହିଁକି ହେଲା ? ତାଙ୍କ ରାଜ୍ୟରେ ଅକାଳ ପଡ଼ିଲା କାହିଁକି ?

ମହର୍ଷି ସୂତ କହିଲେ—ମହାଶୟ ! ଏହି ପ୍ରଶ୍ନ ମହାରାଜ ଶାନ୍ତନୁ ମଧ୍ୟ ବ୍ରାହ୍ମଣ-ମାନଙ୍କୁ ପଚାରିଥିଲେ । ସେ ଦେଶର ସମସ୍ତ ବ୍ରାହ୍ମଣଙ୍କୁ ଡକାଇ ପଚାରିଲେ—ବିପ୍ରଗଣ ! ମୋ' ରାଜ୍ୟରେ ଇନ୍ଦ୍ର କାହିଁକି ବର୍ଷା କରୁ ନାହାନ୍ତି ?

ବ୍ରାହ୍ମଣମାନେ କହିଲେ—ମହାରାଜ ! ଆପଣଙ୍କୁ ପରିବେତ୍ତୃତ୍ୱ ଦୋଷ ଲାଗିଛି । ଆପଣଙ୍କ ବଡ଼ଭାଇ ଦେବାପି ଜୀବିତ ଅଛନ୍ତି । ସେ ଥାଉଁ ଥାଉଁ ଆପଣ ରାଜା ହେଲେ । ତାଙ୍କର ଏବେବି ବିବାହ ହୋଇନାହିଁ । କିନ୍ତୁ ଆପଣ ବିବାହ କଲେ । ଏହି କାରଣରୁ ଇନ୍ଦ୍ର ଆପଣଙ୍କ ରାଜ୍ୟରେ ବର୍ଷା କରୁ ନାହାନ୍ତି ।

ରାଜା ପଚାରିଲେ—ଏଥିପାଇଁ ପ୍ରତିକାରର ଉପାୟ ଥିଲେ ତାହା ଅବଲମ୍ବନ କରାଯିବା ଉଚିତ ।

ବ୍ରାହ୍ମଣମାନେ କହିଲେ—ଆପଣ ବଡ଼ଭାଇଙ୍କୁ ରାଜ୍ୟ ସମର୍ପଣ କରନ୍ତୁ, ଏହାହିଁ ଏକମାତ୍ର ଉପାୟ ।

ଏହା ଶୁଣି ଶାନ୍ତନୁ ବଣରେ ରହୁଥିବା ନିଜର ବଡ଼ଭାଇଙ୍କୁ ରାଜ୍ୟ ଦେବାପାଇଁ ଗଲେ । ମନ୍ତ୍ରୀମାନେ ବିଚାରିଲେ, ଯଦି ରାଜା ଦେବାପିଙ୍କୁ ରାଜ୍ୟ ଦେଇଦେବେ ତେବେ ତାଙ୍କ ଶାସନରେ ରାଜ୍ୟରେ ଅରାଜକତା ବ୍ୟାପିଯିବ । ଏହା ଭାବି ସେମାନେ କେତେକ ବାବଦୂକ, ନାସ୍ତିକ ବ୍ରାହ୍ମଣଙ୍କୁ ଦେବାପିଙ୍କ ପାଖକୁ ପଠାଇଦେଲେ । ସେମାନେ ଯାଇ ଦେବାପିଙ୍କ ଆଗରେ ବେଦର ଅପୌରୁଷେୟତା ବିଷୟକୁ ନାନା ଯୁକ୍ତି ମାଧ୍ୟମରେ ଖଣ୍ଡନ

କଲେ । ଦୈବବଶତଃ ସେମାନଙ୍କ ଯୁକ୍ତିରେ ଦେବାପିଙ୍କ ମନ ମାନିଗଲା । ଶାନ୍ତନୁ ଯେତେବେଳେ ଯାଇ ଦେବାପିଙ୍କ ପାଖରେ ପହଞ୍ଚିଲେ ସେତେବେଳେ ବ୍ରାହ୍ମଣମାନେ କହିଲେ—ରାଜନ୍ ! ଅମୁକ ବେଦର ଅମୁକ ସୂକ୍ତରେ ଯାହା କୁହାଯାଇଛି ତାହାକୁ ଆପଣ ଗ୍ରହଣ କରୁଛନ୍ତି କି ନାହିଁ ?

ଦେବାପି କହିଲେ—ମୁଁ ବେଦ ଫେଦ ମାନେ ନାହିଁ । ମହାରାଜା ଶାନ୍ତନୁଙ୍କ ସହିତ ଯାଇଥିବା ବ୍ରାହ୍ମଣମାନେ ଯେତେବେଳେ ଦେଖିଲେ ଦେବାପି ବେଦବିରୋଧୀ ହେତୁ ରାଜ୍ୟର ଅଧିକାରୀ ହୋଇପାରିବେ ନାହିଁ, ସେତେବେଳେ ନ୍ୟାୟତଃ ଶାନ୍ତନୁଙ୍କୁ ରାଜ୍ୟର ଅଧିକାରୀ ରୂପେ ଗ୍ରହଣ କଲେ । ଯଦି ବଡ଼ଭାଇ ସଦାଚାରହୀନ, ଅଯୋଗ୍ୟ, ମହାରୋଗଗ୍ରସ୍ତ ତେବେ ସାନଭାଇ ନ୍ୟାୟପୂର୍ବକ ପିତୃରାଜ୍ୟର ଅଧିକାରୀ ହେବେ । ତେଣୁ ମହାରାଜ ଶାନ୍ତନୁ ରାଜ୍ୟକୁ ଫେରିବାମାତ୍ରେ ଇନ୍ଦ୍ର ବୃଷ୍ଟି କଲେ । ସମ୍ପୂର୍ଣ୍ଣଭାବେ ଶୁଖିଯାଇଥିବା ପୃଥିବୀ ପୁଣି ଶସ୍ୟଶ୍ୟାମଳା ହୋଇଗଲା ଏବଂ ସର୍ବତ୍ର ଆନନ୍ଦର ଢେଉ ଖେଳିଗଲା ।

ଏହା ଶୁଣି ଶୌନକ ପଚାରିଲେ—ମହାଭାଗ ! ଦେବାପି ଏପରି ବେଦବିରୋଧୀ ବାକ୍ୟ କାହିଁକି କହିଲେ ? କଣ ସତରେ ସେ ନାସ୍ତିକ ହୋଇଯାଇଥିଲେ ।

ମହର୍ଷି ସୂତ କହିଲେ—ନାଁ ମହାଶୟ ! ଦେବାପି ଥିଲେ ପରମ ଆସ୍ତିକ । ସେ ଦେବତାମାନଙ୍କର ଷଡ଼ଯନ୍ତ୍ର ହେତୁ ଦୈବାଧୀନ ହୋଇ କିଛିକ୍ଷଣ ପାଇଁ ସେପରି କହି-ଦେଇଥିଲେ । ସେ ଥିଲେ ମହାନ୍ ଯୋଗୀ । ଅଦ୍ୟାବଧି ସେ ବଦରିକାଶ୍ରମ ପରେ ଯେଉଁ କଳାପି ଗ୍ରାମ ଅଛି, ସେଠାରେ ସମାଧିସ୍ଥ ହୋଇ ରହିଛନ୍ତି । କଳିଯୁଗ ପରେ ସତ୍ୟଯୁଗ ଆସିଲେ ସେ ସମାଧିରୁ ଉଠି ଉଚ୍ଛିନ୍ନ ହୋଇ ଯାଇଥିବା ଚନ୍ଦ୍ରବଂଶକୁ ପୁଣି ସ୍ଥାପନ କରିବେ ।

ଏହା ଶୁଣି ଶୌନକ ପଚାରିଲେ—ମହାଭାଗ ! ଗଙ୍ଗାଦେବୀଙ୍କ ଗର୍ଭରୁ ମହାରାଜ ଶାନ୍ତନୁଙ୍କର କେତୋଟି ସନ୍ତାନ ହେଲେ ?

ମହର୍ଷି ସୂତ କହିଲେ—ମହାଶୟ ! ଗଙ୍ଗାଙ୍କ ଗର୍ଭରୁ ଅଷ୍ଟବସୁ ଜନ୍ମଗ୍ରହଣ କରିଥିଲେ । ବଶିଷ୍ଠଙ୍କ ଶାପ ହେତୁ ବସୁମାନଙ୍କୁ ମାନବ ଯୋନିରେ ଜନ୍ମଗ୍ରହଣ କରିବାକୁ ପଡ଼ିଥିଲା । ସେମାନଙ୍କ ମଧ୍ୟରେ କେବଳ ଜଣେ ବଞ୍ଚିଥିଲେ । ସେହି ଜଣଙ୍କ ଭୀଷ୍ମ ନାମରେ ସଂସାରରେ ପ୍ରସିଦ୍ଧି ଲାଭ କରିଥିଲେ ।

ପୁଣି ଶୌନକ ପଚାରିଲେ—ମହାଭାଗ ! ବଶିଷ୍ଠ ବସୁଗଣଙ୍କୁ କାହିଁକି ଅଭିଶାପ ଦେଇଥିଲେ ଓ ସେମାନଙ୍କ ମଧ୍ୟରୁ ଜଣେ କିପରି ବଞ୍ଚିରହିଲେ ?

ମହର୍ଷି ସୂତ କହିଲେ—ମହାଶୟ ! ଠିକ୍ ଅଛି । ବର୍ତ୍ତମାନ ମୁଁ ବସୁ ଅବତାର ଭୀଷ୍ମଙ୍କ ଜନ୍ମକଥା ଆପଣମାନଙ୍କୁ କହୁଛି । ଆପଣମାନେ ସମସ୍ତେ ସେହି କଥା ସମାହିତ ଚିତ୍ତରେ ଶୁଣନ୍ତୁ ।

### ଛପ୍ପୟ

ଶଲ ଅରୁ ଭୂରିଶ୍ରବା ଭୂରି ବାଲ୍ହୀକ ନୃପତି ସୁତ ।
ଶନ୍ତନୁ କେ ସୁତ ଭୀଷ୍ମ ଭୟେ ବସୁ ଜ୍ଞାନୀ ଶ୍ରୀଯୁତ ॥
ପିତୁ ପ୍ରସନ୍ନତା ହେତୁ ପ୍ରତିଜ୍ଞା ଦୁଷ୍କର କୀହ୍ନୀ ।
ସନ୍ତତି ସୁଖ ଐଶ୍ୱର୍ଯ୍ୟ ଭୋଗ ଇଚ୍ଛା ତଜି ଦୀହ୍ନୀ ॥
ନହିଁ ପୁନ୍ର ତୋଉ ସକଲ, ଦ୍ୱିଜ ତରପନ ନତ ପ୍ରତି କରେଁ ।
ହୋ ହିଁ ଜଗତ ମହିଁ ଯଶସ୍ୱୀ, ଜେ ପିତୁ ଆୟସୁ ସିର ଧରେଁ ॥



## ଦେବବ୍ରତ ଭୀଷ୍ମ

ବାହ୍ଲୀକାତ୍ ସୋମଦତ୍ତୋଽଭୂତ୍ ଭୂରିର୍ଭୂରିଶ୍ରବାସ୍ତତଃ ।
ଶଲଶ୍ଚ ଶନ୍ତନୋରାସୀଦ୍ ଗଙ୍ଗାୟାଂ ଭୀଷ୍ମ ଆତ୍ମବାନ୍ ॥
( ଭାଗ ୯ସ୍କ, ୨୨ଅ, ୧୮ଶ୍ଳୋ )

### ଛପ୍ପୟ

ବସୁଗଣ ଇକ ଦିନ ଜାତ ରହେ ନଭମହିଁ ହ୍ୱୈ ପ୍ରମୁଦିତ ।
ମୁନି ବଶିଷ୍ଠ ମଗ ମିଲେ ଭୂଲି ନହୀ କରି ଦଣ୍ଡବତ ॥
ଲଖି ଅବଜ୍ଞା କ୍ରୋଧ ବ୍ରହ୍ମସୁତ ତନପେ କୀହ୍ନୋ ।
ଜନମୋ ଭୂପୈଂ ସକଲ ଶାପ ତନି ସବକୂଁ ଦୀହ୍ନୋ ॥
ତେଇ ଗଙ୍ଗା ଗରଭତେଁ, ନୃପ ଶନ୍ତନୁ କେ ସୁତ ଭୟେ ।
ଜନ ମତ ଫେଙ୍କେ ସାତ ସୁତ, ଏକ ଭୀଷ୍ମ ହୀ ବଚ ଗୟେ ॥

ଯେଉଁ କାର୍ଯ୍ୟ ବାହାରୁ ଅପ୍ରିୟ ଓ ଅହିତକର ଜଣାପଡ଼େ ତା' ଭିତରେ ହିତ ଲୁଚି ରହିଥାଏ । କୌଣସି କାରଣରୁ ଏପରି ଘଟଣା ଘଟିଲେ, ଏହାର ମୂଳକୁ ଜାଣିଦେଲେ

ଅଉ କଷ୍ଟ ହୁଏ ନାହିଁ । ଏ ବିଷୟ ଯଦି ଦୃଢ଼ ନିଶ୍ଚୟ ହୋଇଯିବ ଯେ ମଙ୍ଗଳମୟ ଶ୍ରୀହରିଙ୍କ ସମସ୍ତ ବିଧାନ ମଙ୍ଗଳ ନିମନ୍ତେ ହୋଇଥାଏ, ତେବେ ମନୁଷ୍ୟ ଶୋକ, ମୋହ ଓ ଚିନ୍ତା ଠାରୁ ସବୁଦିନ ନିର୍ମୁକ୍ତ ନିର୍ଦ୍ୱନ୍ଦ୍ୱ ହୋଇଯାଏ । ଆମ ପେଟ ଭିତରେ ବିକାର ଏକତ୍ରିତ ହୋଇଗଲେ, ତାହା ବ୍ରଣ ହୋଇ ବାହାରିବାକୁ ଚେଷ୍ଟା କରେ । ବ୍ରଣ ହେବାହିଁ ମଙ୍ଗଳକର । ଶରୀରକୁ ସୁସ୍ଥ କରିବା ପାଇଁ ସେହି ବ୍ରଣ ଉଠୁଛି ବୋଲି ବିଚାର କରିବା ଉଚିତ । ଆମର ଶହେ ଟଙ୍କା ନଷ୍ଟହେଲେ ତାହା ହଜାରେ ଟଙ୍କା ଆଣିବା ପାଇଁ ହାତରୁ ଯାଇଛି ବୋଲି ଗ୍ରହଣ କରିବା ଉଚିତ । କିନ୍ତୁ ପ୍ରାଣୀ ଏହି ରହସ୍ୟକୁ ବୁଝେ ନାହିଁ । ତାତ୍କାଳିକ କାର୍ଯ୍ୟ ଦେଖି ସେ ସୁଖୀ କିମ୍ବା ଦୁଃଖୀ ହୋଇଯାଏ । ଯଦି ଏ ଧିବୁର ମୂଳ କାରଣ ସେ ଜାଣିପାରନ୍ତା, ତେବେ ସେ ସୁଖୀ କିମ୍ବା ଦୁଃଖୀ ହେବା ପାଇଁ କୌଣସି କାରଣ ରହନ୍ତା ନାହିଁ ।

ମହର୍ଷିସୂତ କହିଲେ—ମୁନିଗଣ ! ବର୍ତ୍ତମାନ ମୁଁ ଗଙ୍ଗାଙ୍କ ଗର୍ଭରୁ ଅଷ୍ଟବସୁ କାହିଁକି ଜନ୍ମଗ୍ରହଣ କଲେ ସେହି କଥା କହୁଛି । ଭଗବାନ ବଶିଷ୍ଠ ସୁମେରୁ ପର୍ବତ ପ୍ରାନ୍ତରେ ଏକାନ୍ତରେ ବସି ତପସ୍ୟା କରୁଥିଲେ । ତାଙ୍କ ଆଶ୍ରମଟି ଖୁବ୍ ସୁନ୍ଦର ଥିଲା । ଆଶ୍ରମର ଚାରି ପାଖରେ ଯୋଜନ ଯୋଜନ ବ୍ୟାପୀ ବିସ୍ତୀର୍ଣ୍ଣ ବନଭୂମି ଥିଲା । ସେଥିରେ ନାନାପ୍ରକାର ଫଳଫୁଲରେ ପୂର୍ଣ୍ଣ ଅନେକ ଗଛ ଥିଲା । ଖାଲି ଥିବା ସ୍ଥାନରେ ଦୂବ ଗଛର ଗାଲିଚା ବିଛେଇ ହୋଇ ଯାଇଥିଲା । ତାଙ୍କ ଗାଈ ନନ୍ଦିନୀ ସେହି ବନରେ ବୁଲୁଥିଲା । ନନ୍ଦିନୀ ସ୍ୱର୍ଗପୁରର କାମଧେନୁର କନ୍ୟା । ସେ ଦେଖିବାକୁ ଖୁବ୍ ସୁନ୍ଦର ଥିଲା । ତା'ର ବଡ଼ ବଡ଼ ପହ୍ନା, ଖୋଜ, ଲାଞ୍ଜ ଓ ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ ଅନୁପମ ଶୋଭାଯୁକ୍ତ ଥିଲା । ତା'ର ଦୁଧ ଯେ ପିଉଥିଲା ତାକୁ ବାର୍ଦ୍ଧକ୍ୟ ଛୁଉଁ ନଥିଲା ।

ଦିନେ ନନ୍ଦିନୀ ଘାସ ଚରୁଥାଏ । ସେହି ସମୟରେ ଅଷ୍ଟବସୁ ନିଜର ପତ୍ନୀମାନଙ୍କ ସହିତ ସେଠାରେ ଆସି ପହଞ୍ଚିଲେ । ସେମାନଙ୍କ ମଧ୍ୟରେ ଜଣେ ଦ୍ୟୁବସୁ ନାମରେ ପରିଚିତ ଥିଲେ । ତାଙ୍କ ସ୍ତ୍ରୀ ବଡ଼ ଚଞ୍ଚଳା ଓ ସରଳ ହୃଦୟା ଥିଲା । ନନ୍ଦିନୀକୁ ଦେଖି ସେ ନିଜର ପତିଙ୍କୁ ପଚାରିଲା—ପ୍ରାଣନାଥ ! ଏ ଗାଈ କାହାର ? ଏତ ବଡ଼ ସୁନ୍ଦର ହୋଇଛି । ଏପରି ଗାଈ ମୁଁ ଆଜିଯାଏ ଦେଖିନାହିଁ ।

ଦ୍ୟୁବସୁ କହିଲେ—ପ୍ରିୟେ ! ଏ ସ୍ୱର୍ଗର କାମଧେନୁର କନ୍ୟା ନନ୍ଦିନୀ । ଏ ଭଗବାନ୍ ବଶିଷ୍ଠଙ୍କ ଗାଈ । ମୁନି ଏହାକୁ ନିଜର ନିଅପରି ପାଳନ କରନ୍ତି । ଏ ମଧ୍ୟ ତାଙ୍କର ସମସ୍ତ ମନୋରଥ ପୂର୍ଣ୍ଣ କରେ । ଏହାର ସୁମଧୁର କ୍ଷୀରକୁ ଯେ ଥରେ ପାନ କରେ ସେ ହଜାରେ ବର୍ଷ ବଞ୍ଚିରହେ ଓ ବାର୍ଦ୍ଧକ୍ୟ ଦୁଃଖ ଅନୁଭବ କରେ ନାହିଁ ।

ଏହା ଶୁଣି ଦ୍ୟୁବସୁଙ୍କ ପତ୍ନୀ ଅତ୍ୟନ୍ତ ପ୍ରେମର ସହିତ କହିଲା—ପ୍ରିୟତମ ! ମୋର ଗୋଟିଏ ଅନୁରୋଧ ରଖିବ ?

ଦ୍ୟୁବସୁ ପଚ୍ଚାରିଲେ—କଣ କହୁଛ କୁହ ।

ବସୁ ପତ୍ନୀ କହିଲେ—ପ୍ରାଣନାଥ ! ଆପଣ ମର୍ତ୍ତ୍ୟଲୋକର ପରମ ଧର୍ମାତ୍ମା ରାଜର୍ଷି ଉଶୀନରଙ୍କୁ ନିଶ୍ଚୟ ଜାଣିଥିବେ । ତାଙ୍କର ଜୀତବତୀ ନାମରେ ଏକ କନ୍ୟା ଅଛି । ସେ ସଂସାରର ସର୍ବଶ୍ରେଷ୍ଠ ସୁନ୍ଦରୀ । ମର୍ତ୍ତ୍ୟଲୋକ କଥା ଛାଡ଼ନ୍ତୁ, ସ୍ୱର୍ଗରେ ମଧ୍ୟ ତା'ପରି ସୁନ୍ଦରୀ ନାହାନ୍ତି । ସେ ମୋର ପ୍ରିୟବାନ୍ଧବୀ । ମର୍ତ୍ତ୍ୟଲୋକରେ ତ ଯୌବନ ସ୍ଥାୟୀ ହୋଇ ରହେ ନାହିଁ । ତେଣୁ ତାର ଯୁବାବସ୍ଥା ଚାଲିଗଲେ ଅନୁପମ ସୌନ୍ଦର୍ଯ୍ୟ ନଷ୍ଟ ହୋଇଯିବ । ତା'ର ସୌନ୍ଦର୍ଯ୍ୟ ଚିରସ୍ଥାୟୀ ହୋଇ ରହୁ, ଏହା ମୋର ଇଚ୍ଛା । ଆପଣ ଯେ କୌଣସିମତେ ଏ ଗାଈକୁ ଧରି ମୋତେ ଦିଅନ୍ତୁ । ମୁଁ ଏହା ନେଇ ମୋର ସଖୀକୁ ଦେବି । ସେ ଏହାର ଦୁଧ ପିଇ ସବୁବେଳେ ଯୁବତୀ ହୋଇ ରହିବ । ଏଥିରେ ମୁଁ ପରମ ଆନନ୍ଦ ଲାଭ କରିବି ।

ଦ୍ୟୁବସୁ କହିଲେ—ପ୍ରିୟେ ! ଏ ଗାଈ ହେଉଛି ପରମ ତେଜସ୍ୱୀ ମୁନି ବଶିଷ୍ଠଙ୍କର । ତେଣୁ ଏହାକୁ ପାଇବା ପାଇଁ ମନ ବଳାଇବା ଉଚିତ ନୁହେଁ ।

ବସୁପତ୍ନୀ କହିଲେ—ନା, ପ୍ରାଣନାଥ ! ତୁମକୁ ମୋର ଏ ଅନୁରୋଧ ରକ୍ଷା କରିବାକୁ ହେବ । ମୋ' ସଖୀର ସ୍ଥିର ଯୌବନ ଦେଖି ମୁଁ ଆନନ୍ଦିତ ହେବି ।

ଅନେକ ସମୟରେ ଲୋକେ ନିଜ ସ୍ତ୍ରୀର ପ୍ରୀତି ସମ୍ପାଦନ ପାଇଁ ଅନିଚ୍ଛା ସତ୍ତ୍ୱେ ଅନୁଚିତ କାର୍ଯ୍ୟ ମଧ୍ୟ କରିଥାନ୍ତି । ନାରୀକୁ ପ୍ରସନ୍ନ କରିବା ପାଇଁ ନର ଅଗାଧ ଜଳରେ ପଶି ମୁକ୍ତା ସଂଗ୍ରହ କରି ପ୍ରିୟତମା କର୍ଣ୍ଣରେ ତାକୁ ପିନ୍ଧାଇଥାଏ । ବଡ଼ ବଡ଼ ସମୁଦ୍ରକୁ ପାରି ହୋଇ, ନିଜ ଜୀବନକୁ ବିପଦରେ ପକାଇ ସମୁଦ୍ର ଆରପାରିରୁ ରତ୍ନ ଆଭୂଷଣ ଆଣି ନିଜର ପ୍ରାଣପ୍ରିୟାକୁ ପିନ୍ଧାଇଥାଏ । ବଡ଼ ବଡ଼ ହାତୀର ମସ୍ତକ ବିଦୀର୍ଣ୍ଣ କରି ସେଠାରୁ ମୁକ୍ତା ଆଣି ନିଜ ମନୋରମାର ମସ୍ତକ ସଜାଇଥାଏ । ନିଜ ପ୍ରିୟାକୁ ପ୍ରସନ୍ନ କରିବାର ଆବଶ୍ୟକତା ନଥିଲେ, ମନରେ ଲୋଭ ନ ଥିଲେ, କେବଳ ଭିକ୍ଷାନ୍ନରେ ବା ବଣର ଫଳମୂଳ ବା ଶାଗରେ ପେଟ ପୂରାଇ ଭଗବାନଙ୍କ ଚିନ୍ତାରେ ସମୟ କଟାଉଥିଲେ ପୁରୁଷ କେବେହେଲେ ଅନୁଚିତ କାର୍ଯ୍ୟ କରନ୍ତା ନାହିଁ । ତେଣୁ ଦ୍ୟୁବସୁ ନିଜ ପତ୍ନୀର ଆଗ୍ରହକୁ ଭାଙ୍ଗି ପାରିଲେ ନାହିଁ । ଅନ୍ୟ ଭାଇମାନଙ୍କ ସାହାଯ୍ୟରେ ମୁନିଙ୍କ ଧେନୁ ନନ୍ଦିନୀକୁ ସେ ଧରି ପକାଇଲେ ଓ ନିଜ ପତ୍ନୀଙ୍କ ସଖୀ ଉଶୀନରଙ୍କ କୁମାରୀ ଜୀତବତୀଙ୍କ ପାଖରେ ପହଞ୍ଚାଇ ଦେଲେ । ସେ ସମୟରେ ବଶିଷ୍ଠ ମୁନି ଆଶ୍ରମରେ ନ ଥିଲେ । ଫଳ, ଫୁଲ ଓ ସମିଧ, କୁଶ ପାଇଁ ସେ ବଣ ଭିତରକୁ ଯାଇଥିଲେ ।

ଫୁଲ, ଫଳ ସଂଗ୍ରହ ପରେ ମୁନି ଆଶ୍ରମକୁ ଫେରି ନନ୍ଦିନୀକୁ ଦେଖିଲେ ନାହିଁ । ଚାରିଆଡ଼େ ଖୋଜି ଖୋଜି ତାକୁ ନପାଇବାରୁ ମୁନି ଧ୍ୟାନରେ ବସି ତାକୁ ଖୋଜିଲେ । ସମାଧି ବଳରେ ମୁନି ବସୁମାନଙ୍କଦ୍ୱାରା ନନ୍ଦିନୀ ଚୋରି ଯାଇଥିବା କଥା ଜାଣିପାରିଲେ । ସେ

କ୍ରୋଧରେ ଅଭିଶାପ ଦେଲେ—ତୁମେମାନେ ଦେବତା ହୋଇ ମଧ୍ୟ ଏପରି କଦର୍ଯ୍ୟ କାର୍ଯ୍ୟ କରିଛ । ତେଣୁ ତୁମେମାନେ ମର୍ତ୍ତ୍ୟଲୋକରେ ମନୁଷ୍ୟ ଯୋନିରେ ଜନ୍ମ ହୁଅ । ତୁମେମାନେ ସମସ୍ତେ ସ୍ତ୍ରୀ ଗର୍ଭରୁ ଉତ୍ପନ୍ନ ହୁଅ ।

ମୁନିଙ୍କ ଅଭିଶାପ ବିଷୟ ଜାଣିବା ପରେ ଅଷ୍ଟବସୁ ଚିନ୍ତିତ ହୋଇ ପଡ଼ିଲେ । ଭୟଭୀତ ହୋଇ ସେମାନେ ପାଖକୁ ଆସି ଅଭିଶାପ ଫେରାଇନେବା ପାଇଁ ପ୍ରାର୍ଥନା କଲେ । ପ୍ରାର୍ଥନା ଶୁଣି ଭଗବାନ୍ ବଶିଷ୍ଠ କହିଲେ—ବନ୍ଧୁଗଣ ! ମୁଁ ଥଟ୍ଟାରେ ମଧ୍ୟ କେବେହେଲେ ମିଛ କହି ନାହିଁ । ତେଣୁ ମୋର ଅଭିଶାପ ତୁମମାନଙ୍କୁ ଭୋଗ କରିବାକୁ ପଡ଼ିବ । ହଁ ମୁଁ ଏପରି କରିପାରେ ଯେ, ତୁମେମାନେ ପୃଥିବୀରେ ଜନ୍ମହେବା ପରେ କିଛିକ୍ଷଣ ଭିତରେ ମାନବ ଦେହତ୍ୟାଗ କରି ପୁଣି ଦେବଯୋନିକୁ ଫେରି ଆସିବ । କିନ୍ତୁ ଯେଉଁ ଦ୍ୟୁବସୁ ମୋର ଗାଈ ନେଇଛନ୍ତି, ଯାହା ପାଇଁ ତୁମେ ସମସ୍ତେ ଅଭିଶପ୍ତ, ହେଲ, ତାଙ୍କୁ ପୃଥିବୀରେ ମାନବ ରୂପରେ ରହିବାକୁ ହେବ । କିନ୍ତୁ ତାର ସନ୍ତାନସନ୍ତତି ହେବେନାହିଁ କି ବିବାହ କରିବାକୁ ମଧ୍ୟ ତାର ଇଚ୍ଛା ହେବ ନାହିଁ ।

ମୁନିଙ୍କଠାରୁ ଏହା ଶୁଣି ବସୁମାନେ ଚିନ୍ତିତ ହେଲେ । ସେମାନେ ଭାବିଲେ, ଦେବତା ହୋଇ ଆମେମାନେ ମାନବୀ ସ୍ତ୍ରୀ ଗର୍ଭରୁ କିପରି ଜନ୍ମ ହେବୁ ? ସେମାନେ ଏପରି ଚିନ୍ତା କରୁଥିବାବେଳେ ବ୍ରହ୍ମାଙ୍କ ସଭାରୁ ଗଙ୍ଗାଦେବୀ ଫେରୁଥିଲେ । ସେ ପଚାରିଲେ—ବସୁଗଣ ! ତୁମେମାନେ କାହିଁକି ଚିନ୍ତିତ ଜଣାପଡ଼ୁଛ ?

ବସୁମାନେ କହିଲେ - ବଶିଷ୍ଠ ମୁନି ଆମମାନଙ୍କୁ ଅଭିଶାପ ଦେଇଛନ୍ତି । ଆମକୁ ମର୍ତ୍ତ୍ୟ ଲୋକରେ ମାନବୀ ସ୍ତ୍ରୀ ଗର୍ଭରୁ ଜନ୍ମ ନେବାକୁ ପଡ଼ିବ । ଦେବି ! ଆପଣ ମର୍ତ୍ତ୍ୟ-ଲୋକରେ ଆମର ମା' ହୁଅନ୍ତୁ । ଆମେ ସାଧାରଣ ନାରୀ ଗର୍ଭରୁ ଜନ୍ମ ହେବାକୁ ଇଚ୍ଛା କରୁନାହୁଁ ।

ଦେବୀ ଗଙ୍ଗା କହିଲେ—ଠିକ୍ ଅଛି । ମୋତେ ତ ମର୍ତ୍ତ୍ୟରେ ପ୍ରତୀପ ସୁତ ଶାନ୍ତନୁଙ୍କର ପତ୍ନୀ ହେବାକୁ ପଡ଼ୁଛି । ତୁମେମାନେ ସମସ୍ତେ ମୋ' ଗର୍ଭରୁ ଜନ୍ମଗ୍ରହଣ କରିବ ।

ବସୁମାନେ କହିଲେ—ଦେବି ! ଆମକୁ ଜନ୍ମ ହେବାମାତ୍ରେ ଆପଣ ଗଙ୍ଗା ଜଳରେ ଛାଡ଼ି ଦେଉଥିବେ, ଯାହାଫଳରେ ଶୀଘ୍ର ଶାପମୁକ୍ତ ହୋଇ ଆମେ ପୁଣି ଦେବଯୋନିକୁ ଫେରିଆସିବୁ ।

ଗଙ୍ଗା କହିଲେ—ଠିକ୍ ଅଛି । ମୁଁ ଠିକ୍ ସେହିପରି କରିବି । ଏହା କହି ଗଙ୍ଗାଦେବୀ ଅନ୍ତର୍ଦ୍ଧାନ ହୋଇଗଲେ । କାଳାନ୍ତରେ ସେ ଶାନ୍ତନୁଙ୍କ ପତ୍ନୀ ହେଲେ ଓ ତାଙ୍କ ଗର୍ଭରୁ ବସୁମାନେ ଜନ୍ମ ହୋଇଥିଲେ ।

ମହର୍ଷି ସୂତ ପୁଣି କହିଲେ—ମୁନିଗଣ ! ଗଙ୍ଗାଙ୍କୁ ବିବାହ କରି ମହାରାଜା ଶାନ୍ତନୁ ଖୁବ୍ ଖୁସି ହେଲେ । ଗଙ୍ଗାଦେବୀ ମାନବୀ ରୂପରେ ମହାରାଜ ଶାନ୍ତନୁଙ୍କୁ ନିଜର ହାବ, ଭାବ, କଟାକ୍ଷ, ରୂପ, ଲାବଣ୍ୟ ଓ ପ୍ରେମ ଚାତୁରୀରେ ସର୍ବଦା ପ୍ରସନ୍ନ ରଖୁଥିଲେ । ମହାରାଜ ମଧ୍ୟ ତାଙ୍କର ଶୀଳ, ସ୍ୱଭାବ ତଥା ଗୁଣ ଦେଖି ମୁଗ୍ଧ ହୋଇ ପତ୍ନୀଙ୍କୁ କେବେହେଲେ ପାଖରୁ ଅନ୍ତର କରୁ ନ ଥିଲେ । ତାଙ୍କୁ ନାନାବିଧ ଭୋଗ ସାମଗ୍ରୀ ଦେଇ ସନ୍ତୁଷ୍ଟ ରଖୁଥିଲେ । ଏହିପରି ଭାବେ ସେହି ଦିବ୍ୟ ରମଣୀ ସହିତ ରାଜା ବହୁଦିନ ସୁଖରେ କଟାଇଲେ । ଯଥା ସମୟରେ ତାଙ୍କ ଗର୍ଭରୁ ଅଷ୍ଟବସୁ କ୍ରମଶଃ ଜନ୍ମ ହେଲେ । କିନ୍ତୁ ପିଲା ଜନ୍ମ ହେଲାମାତ୍ରେ ଗଙ୍ଗାଦେବୀ ତାକୁ ନେଇ ଗଙ୍ଗାରେ ଭସାଇ ଦେଇ କହୁଥିଲେ—ଯାଅ, ମୁଁ ତୁମକୁ ମାନବ ଦେହରୁ ମୁକ୍ତ କଲି ।

ରାଜାଙ୍କୁ ଗଙ୍ଗାଙ୍କର ଏପରି କାର୍ଯ୍ୟ ବଡ଼ ଖରାପ ଲାଗୁଥିଲା । କିନ୍ତୁ ପ୍ରତିଜ୍ଞା କଥା ମନେ ପକାଇ ସେ କିଛି କହିପାରୁ ନ ଥିଲେ । ସେ ତାଙ୍କୁ କଥା ଦେଇଥିଲେ—ମୁଁ ତୁମର କୌଣସି କାର୍ଯ୍ୟରେ ହସ୍ତକ୍ଷେପ କରିବି ନାହିଁ । ସେଥିପାଇଁ ଗୋଟିକ ପରେ ଗୋଟିଏ ପୁଅକୁ ଏପରି ଗଙ୍ଗା ପାଣିରେ ଭସାଇ ଦେବା ଦେଖି ତାଙ୍କର ଗଭୀର ମାନସିକ ଦୁଃଖ ହେଉଥିଲେ ମଧ୍ୟ ସେ କିଛି କହିପାରୁ ନ ଥିଲେ । ଯଦି କିଛି କହିଲେ ସେ ତାଙ୍କୁ ଛାଡ଼ି ଚାଲିଯିବେ ସେହି ଭୟ ଶାନ୍ତନୁଙ୍କର ଥିଲା ।

ଯେତେବେଳେ ଗଙ୍ଗାଦେବୀ ଏହିପରି ସାତୋଟି ପୁଅଙ୍କୁ ଜଳରେ ବୁଡ଼ାଇ ଦେଲେ ଓ ଅଷ୍ଟମ ପୁତ୍ରକୁ ମଧ୍ୟ ଗଙ୍ଗାରେ ବୁଡ଼ାଇବାକୁ ନେଇ ଯାଉଥିଲେ ସେତେବେଳେ ଶାନ୍ତନୁ କହିଲେ—ଦେବି ! ତୁମେ କୌଣସି ରାକ୍ଷସୀ ନା ଅପ୍ସରା ? ଏପରି ଜଘନ୍ୟ କାର୍ଯ୍ୟ କରିବାକୁ ଲାଜ ଲାଗୁନାହିଁ ? ମାତ୍ର ଶାସ୍ତ୍ରକାରମାନେ ସତରେ କହିଛନ୍ତି—ଯେଉଁ କନ୍ୟାର କୁଳଶୀଳ ଜଣା ନ ଥିବ ତାକୁ ବିବାହ କରିବା ଉଚିତ ନୁହେଁ । ମୁଁ ଜାଣେନି ତୁମେ କାହାର ଝିଅ ଓ କଣ ତୁମର କୁଳ ? ତୁମେ ଏପରି କ୍ରୂର କର୍ମ କରିପାରିବ ବୋଲି ମୁଁ କଣ ଜାଣିଥିଲି ? ତୁମେ ତ ମୋର କୁଳକୁ ହିଁ ନଷ୍ଟ କରିଦେବ । ମୋର ବଂଶ କିପରି ରହିପାରିବ ?

ଏହା ଶୁଣି ଭଗବତୀ ଗଙ୍ଗା ହସି ହସି କହିଲେ—ରାଜନ୍ ! ମୁଁ ରାକ୍ଷସୀ ନୁହେଁ କି କୌଣସି ଅସୁରର କନ୍ୟା ନୁହେଁ । ମୁଁ ଦିବ୍ୟକନ୍ୟା । ଭଗୀରଥ ତପସ୍ୟା କରି ମୋତେ ସ୍ୱର୍ଗରୁ ମର୍ତ୍ତ୍ୟପୁରକୁ ଆଣିଥିଲେ । ସେଥିପାଇଁ ଲୋକେ ମୋତେ ଭାଗୀରଥୀ କହନ୍ତି । ଜହ୍ନୁ ଋଷି ମୋତେ ପିଇଦେଇ ପୁଣି ଶରୀରରୁ ବାହାର କରିଥିଲେ । ସେଥିପାଇଁ ମୋର ନାମ ଜାହ୍ନବୀ ହୋଇଛି । ମୁଁ ତ୍ରିପଥଗା ଗଙ୍ଗା । ଅଭିଶାପବଶତଃ ମୋତେ ମାନବୀ ଯୋନି ଗ୍ରହଣ କରିବାକୁ ପଡ଼ିଲା । ଯେଉଁ ପୁଅମାନଙ୍କୁ ଗଙ୍ଗାରେ ଭସାଇ ଦେଇଛି, ସେମାନେ ଅଷ୍ଟବସୁଙ୍କ ମଧ୍ୟରୁ ପ୍ରଥମ ସାତଜଣ । ସେମାନେ ମର୍ତ୍ତ୍ୟଲୋକରେ ମୋତେ ସେମାନଙ୍କର

ମାଆ ହେବା ପାଇଁ ପ୍ରାର୍ଥନା କରିଥିଲେ ଓ ଜନ୍ମ ହେବା ପରେ ପରେ ମାନବ ଦେହରୁ ମୁକ୍ତି ଦେବା ପାଇଁ ମଧ୍ୟ ନିବେଦନ କରିଥିଲେ । ସେଥି ପାଇଁ ମୁଁ ସେମାନଙ୍କୁ ପାଣିରେ ଭସାଇ ଦେଇଛି । ଏହି ଶେଷ ପୁତ୍ର ଆପଣଙ୍କ ବଂଶକୁ ରକ୍ଷା କରିବା ପାଇଁ ରହିବ । ମହାରାଜ ! ଆପଣ ମୋ' କାର୍ଯ୍ୟରେ ହସ୍ତକ୍ଷେପ କଲେ, ତେଣୁ ମୁଁ ଆଉ ଆପଣଙ୍କ ପାଖରେ ରହିପାରିବି ନାହିଁ । ଏହା କହି ସେହି ଅନ୍ତିମ ପୁତ୍ରକୁ ନେଇ ଗଙ୍ଗା ଅନ୍ତର୍ଦ୍ଧାନ ହୋଇଗଲେ । ଗଙ୍ଗାଙ୍କର ପରିଚୟ ପାଇ ମହାରାଜ ଶାନ୍ତନୁ ଆଶ୍ଚର୍ଯ୍ୟ ଚକିତ ହୋଇ ରହିଗଲେ ।

ଗଙ୍ଗା ଅନ୍ତର୍ଦ୍ଧାନ ହେବାର ଅନେକ ଦିନ ହୋଇଗଲା । ରାଜା ତାଙ୍କୁ ଭୁଲିପାରୁ ନ ଥାନ୍ତି । ପ୍ରାୟ ଏକାନ୍ତରେ ଗଙ୍ଗାକୂଳରେ ବସି ସେ ଗଙ୍ଗାଙ୍କୁ ମନେ ମନେ ଭାବୁଥାନ୍ତି । ଗଙ୍ଗା ରାଜାଙ୍କୁ ଏପରି ସହବାସ ସୁଖ ଦେଇଥିଲେ ଯେ, ଶାନ୍ତନୁ ତାଙ୍କୁ ଆଦୌ ଭୁଲିପାରୁ ନ ଥିଲେ । ଦିନେ ମହାରାଜ ଗଙ୍ଗାକୂଳରେ ବସିଥିଲେ । ସେ ହଠାତ୍ ଦେଖିଲେ ଗଙ୍ଗାଙ୍କର ଧାର ଶୁଖିଯାଇଛି । ସମୁଦ୍ରଗାମିନୀ ଗଙ୍ଗା ପ୍ରବାହକୁ କିଏ ଅଟକାଇ ଦେଲା ବୋଲି ଭାବି ସେ ଆଶ୍ଚର୍ଯ୍ୟ ହୋଇଗଲେ । ସେ ଅତ୍ୟନ୍ତ କୌତୁହଳୀ ହୋଇ ଆଗକୁ ଚାଲିଲେ । କିଛି ଦୂର ଯାଇ ଦେଖିଲେ ଏକ ଅତି ସୁନ୍ଦର ଦୃଢ଼କାୟ ବଳିଷ୍ଠ କିଶୋର ବାଳକ ଧନୁଶର ଧରି ଠିଆ ହୋଇଛି । ନିଜର ଅସ୍ତ୍ର ପ୍ରଭାବରେ ସେ ଗଙ୍ଗାଙ୍କ ଧାରକୁ ଏପରି ଅବରୁଦ୍ଧ କରି ରଖିଥିଲା ଯେ ଟୋପାଏ ହେଲେ ପାଣି ବାହାରି ଯାଉ ନ ଥିଲା । ସେଠାରେ ଗଙ୍ଗାଜଳ ସମୁଦ୍ର ପରି ସ୍ଥିର ରହିଥିଲା । ସେହି କିଶୋର, ଦେବତାଙ୍କ ସେନାପତି କାର୍ତ୍ତିକେୟଙ୍କ ପରି ସୁଦୃଢ଼ ଓ ବଳବାନ୍ ଥିଲା । କାମଦେବଙ୍କ ପରି ସୁନ୍ଦର ଓ ମୂର୍ତ୍ତିମାନ୍ ବୀରରସ ପରି ଗୋଟିଏ ପାଦ ଆଗକୁ ରଖି ସ୍ଥିରଭାବେ ଠିଆ ହୋଇଥିଲା । ସାକ୍ଷାତ୍ ପରାକ୍ରମପରି ସେ ଅସ୍ତ୍ରଶସ୍ତ୍ରର ଚମତ୍କାରିତା ଦେଖାଇଥିଲା । ଏପରି ଅଦ୍ଭୁତ ବାଳକକୁ ଦେଖି ମହାରାଜ ଅତିଶୟ ବିସ୍ମିତ ହୋଇପଡ଼ିଲେ । ମହାରାଜ ପଚାରିଲେ—ହେ ପୁରୁଷ ସିଂହ ! ତୁମେ କିଏ ?

ଏହା ଶୁଣିବାମାତ୍ରେ ବାଳକ ସଙ୍ଗେ ସଙ୍ଗେ ଅନ୍ତର୍ଦ୍ଧାନ ହୋଇଗଲା । ସେଥିରେ ରାଜା ଆହୁରି ଆଶ୍ଚର୍ଯ୍ୟାନ୍ୱିତ ହେଲେ । ସେ ଗଙ୍ଗାକୂଳରେ ବସିପଡ଼ିଲେ ଓ କରୁଣ ସ୍ୱରରେ କାନ୍ଦି କାନ୍ଦି କହିଲେ—ଗଙ୍ଗେ ! ହେ ତ୍ରିପଥଗାମିନୀ ! ତୁମେ ମୋତେ ସେହି ଦେବକୁମାରକୁ ପୁଣି ଥରେ ଦେଖାଇଦିଅ । ସେ କ'ଣ ମାୟା ନା ମୋ' ଚିତ୍ତର ଭ୍ରମ । ପ୍ରିୟେ ! ତୁମେ ମୋ' ପ୍ରତି ଏତେ କଠୋର କାହିଁକି ହେଲ ?

ରାଜା ଏହିପରି ଭାବୁଥିବାବେଳେ ଏକ ଦେବକୁମାରୀ ଶୁଭ୍ରଶାଢ଼ୀ ପିନ୍ଧି ସେହି କୁମାରଙ୍କୁ ହାତରେ ଧରି ଆସୁଥିବାର ଦେଖିଲେ । ସେ ଥିଲେ ସ୍ୱୟଂ ଭଗବତୀ ଗଙ୍ଗା । ରାଜାଙ୍କ ପାଖରେ ଥିବାବେଳେ ମାନବୀ ରୂପରେ ରହିଥିବାରୁ ଅନ୍ୟ ପ୍ରକାର ବେଶ ଭୂଷା ଓ ରୂପ ତାଙ୍କର ଥିଲା । ଆଜି ସେ ଧଳା ଶାଢ଼ୀ ପିନ୍ଧି ଅତୀବ ତେଜସ୍ୱିନୀ ଓ ଦିବ୍ୟ ଲୋକରେ

ରହିଥିବା ଦେବୀ ପରି ଦେଖାଯାଉଥିଲେ । ସେ ଅତି ମଧୁର ସ୍ୱରରେ କହିଲେ—ଦେବ ! ମୋତେ ଆପଣ ଚହ୍ନିପାରୁଛନ୍ତି ନା ନାହିଁ ?

ରାଜା କହିଲେ—ଦେବି ! ସ୍ୱରରୁ ଅନୁମାନ କରୁଛି, ତୁମେ ମୋର ପ୍ରାଣପ୍ରିୟା ଜହ୍ନୁତନୟା ସାକ୍ଷାତ୍ ତ୍ରିପଥଗା ଗଙ୍ଗା ବୋଲି ।

ଗଙ୍ଗା କହିଲେ—ହଁ, ମହାରାଜ ! ଆପଣଙ୍କ ଅନୁମାନ ଠିକ୍ । ମୁଁ ଗଙ୍ଗା । ଆପଣଙ୍କ ଔରସରେ ମୋ' ଗର୍ଭରୁ ଯେଉଁ ଅଷ୍ଟମ ପୁତ୍ର ଜନ୍ମ ହୋଇଥିଲା ସେ ଏହି କୁମାର । ମୁଁ ଏହାକୁ ପାଖରେ ରଖି ଏତେ ବଡ଼ କଲି । ଭଗବାନ ବଶିଷ୍ଠଙ୍କଠାରୁ ଏ ସମସ୍ତ ଅସ୍ତ୍ରଶସ୍ତ୍ର ବିଦ୍ୟା ଶିକ୍ଷା କରିଛି । ଏହାକୁ ଯୁଦ୍ଧରେ ଦେବତା, ଅସୁର, ରାକ୍ଷସ, ଗନ୍ଧର୍ବ, ଯକ୍ଷ, କିନ୍ନର ସମସ୍ତେ ମିଶି ମଧ୍ୟ ପରାଜିତ କରିପାରିବେ ନାହିଁ । ଏପରି କ୍ଷେତ୍ରରେ ପୃଥିବୀର ରାଜାଙ୍କ କଥା କହିବା ଅନାବଶ୍ୟକ । ମହାରାଜ ! ଏଥର ଆପଣ ଏହାର ଦାୟିତ୍ୱ ନିଅନ୍ତୁ ଓ ଆପଣଙ୍କ ରାଜ୍ୟର ଅଧିକାରୀ କରନ୍ତୁ ।

ଗଙ୍ଗା ଦେବୀ ଏହା କହି କୁମାରକୁ ରାଜାଙ୍କୁ ସମର୍ପଣ କରି ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ରାଜା ଆନନ୍ଦିତ ହୋଇ ସେହି କୁମାରକୁ ନେଇ ନଗରକୁ ଫେରିଲେ ଓ ଯଥାସମୟରେ ତାଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କଲେ । ମହାରାଜ ପୁତ୍ରର ନାମ ରଖିଥିଲେ ଦେବବ୍ରତ । ସେ ବଡ଼ ବୁଦ୍ଧିମାନ୍, ଧାର୍ମିକ, ସୁଶୀଳ ଓ ପିତା ଆଜ୍ଞା ପାଳନ ପାଇଁ ସର୍ବଦା ତତ୍ପର ଥିଲେ । ପ୍ରଜାମାନେ ତାଙ୍କୁ ପ୍ରାଣ ଠାରୁ ବଳି ଅଧିକ ଭଲ ପାଉଥିଲେ । ସେ ମଧ୍ୟ ସମସ୍ତଙ୍କ ସହିତ ଆତ୍ମୀୟ, ସ୍ୱଜନ ପରି ବ୍ୟବହାର କରୁଥିଲେ । ସେ ଭଗବାନ୍ ପରଶୁରାମଙ୍କ ଠାରୁ ଅସ୍ତ୍ରବିଦ୍ୟା ଶିକ୍ଷା କରିଥିଲେ । ସେତେବେଳେ ଦେବବ୍ରତଙ୍କ ପରି କେହି ବଳୀ, ବୀର ତଥା ଅସ୍ତ୍ରଶସ୍ତ୍ର ବିଦ୍ୟାରେ ନିପୁଣ ରାଜା ବା ରାଜକୁମାର ନଥିଲେ । ଦେବତା-ମାନେ ମଧ୍ୟ ଦେବବ୍ରତଙ୍କ ପରାକ୍ରମ ଦେଖି ଭୟ କରୁଥିଲେ । ଦେବରାଜ ମଧ୍ୟ ତାଙ୍କର ସହାୟତା ଇଚ୍ଛା କରୁଥିଲେ । ପରେ ଏହି ଦେବବ୍ରତ ଭୀଷ୍ମ ନାମରେ ପରିଚିତ ହୋଇଥିଲେ ।

ଏହା ଶୁଣି ଶୌନକ ପଚାରିଲେ—ମହାଭାଗ ! ଶାନ୍ତନୁ ସୁତ ଦେବବ୍ରତଙ୍କ ନାମ ଭୀଷ୍ମ କିପରି ହେଲା ? ଦେବବ୍ରତ ତ ତାଙ୍କର ସେପରି ପ୍ରସିଦ୍ଧ ନାମ ନୁହେଁ । ତାଙ୍କୁ ସମସ୍ତେ ପିତାମହ ଭୀଷ୍ମ ବୋଲି କହନ୍ତି । ସେ କଣ ସମସ୍ତଙ୍କର ପିତାମହ ଥିଲେ ?

ମହର୍ଷି ସୂତ କହିଲେ—ମହାଶୟ ! ନିଜର ପିତାଙ୍କୁ ଖୁସି କରାଇବାପାଇଁ ସେ ନିଜର ଯୁବରାଜ ପଦ ତ୍ୟାଗ କରିଥିଲେ । ସେତିକି ନୁହେଁ, ଆଜୀବନ ଅବିବାହିତ ରହି ଅଖଣ୍ଡ ବ୍ରହ୍ମଚର୍ଯ୍ୟ ପାଳନ କରିବା ବ୍ରତ ଗ୍ରହଣ ପାଇଁ ଭୀଷ୍ମ ପ୍ରତିଜ୍ଞା କରିଥିଲେ । ଏପରି କଠୋର ପ୍ରତିଜ୍ଞା କରିଥିବାରୁ ସମସ୍ତେ ତାଙ୍କୁ ଭୀଷ୍ମ ନାମରେ ଡାକିବାକୁ ଲାଗିଲେ । ସେ

କୌରବ ଓ ପାଣ୍ଡବମାନଙ୍କର ପିତାମହ ଥିଲେ । ସେ ସମସ୍ତଙ୍କୁ ପାଳନ ପୋଷଣ କରିଥିଲେ । ରାଜାଙ୍କ ଗୁରୁଙ୍କୁ ଯେପରି ସମସ୍ତେ ରାଜଗୁରୁ କହନ୍ତି, ରାଜାଙ୍କ ମାତାଙ୍କୁ ଯେପରି ରାଜମାତା କହନ୍ତି, ସେହିପରି ରାଜାଙ୍କ ପିତାମହ ହୋଇଥିବାରୁ ତାଙ୍କର ନାମ ପିତାମହ ହୋଇଗଲା । ପିତାମହ ଭୀଷ୍ମଙ୍କ ଚରିତ ବଡ଼ ଅଦ୍ଭୁତ । ଯୁଦ୍ଧରେ ସେ ବିଶ୍ୱବିଜୟୀ ଭଗବାନ୍ ପରଶୁରାମଙ୍କୁ ମଧ୍ୟ ସନ୍ତୁଷ୍ଟ କରିଥିଲେ ।

ଶୌନକ ପୁଣି କହିଲେ—ମହାଭାଗ ! ଆପଣ ଆମକୁ ଦେବବ୍ରତ ଭୀଷ୍ମଙ୍କ ସମ୍ପୂର୍ଣ୍ଣ କାହାଣୀ କହନ୍ତୁ । ସେ ଅବିବାହିତ ରହିବାପାଇଁ କାହିଁକି ପ୍ରତିଜ୍ଞା କଲେ ଓ ପରଶୁରାମ ସହିତ ତାଙ୍କର କାହିଁକି ଯୁଦ୍ଧ ହୋଇଥିଲା ?

ଏହା ଶୁଣି ମହର୍ଷିସୂତ କହିଲେ—ଠିକ୍ ଅଛି, ମହାଶୟ ! ବର୍ତ୍ତମାନ ମୁଁ ଆପଣଙ୍କୁ ବୀରଯୂଥାଗ୍ରଣୀ କୁମାର ଭୀଷ୍ମଙ୍କ ଚରିତ କହୁଛି । ଆପଣମାନେ ମନଦେଇ ଶୁଣନ୍ତୁ ।

## ଛପ୍ପୟ

ଗଙ୍ଗା ଜନନୀ କର୍ୟୋ ଭୀଷ୍ମକୋ ପାଲନ ବନ ମହଁ ।
ଶନ୍ତନୁକୁଁ ପୁନ ଦୟୋ ପାଇ ସୁତ ହର୍ଷିତ ମନ ମହଁ ॥
ଲାଇକରେ ଯୁବରାଜ ଲାଜମହଁ ଚହୁଁ ଦିଶି ମଙ୍ଗଲ ।
ଶନ୍ତନୁ ନୃପ ଏକ ଦିବସ ଗୟେ ମୃଗୟା ହିତ ଜଙ୍ଗଲ ॥
ବହୁ ହିଂସକ ପଶୁ ବଧ କରେ, ପହୁଁଚେ ନୃପ ଯମୁନା ଜହାଁ ।
ଲଖୀ ପାର ପଥିକନ କରତ, ଦାଶରାଜ କନ୍ୟା ତହାଁ ॥



# ଦେବବ୍ରତଙ୍କ ଭୀଷ୍ମପ୍ରତିଜ୍ଞା

ଶନ୍ତନୋଦାଶକନ୍ୟାୟାଂ ଜଜ୍ଞେ ଚିତ୍ରାଙ୍ଗଦଃ ସୁତଃ ।
ବିଚିତ୍ରବୀର୍ଯ୍ୟଶ୍ଚାବରଜୋ ନାମ୍ନା ଚିତ୍ରାଙ୍ଗଦୋ ହତଃ ॥
ଯସ୍ୟାଂ ପରାଶରାତ୍ ସାକ୍ଷାଦବତୀର୍ଣ୍ଣୋ ହରେଃ କଳା ॥

(ଭାଗ-୯ସ୍କ, ୨୨ଅ, ୨୧ ଶ୍ଳୋ)

### ଛପ୍ପୟ

ଜିନତେଁ କୀନ୍ହେ ପ୍ରକଟ ପରାଶର ବ୍ୟାସ ମହାମୁନି ।
ଯୋଜନଗନ୍ଧା ସୁରତ ଭଇଁ କନ୍ୟା ମୁନି ଜନ୍ମ ପୁନି ॥
ଲଖି କନ୍ୟା ସୌନ୍ଦର୍ଯ୍ୟ ନୃପତି ଅତିଶୟ ହରଷାୟେ ।
କନ୍ୟା ଯାଚନ ହେତୁ ଦାଶ ପତିକେ ଢିଁଗ ଆୟେ ॥
ନୃପ ପ୍ରସ୍ତାବ ନିଷାଦ ସୁନି, ହରଷିତ ହ୍ୱୈଁ ବୋଲ୍ୟୋ ବଚନ ।
ସତ୍ୟବତୀ ସୁତ ହୋହିଁ ନୃପ, ଦେହୁଁ କର ହି ଯଦି ଆପ ପ୍ରନ ॥

ସର୍ବାଧିକ ସୁଖ ଭୋଗକୁ ଯେ କ୍ଷଣକ ମଧ୍ୟରେ ଜଳାଞ୍ଜଳି ଦେଇପାରେ, ସେ ନିଜ ଇଷ୍ଟକୁ ସହଜରେ ପାଇଥାଏ । ଯେଉଁ ସଂସାରୀ ସୁଖ ଲୋଡ଼ନ୍ତି ତାଙ୍କୁ ପାରଲୌକିକ ସୁଖ ମିଳିବା ଆଦୌ ସହଜ ନୁହେଁ । ଶାରୀରିକ ସୁଖକୁ ତ୍ୟାଗ ନ କଲେ ଗୁରୁଜନମାନଙ୍କର ସେବା କରି ହୁଏ ନାହିଁ । ମାତା, ପିତା, ଆଚାର୍ଯ୍ୟ ଓ ଗୁରୁଜନମାନଙ୍କୁ ପ୍ରସନ୍ନ କରିବା ପାଇଁ ଯେ ଯେତେବଡ଼ ତ୍ୟାଗ କରେ, ସଂସାରରେ ସେ ସେତେ ବେଶୀ ଯଶସ୍ୱୀ ହୁଏ । ସବୁ ତ୍ୟାଗ ମଧ୍ୟରେ ସ୍ତ୍ରୀ ସୁଖ ତ୍ୟାଗ କରିବା ବଡ଼ ଦୁଷ୍କର । ମଣିଷ ଅନେକ ପ୍ରାଣ ଦେଇଦେବା ପାଇଁ ତତ୍ପର ହୋଇପାରେ, କିନ୍ତୁ ସାରା ଜୀବନ ସ୍ତ୍ରୀ ସୁଖ ତ୍ୟାଗ କରିବା ପାଇଁ ପ୍ରତିଜ୍ଞା କରିବା ଅତି ବଡ଼ ବୀର, ଜିତେନ୍ଦ୍ରିୟ, ଦୃଢ଼ ପ୍ରତିଜ୍ଞ ଓ ସଂଯତ ପୁରୁଷର କାମ । ଯେଉଁ

ଲୋକ ଏପରି ଖ୍ରୀଷଣ ପ୍ରତିଜ୍ଞା କରି ତାକୁ ପାଳନ କରେ, ସେ ବିଶ୍ୱବନ୍ଦନୀୟ ହୁଏ, ତା'ର ପଦଧୂଳି ଗ୍ରହଣ କରିବା ପାଇଁ ଦେବତାମାନେ ମଧ୍ୟ ଲାଳାୟିତ ହୁଅନ୍ତି । ଭଗବାନ୍ ସ୍ୱୟଂ ତାକୁ ଦର୍ଶନ ଦିଅନ୍ତି ।

ମହର୍ଷି ସୂତ କହିଲେ—ମୁନିଗଣ ! ଗଙ୍ଗାପୁତ୍ର ଶାନ୍ତନୁ ନନ୍ଦନଙ୍କ ନାମ ଖ୍ରୀଷ୍ମ କାହିଁକି ହେଲା, ସେହି କଥା ମୁଁ ଆପଣମାନଙ୍କୁ କହୁଛି । ଯୁବରାଜ ହେବା ପରେ ଦେବବ୍ରତ ପିତାଙ୍କର ସମସ୍ତ ଦାୟିତ୍ୱ ବହନ କଲେ । ସେ ବଡ଼ ମନଯୋଗ ସହକାରେ ରାଜକାର୍ଯ୍ୟ ପରିଚାଳନା କଲେ । ଯେଉଁ କାର୍ଯ୍ୟରେ ପ୍ରଜାମାନଙ୍କର ମଙ୍ଗଳ ହେବ ବୋଲି ସେ ବିଚାରୁ-ଥିଲେ, ତାକୁ ଦୃଢ଼ତାର ସହିତ କରୁଥିଲେ । ରାଜାଙ୍କୁ ବିଶ୍ରାମ ମିଳିଲା । ସେ ସ୍ୱଚ୍ଛନ୍ଦଭାବେ ବନ, ଉପବନ, ନଦୀ ଓ ପର୍ବତପ୍ରାନ୍ତରେ ବୁଲି ମୃଗୟା କରି ସୁଖରେ ଜୀବନଯାପନ କରିବାକୁ ଲାଗିଲେ ।

ଦିନେ ମୃଗୟା କରୁ କରୁ ଶାନ୍ତନୁ ଯାଇ ଯମୁନା କୂଳରେ ପହଞ୍ଚିଲେ । ସେଠାରେ ବହୁଦୂରରୁ ପଦ୍ମଫୁଲର ସୁଗନ୍ଧ ଭାସି ଆସୁଥିବାର ସେ ଅନୁଭବ କଲେ । ସେହି ସୁଗନ୍ଧ ଆସୁଥିବା ଦିଗକୁ ଅନୁସରଣ କରି ସେ ଯମୁନା କୂଳରେ ଅଗ୍ରସର ହେଲେ । କିଛି ଦୂର ଗିବା ପରେ ଏକ ଅତୁଳନୀୟ ରୂପଲାବଣ୍ୟ ଯୁକ୍ତା ଯୁବତୀ ଗୋଟିଏ ଡଙ୍ଗା ପାଖରେ କାଠ ଖଣ୍ଡିଏ ଧରି ଠିଆ ହୋଇଥିବାର ଦେଖିଲେ । ସେହି ଯୁବତୀ ଦେହରୁ ପଦ୍ମଗନ୍ଧ ଆସୁଥିବାର ରାଜା ଜାଣି ପାରିଲେ । ରାଜା ତା'ର ଅସାଧାରଣ ରୂପଲାବଣ୍ୟ ଓ ଅଙ୍ଗବିନ୍ୟାସରେ ମୁଗ୍ଧ ଓ ପ୍ରଭାବିତ ହୋଇପଡ଼ିଲେ । ସେ ସେହି ସୁନ୍ଦରୀକୁ ପଚାରିଲେ—ଦେବି ! ତୁମେ କିଏ ? ତୁମେ କାହାର କନ୍ୟା ?

ସେହି ଯୁବତୀ କହିଲା—ରାଜନ୍ ! ମୁଁ ନିଷାଦରାଜାଙ୍କ କନ୍ୟା । ମୋର ନାମ ସତ୍ୟବତୀ ।

ରାଜା ପଚାରିଲେ—ଏଠାରେ ଡଙ୍ଗା ଉପରେ ଠିଆ ହୋଇ ତୁମେ କ'ଣ କରୁଛ ?

ଯୁବତୀ କହିଲା—ମହାରାଜ ! ଏପାଖର ଯାତ୍ରୀଙ୍କୁ ସେପାଖକୁ ନେବା ଓ ସେପାଖର ଯାତ୍ରୀଙ୍କୁ ଏପାଖକୁ ଅଣିବା ପାଇଁ ବାପା ମୋତେ ଦାୟିତ୍ୱ ଦେଇଛନ୍ତି । ପିତାଙ୍କ ଆଜ୍ଞାରେ ମୁଁ ଏହି କାର୍ଯ୍ୟ କରୁଛି ।

ରାଜା କହିଲେ—ମୋତେ ମଧ୍ୟ କୂଳରେ ଲଗାଇ ଦିଅ । ମୁଁ ତୁମର ସୌନ୍ଦର୍ଯ୍ୟ ସାଗରରେ ବୁଡ଼ିଯାଉଛି ।

ଏହା ଶୁଣି ଯୁବତୀ ଲଜ୍ଜିତ ହେଲା । ସେ ମୁହଁ ତଳକୁ କରି କହିଲା—ମହାରାଜ ! ଏକଥା ଆପଣଙ୍କ ମୁହଁରେ ଶୋଭା ପାଉ ନାହିଁ ।

ରାଜା କହିଲେ—ତୁମେ ଯୁବତୀ, ବିବାହ ଯୋଗ୍ୟା । ମୁଁ ଯଦି ତୁମକୁ ବିବାହ କରିବାକୁ ଇଚ୍ଛା କରିବି, ତୁମେ ମୋତେ ସ୍ୱୀକାର କରିବ କି ନାହିଁ ?

ସତ୍ୟବତୀ ଲଜ୍ଜାନତ ମୁଖ କରି ଧୀରେ ଧୀରେ ରହି ରହି କହିଲା—ମହାରାଜ ! ମୁଁ ସ୍ୱତନ୍ତ୍ରା ନୁହେଁ । ମୁଁ ଏବେ ପିତାଙ୍କ ଅଧୀନରେ ଅଛି । ମୋ' ପିତା ମୋତେ ଯାହାଙ୍କୁ ଦେବେ ମୁଁ ତାଙ୍କ ସହିତ ଯିବି । ବିବାହ କରିବା ପାଇଁ ମୋର ସ୍ୱାଧୀନତା ନାହିଁ । ଯଦି ଆପଣ ମୋତେ ଚାହୁଁଛନ୍ତି, ତେବେ ମୋର ପିତାଙ୍କୁ ଆପଣ ମାଗନ୍ତୁ । ଆପଣଙ୍କୁ ଯୋଗ୍ୟ ବର ଭାବି ସେ ନିଶ୍ଚୟ ମୋତେ ଆପଣଙ୍କୁ ଦାନ କରିବେ ।

ଧାର୍ମିକ ରାଜା ଶାନ୍ତନୁ ସତ୍ୟବତୀଙ୍କ କଥାକୁ ସ୍ୱୀକାର କଲେ । ସେ କନ୍ୟାର ପିତା ଦାଶରାଜଙ୍କ ପାଖକୁ ଗଲେ ଓ କହିଲେ—ନିଷାଦରାଜ ! ଆପଣ ବଡ଼ ଭାଗ୍ୟଶାଳୀ । ଆପଣଙ୍କ କନ୍ୟା ଯେପରି ସୁନ୍ଦରୀ ସେହିପରି ଗୁଣବତୀ । ଆପଣଙ୍କ କନ୍ୟାକୁ ଆପଣ ମୋତେ ଦାନ କରନ୍ତୁ । ମୁଁ ତାଙ୍କ ସହିତ ବିବାହ କରିବାକୁ ଇଚ୍ଛା କରୁଛି ।

ନିଷାଦରାଜ କହିଲେ—ରାଜନ୍ ! ପିତା ଅନ୍ୟ ନିମିତ୍ତ କନ୍ୟାକୁ ପାଳନ କରନ୍ତି । କନ୍ୟା ଯେତେ ଯେତେ ବଡ଼ ହୁଏ, ଯୁବତୀ ହେବାକୁ ଲାଗେ, ପିତାର ଚିନ୍ତା ସେତେ ବଢ଼ି ବଢ଼ି ଯାଏ । ଯୁବତୀ କନ୍ୟାକୁ କିପରି ଯୋଗ୍ୟ ବର ମିଳିବ, ଯେଉଁଠାକୁ ଯାଇ ଝିଅ ସୁଖରେ ରହିବ—ଏହି ଚିନ୍ତା ପିତାଙ୍କୁ ଅହୋରାତ୍ର ବ୍ୟସ୍ତ କରେ । ମୋର ଝିଅ ବିବାହ ଯୋଗ୍ୟା ହୋଇଗଲାଣି । ମୁଁ ତା' ପାଇଁ ଯୋଗ୍ୟ ବର ଖୋଜୁଥିଲି । ଭଗବାନ୍ ମୋର ଇଚ୍ଛା ପୂରଣ କରିଛନ୍ତି । ମହାରାଜ ! ଆପଣ ଏ ଭୂମଣ୍ଡଳରେ ଏକଛତ୍ର ସମ୍ରାଟ୍ । ଆପଣଙ୍କ ପରି ବର ମୋ' ଝିଅକୁ ଆଉ କେଉଁଠୁ ମିଳିବ ? କିନ୍ତୁ ବିବାହ କରିବା ପୂର୍ବରୁ ଆପଣଙ୍କୁ ଏକ ପ୍ରତିଜ୍ଞା କରିବାକୁ ପଡ଼ିବ ।

ମହାରାଜ ଶାନ୍ତନୁ ପଚାରିଲେ—କି ପ୍ରତିଜ୍ଞା ?

ନିଷାଦରାଜ କହିଲେ—ମୋର ଏଇ ଝିଅ ଗର୍ଭରୁ ଯେଉଁ ପୁତ୍ର ଜନ୍ମ ହେବ, ସେ ହିଁ ଆପଣଙ୍କ ରାଜ୍ୟର ଉତ୍ତରାଧିକାରୀ ହେବ । ଏହି ପ୍ରତିଜ୍ଞା ଆପଣଙ୍କୁ କରିବାକୁ ହେବ । ଆପଣ ଯେପରି ରାଜା ସେହିପରି ମୋର କନ୍ୟା ମଧ୍ୟ ଜଣେ ରାଜର୍ଷିଙ୍କ ଔରସରୁ ମତ୍ସ୍ୟଗର୍ଭରୁ ଜନ୍ମ ଗ୍ରହଣ କରିଛି । ମୁଁ ଏହାର ପାଳକ ପିତା । ଏହାର ପୁତ୍ର ରାଜସିଂହାସନ ଅଧିରୋହଣ କରୁ ବୋଲି ମୋର ଇଚ୍ଛା ।

ଏହା ଶୁଣି ମହାରାଜ ଶାନ୍ତନୁ କାଠ ପାଲଟି ଗଲେ । ମନେ ମନେ ସେ ଭାବିବାକୁ ଲାଗିଲେ—ଏ ନିଷାଦ ମୋର ଅଭିଳାଷକୁ ଚୂର୍ଣ୍ଣ କଲା । ଗଙ୍ଗା ଗର୍ଭରୁ ଜାତ ମୋର ପୁଅ ଗାଙ୍ଗେୟ ଦେବବ୍ରତ ବଡ଼ ପୁଅ ରାଜ୍ୟର ଅଧିକାରୀ ହେବା ପାଇଁ ସର୍ବଥା ଯୋଗ୍ୟ । ସେ ସର୍ବଗୁଣ ସମ୍ପନ୍ନ । ମୁଁ ତାଙ୍କୁ ଯୁବରାଜ ପଦରେ ମଧ୍ୟ ଅଭିଷିକ୍ତ କରିସାରିଛି । ଯଦି ମୁଁ ତାଙ୍କୁ ଛାଡ଼ି ତା'ର ବିମାତା ପୁତ୍ରକୁ ରାଜ୍ୟ ଦେବି, ତାହାହେଲେ ପ୍ରଜାଗଣ ମୋତେ ଧିକ୍କାର କରିବେ ଓ ମୁଁ ଜଣେ କାମୁକ, ସ୍ତ୍ରୈଣ ବୋଲି କହି ମୋତେ ନିନ୍ଦା କରିବେ । ଯଦି ମୁଁ ପ୍ରତିଜ୍ଞା କରି ତାହା ପାଳନ ନ କରିବି ତେବେ ମୋତେ ନର୍କ ଯନ୍ତ୍ରଣା ଭୋଗ କରିବାକୁ ପଡ଼ିବ । ଏ ଲୋକରେ ଓ ପରଲୋକରେ ମୋର ଅପକୀର୍ତ୍ତି ବାଢ଼ିଯିବ । ତେଣୁ ଏ ଯୁବତୀଙ୍କୁ

ବିବାହ କରିବାର ଇଚ୍ଛା ମୋତେ ତ୍ୟାଗ କରିବାକୁ ପଡ଼ିବ । ତାହାହିଁ ମୋ' ପକ୍ଷରେ ମଙ୍ଗଳକର ହେବ । ଏହିପରି ଭାବି ସେ ଆଉ କିଛି କହିଲେ ନାହିଁ । ସେହି କନ୍ୟାର ସୌନ୍ଦର୍ଯ୍ୟ ଓ ଦିବ୍ୟରୂପ ଅନବଦ୍ୟ ଲାବଣ୍ୟ କଥା ଚିନ୍ତା କରି କରି ସେ ନିଜ ରାଜଧାନୀକୁ ଫେରି ଆସିଲେ ।

ରାଜଭବନକୁ ଫେରି ସତ୍ୟବତୀର ରୂପକୁ ସେ ଯେତେ ଭୁଲିଯିବାକୁ ଚେଷ୍ଟା କଲେ ସେତେ ବେଶୀ ତା'ର ସ୍ମୃତି ରାଜାଙ୍କୁ ଦୁଃଖାଭିଭୂତ କରିବାକୁ ଲାଗିଲା । ଯୋଜନ ପର୍ଯ୍ୟନ୍ତ ସେ କନ୍ୟାର ଅଙ୍ଗଗନ୍ଧ ତାଙ୍କ ନାକ ପାଖରୁ ଦୂର ହେଉ ନ ଥିଲା ।

ଏହା ଶୁଣି ଶୌନକ ପଚାରିଲେ—ମହାଭାଗ ! ନିଷାଦ କନ୍ୟା ସତ୍ୟବତୀ ଅଙ୍ଗରୁ ଏପରି ଦିବ୍ୟ କମଳ ଗନ୍ଧ କିପରି ବାହାରୁଥିଲା ? ଏହାର ଯଦି ବିଶେଷ କିଛି କାରଣ ଅଛି ତାହାହେଲେ ଆମକୁ ସେକଥା କୁହନ୍ତୁ ।

ମହର୍ଷି ସୂତ କହିଲେ—ମହାଶୟ ! ଜଣେ ରାଜର୍ଷି ନିଜର ଋତୁସ୍ନାତା ପତ୍ନୀଙ୍କୁ ଛାଡ଼ି ପିତୃମାନଙ୍କ ଉଦ୍ଦେଶ୍ୟରେ ମୃଗୟା କରିବା ପାଇଁ ବଣକୁ ଗଲେ । ବଣରେ ନିରନ୍ତର ପତ୍ନୀ କଥା ଭାବି ଭାବି ତାଙ୍କର ଶୁକ୍ର ସ୍ଖଳିତ ହୋଇଗଲା । ତାକୁ ପତ୍ର ପୁଡ଼ାଆରେ ରଖି ଗୋଟିଏ ଚଢ଼େଇ ଦ୍ୱାରା ସେ ତାଙ୍କ ପତ୍ନୀଙ୍କ ପାଖକୁ ପଠାଇଦେଲେ । ରାଜର୍ଷିଙ୍କ ଅମୋଘ ବୀର୍ଯ୍ୟକୁ ନେଇ ପକ୍ଷୀଟି ଖୁବ୍ ବେଗରେ ଉଡ଼ି ଚାଲି ଯାଉଥିଲା । ଅନ୍ୟ ଗୋଟିଏ ପକ୍ଷୀ ତାକୁ ଖାଦ୍ୟ ଭାବି ସେହି ପକ୍ଷୀକୁ ଆକ୍ରମଣ କଲା । ଦୁହେଁ ଲଢ଼େଇ କରି କରି ଯମୁନା ନଦୀରେ ପଡ଼ିଗଲେ । ସେହି ବୀର୍ଯ୍ୟକୁ ଏକ ବଡ଼ ମାଛ ଗିଳିଦେଲା । ସେହି ମାଛ ଗର୍ଭବତୀ ହେଲା । ଦୈବଯୋଗକୁ ଦିନେ ସେ ନିଷାଦର ଜାଲରେ ଧରାପଡ଼ିଲା । ନିଷାଦ ତାକୁ ଧରି ତା'ର ପେଟ ଚିରିବାରୁ ଏହି କନ୍ୟା ମିଳିଲା । ସେ ଖୁବ୍ ସୁନ୍ଦର ଓ ରୂପବତୀ ଥିଲା । କିନ୍ତୁ ତା' ଦେହରୁ ତୀବ୍ର ମତ୍ସ୍ୟଗନ୍ଧ ବାହାରୁଥିଲା । ସେଥିପାଇଁ ଲୋକେ ତାକୁ ମତ୍ସ୍ୟଗନ୍ଧା ବୋଲି କହୁଥିଲେ । ତା' ଶରୀରର ଉତ୍କଟ ଆମିଷ ଗନ୍ଧ ହେତୁ ତା' ପାଖରେ କେହି ରହିବାକୁ ଇଚ୍ଛା କରୁ ନ ଥିଲେ । ସେ ପିତାଙ୍କ ଆଜ୍ଞାରେ ଯାତ୍ରୀମାନଙ୍କୁ ନଦୀ ପାର ଉତାର କରୁଥିଲା । ଦିନେ ଭଗବାନ୍ ପରାଶର ସେହି ନୌକାରେ ନଦୀ ପାର ହେଉଥିଲେ । ସେ ସେହି କନ୍ୟା ଗର୍ଭରୁ ମହାଯୋଗୀ ଭଗବାନ ବ୍ୟାସଦେବଙ୍କୁ ଉତ୍ପନ୍ନ କରାଇଲେ ଓ ତାକୁ ଦୁଇଟି ବର ଦେଲେ । ଏକରେ ବ୍ୟାସଙ୍କୁ ଜନ୍ମ ଦେଇ ମଧ୍ୟ ତା'ର କନ୍ୟାତ୍ୱ ନଷ୍ଟ ହେବ ନାହିଁ । ଦ୍ୱିତୀୟରେ ତା' ଦେହରୁ ବାହାରୁଥିବା ମତ୍ସ୍ୟଗନ୍ଧ ପରିବର୍ତ୍ତେ କମଳ ଗନ୍ଧ ବାହାରିବ । ସେହି ଗନ୍ଧ ଏକ ଯୋଜନ ଆସ୍ଥତନକୁ ପ୍ରସାରିତ ହେବ । ସେହି ଦିନୁ ପରାଶର ମୁନିଙ୍କ ପ୍ରଭାବରୁ ତା' ଦେହରୁ କମଳ ଗନ୍ଧ ବାହାରିଲା ଓ ତାହା ଏକ ଯୋଜନ ଯାଏ ପ୍ରସାରିତ ହେଲା । ସେଥିପାଇଁ ତା'ର ନାମ ହେଲା ଯୋଜନଗନ୍ଧା ।

ଶୌନକ ପଚାରିଲେ—ଆଚ୍ଛା, ତା'ପରେ କଣ ହେଲା ? ମହାରାଜ ଶାନ୍ତନୁ ତାକୁ ବିବାହ କଲେ ନା ନାହିଁ ?

ମହର୍ଷି ସୂତ କହିଲେ—ହଁ, ସେହି କଥା ତ ମୁଁ କହୁଛୁ । ଯେଉଁ ଦିନଠାରୁ ସତ୍ୟବତୀଙ୍କୁ ଦେଖି ମହାରାଜ ନଗରକୁ ଫେରିଲେ ସେହି ଦିନଠାରୁ ସେ ଅତ୍ୟନ୍ତ ଉଦାସ ରହିବାକୁ ଲାଗିଲେ । ସେ କାହାରି ସହିତ କଥାବାର୍ତ୍ତା କଲେ ନାହିଁ କି ହସିଲେ ନାହିଁ । ଅଶ୍ୱ ଆରୋହଣ କରି ମୃଗୟା କରିବାକୁ ମଧ୍ୟ ଗଲେ ନାହିଁ କି କାହାରି ସହିତ ବିଶେଷ କଥା ମଧ୍ୟ ହେଲେ ନାହିଁ । ସେ ଅହୋରାତ୍ର ଏକାନ୍ତରେ ବସିରହି ଅତି ଉଦାସଭାବେ ଘୋର ଚିନ୍ତାରେ ନିମଗ୍ନ ହେଲେ ।

ଦିନେ କୁମାର ଦେବବ୍ରତ ନିଜର ପୂଜ୍ୟ ପିତାଙ୍କୁ ଉଦାସ ଦେଖି ବିମୀତ ହୋଇ ପଚାରିଲେ—ପିତୃଦେବ ! ଆପଣ ଆଜିକାଲି ସବୁବେଳେ ଉଦାସ ରହିବା ମୁଁ ଲକ୍ଷ୍ୟ କରୁଛି । ଆଗରୁ ଆପଣ ଯେତେ ସ୍ନେହ ଓ ଉଲ୍ଲାସର ସହିତ ମୋ' ସାଙ୍ଗରେ କଥାବାର୍ତ୍ତା କରୁଥିଲେ ଆଜିକାଲି ସେପରି କଥାବାର୍ତ୍ତା କରୁ ନାହାନ୍ତି । ମନ୍ତ୍ରିମାନଙ୍କୁ ରାଜକାର୍ଯ୍ୟ ସମ୍ବନ୍ଧରେ ମଧ୍ୟ କିଛି ପଚାରୁ ନାହାନ୍ତି । ଆପଣ ତ ଅତ୍ୟନ୍ତ ମୃଗୟା ପ୍ରିୟ । ପ୍ରତିଦିନ ଅଶ୍ୱ ଆରୋହଣ କରି ମୃଗୟା କରିବାକୁ ଯାଉଥିଲେ । ଏବେ କେତେଦିନ ହେଲା ଆପଣ ରାଜ-ଭବନରୁ ବାହାରି ନାହାନ୍ତି । କେଉଁ କାରଣରୁ ଆପଣ ଚିନ୍ତିତ ହୋଇ ପଡ଼ିଛନ୍ତି ତାହା ମୋତେ କହନ୍ତୁ ।

ଏହା ଶୁଣି ଶାନ୍ତନୁ କହିଲେ—କିଛି ନୁହେଁ ପୁଅ । ଏଇ କେତେଦିନ ହେଲା ମନଟା ଖାଲି ଉଦାସ ହୋଇ ଯାଇଛି । ଅତ୍ୟନ୍ତ ସ୍ନେହପୂର୍ଣ୍ଣ ସ୍ୱରରେ ଶାନ୍ତନୁ କହିଲେ—ପୁଅ ! କଣ କହିବି ? ଆଜିକାଲି ମୋର ମନ ସ୍ଥିର ରହୁନି । ଯାହାର ଯୋଗ୍ୟ ପୁଅ ଥିବ ତାର ସ୍ତ୍ରୀ ନ ଥିଲେ ବି ସେ ଆଉ ବିବାହ କରିବା ଉଚିତ ନୁହେଁ । ତୋ' ପରି ସୁଯୋଗ୍ୟ ସୁପୁତ୍ର ଥାଉଁ ଥାଉଁ ଆଉ ଥରେ ବିବାହ କରିବା କଥା ମୋର ଭାବିବା ଅନୁଚିତ । କିନ୍ତୁ ବେଳେ ବେଳେ ବିବାହ କରିବାକୁ ମୋର ଇଚ୍ଛା ହେଉଛି । ଶାସ୍ତ୍ରକାରମାନେ ଗୋଟିଏ ପୁଅ ଥିବା ବ୍ୟକ୍ତିକୁ ଅପୁତ୍ରିକ ରୂପେ ଗଣନା କରିଛନ୍ତି । ପୁଅ ଜନ୍ମ ହେବା ସବୁଠାରୁ ବଡ଼ ଧର୍ମ । ଯେ ପୁତ୍ରବାନ୍ ହୋଇନି, ନିଜ ବଂଶଧାରାକୁ ଅବିଚ୍ଛିନ୍ନ ରଖିବା ପାଇଁ ଆତ୍ମଜ ସୃଷ୍ଟି କରି ନାହିଁ, ତା'ର ଜପ, ତପ, ଦାନ, ଧର୍ମ, ଯଜ୍ଞାନୁଷ୍ଠାନ ଓ ସମସ୍ତ ଶୁଭକର୍ମ ବୃଥା ହୋଇଥାଏ । ସେଥିପାଇଁ ତୋ'ପରି ପୁଅ ଥାଉ ଥାଉ ମୁଁ ଆଉ ଥରେ ବିବାହ କରିବା ଠିକ୍ ହେବ କି ନାହିଁ ସେହି ଚିନ୍ତାରେ ପଡ଼ିଛି ।

ନିଜ ପିତାଙ୍କଠାରୁ ଏପରି କଥା ଶୁଣି ପରମ ବୁଦ୍ଧିମାନ୍ ରାଜକୁମାର ଦେବବ୍ରତ, ପିତା କାହାକୁ ବିବାହ କରିବାକୁ ଇଚ୍ଛା କରୁଛନ୍ତି ବୋଲି ଜାଣିପାରିଲେ । କିଏ ସେହି ଭାଗ୍ୟବତୀ କୁମାରୀ, ଯେ ମୋର ମା' ହେବାର ମହତ୍ତ୍ୱପୂର୍ଣ୍ଣ ପଦ ପାଇବ, ଏହି ଚିନ୍ତା ସେ କରିବାକୁ ଲାଗିଲେ । ସେ ବୃଦ୍ଧ ମନ୍ତ୍ରିମାନଙ୍କୁ, ରାଜାଙ୍କର ଘନିଷ୍ଠ ସୁହୃଦ୍ମାନଙ୍କୁ ଏ ବିଷୟରେ ପଚାରିଲେ । ମହାରାଜାଙ୍କୁ ସେ ଏକଥା କିପରି ବା ପଚାରିଥାନ୍ତେ ? ବହୁ ପଚରା ଉଚରା ପରେ ନିଷାଦରାଜଙ୍କ କନ୍ୟା ସତ୍ୟବତୀଙ୍କ ପ୍ରତି ମହାରାଜ ଅନୁରକ୍ତ ବୋଲି

କଣାପଡ଼ିଲା । ଏହା ଜାଣିବା ପରେ ରାଜାଙ୍କରେ ପାଞ୍ଚ ଛଅ ଜଣ ବ୍ରାହ୍ମଣଙ୍କୁ ନେଇ ପାଞ୍ଚ ଛଅ ଜଣ ମାଣ୍ଡଳିକ ରାଜାଙ୍କ ସେବକମାନଙ୍କ ଗହଣରେ ନିଷାଦରାଜଙ୍କ ପାଖକୁ ଗଲେ । ନିଷାଦରାଜ ଆନନ୍ଦରେ ସେମାନଙ୍କୁ ସ୍ୱାଗତ କଲେ ।

ରାଜକୁମାର ଦେବବ୍ରତ କହିଲେ—ମହାରାଜ ! ଆପଣ ନିଜ କନ୍ୟାଙ୍କୁ ମୋର ପିତାଙ୍କ ସହିତ ବିବାହ ଦିଅନ୍ତୁ ।

ଏହା ଶୁଣି ବୃଦ୍ଧ ନିଷାଦରାଜ ହାତଯୋଡ଼ି କହିଲେ—କୁମାର ! ଆପଣଙ୍କର କଲ୍ୟାଣ ହେଉ । ଆପଣଙ୍କ ପରି ଲୋକ ମୋ' ପରି ଦୀନ, ହୀନ, ଅକିଞ୍ଚନ, ନୀଚର ଘରେ ପଦାର୍ପଣ କଲେ ଏହା ମୋର ପରମ ସୌଭାଗ୍ୟ ବୋଲି ଭାବୁଛି । ରାଜନ୍ ! ମୋ' ଝିଅର ରାଜରାଣୀ ହେବାଠାରୁ ଆଉ ବଡ଼ ଭାଗ୍ୟ କଣ ଥାଇପାରେ ? ସମଗ୍ର ତ୍ରିଲୋକରେ ରାଜର୍ଷି ଶାନ୍ତନୁଙ୍କ ପରି ଯୋଗ୍ୟ ବର ଓ ଭରତ ବଂଶ ଉଜ୍ଜ୍ୱଳ କୂଳ ମୋତେ ଆଉ କେଉଁଠି ମିଳିବ ? ମହାରାଜ ମୋର ଝିଅକୁ ବିବାହ କରିବା ପାଇଁ ଚାହୁଁଛନ୍ତି, ଏହା ମୋ ପକ୍ଷରେ ପରମ ଗୌରବର କଥା । ଏ ଝିଅ ରାଜର୍ଷି ଉପରିଚର ବସୁଙ୍କ ଔରସରେ ମତ୍ସ୍ୟଗର୍ଭରୁ ଜାତ ହୋଇଛି । ମୁଁ କେବଳ ତାକୁ ଲାଳନ ପାଳନ କରିଛି । କିନ୍ତୁ ମୁଁ ତାକୁ ନିଜ ଝିଅଠାରୁ ଅଧିକ ଭଲପାଏ । ରାଜର୍ଷିଙ୍କ ଝିଅ ପାଇଁ ରାଜର୍ଷି ପତି ମିଳିବା ବଡ଼ ଭାଗ୍ୟର କଥା । ମୋ' ଝିଅର ଭଲ ପାଇଁ ମୁଁ ଆପଣଙ୍କଠାରୁ ଏକମାତ୍ର ପ୍ରତିଶ୍ରୁତି ଆଶା କରୁଛି ।

କୁମାର ଦେବବ୍ରତ କହିଲେ—ତୁମେ ଯାହା ଇଚ୍ଛା କରୁଛ ତାହା ବିନା ଦ୍ୱିଧାରେ ପ୍ରକାଶ କର ।

ନିଷାଦରାଜ କହିଲେ—ମୁଁ କେବଳ ଏତିକି ଚାହୁଁଛି ଯେ, ମୋ' ଝିଅ ଗର୍ଭରୁ ଯେଉଁ ପୁତ୍ର ଜାତ ହେବ, ସେ କୁରୁକୁଳର ସିଂହାସନ ଆରୋହଣ କରିବ ।

ଏହା ଶୁଣି କୁମାର ଦେବବ୍ରତ ଅତୀବ ପ୍ରସନ୍ନତା ପ୍ରକାଶ କରି କହିଲେ—ନିଷାଦରାଜ ! ଏଇଟା କଣ ବଡ଼ କଥା । ରାଜପୁତ୍ର ହୋଇଥିବାରୁ ତୁମର ନାତି ନିଶ୍ଚୟ ରାଜା ହେବ ।

ନିଷାଦପତି କହିଲେ—ହଁ କୁମାର ! ଆପଣଙ୍କ କଥା ସତ । କିନ୍ତୁ ନ୍ୟାୟ ଅନୁସାରେ ରାଜ୍ୟର ଅଧିକାରୀ ଆପଣ । ଆପଣଙ୍କୁ ଛାଡ଼ି ମୋର ନାତି ରାଜା କିପରି ହେବ ?

ସେତେବେଳେ ପିତୃ ସ୍ନେହ ହେତୁ କୁମାର ଦେବବ୍ରତଙ୍କ ଆଖିରେ ଲୁହ ଆସିଗଲା । ସେ ଅତ୍ୟନ୍ତ ଗଦ୍‌ଗଦ କଣ୍ଠରେ ସମସ୍ତେ ଶୁଣିଲା ପରି ଧୀର ଗମ୍ଭୀର ସ୍ୱରରେ କହିଲେ—ନିଷାଦରାଜ ! ମୁଁ ସମସ୍ତଙ୍କ ଆଗରେ ପ୍ରତିଜ୍ଞା କରି କହୁଛି, ତୁମ ଝିଅର ପୁଅ ହେବାମାତ୍ରେ ମୁଁ ସବୁଦିନ ପାଇଁ ମୋର ରାଜ୍ୟାଧିକାର ତ୍ୟାଗ କରିବି । ଭୂମଣ୍ଡଳର ରାଜ୍ୟର

ଗୁର କଥା, ମୋର ପିତାଙ୍କୁ ଖୁସି କରାଇବା ପାଇଁ ମୁଁ ଜଳୁଥିବା ଅଗ୍ନିକୁ ଡେଇଁ ପାରିବି, ସମୁଦ୍ର ଗର୍ଭକୁ ଚାଲିଯିବି, ହଳାହଳ ବିଷ ପାନ କରିପାରିବି ଓ ଜୀବନ ଥାଉଁ ଥାଉଁ ନିଜ ଶରୀରରୁ ଚମଡ଼ା କାଢ଼ି ଦେଇ ପାରିବି । ମୋ' ପିତାଙ୍କ ପ୍ରସନ୍ନତା ପାଇଁ ସବୁକିଛି କରି ଦେଇ ପାରେ । ଆପଣ ଆଦୌ ଚିନ୍ତା କରନ୍ତୁ ନାହିଁ । ଭଗବତୀ ସତ୍ୟବତୀଙ୍କ ଗର୍ଭରୁ ଯେଉଁ ପୁତ୍ର ଜାତ ହେବ, ସେ ଆମ ସମସ୍ତଙ୍କର ରାଜା ହେବ ।

ଏହା ଶୁଣି ନିଷାଦପତି ଖୁବ୍ ଆନନ୍ଦିତ ହେଲେ । ତଥାପି ଦେବବ୍ରତଙ୍କ ପରି ଶୁଦ୍ଧ ଯୁବଶ୍ରେଷ୍ଠଙ୍କୁ ନିଆଁରେ ପକାଇ ତାଙ୍କର ବିଶ୍ଵସ୍ତତା ଆହୁରି ପ୍ରକଟ କରିବା ପାଇଁ ସେ କହିଲେ — ରାଜକୁମାର ! ଏପରି ବାକ୍ୟ ଆପଣହିଁ କହିପାରନ୍ତି । ଆପଣଙ୍କ ପରି ଧୀର, ଗମ୍ଭୀର, ବୀର ସତ୍ୟବ୍ରତଙ୍କ, ସଦାଚାରୀ ପୁତ୍ର ହିଁ ପିତାଙ୍କ ନିମିତ୍ତ ଏପରି ମହାନ୍ ତ୍ୟାଗ କରିପାରେ । କିନ୍ତୁ ମୋ ମନରେ ଏକ ସଂଶୟ ଜାତ ହେଉଛି ।

ଆଶ୍ଚର୍ଯ୍ୟାନ୍ୱିତ ହୋଇ କୁମାର ପଚାରିଲେ—କି ସଂଶୟ ନିଷାଦପତି ?

ବିନମ୍ର ସ୍ୱରରେ ନିଷାଦରାଜ କହିଲେ—କୁମାର ! ଆପଣ ଭୁଲ୍ ବୁଝିବେ ନାହିଁ । ମୋ'ର ପ୍ରିୟ ପ୍ରତି ଥିବା ସ୍ନେହ ମୋତେ ଅନ୍ଧ କରିଦେଇଛି । ମୁଁ ସ୍ୱପ୍ନରେ ମଧ୍ୟ ଏହା ଭାବିପାରିବି ନାହିଁ ଯେ, ଆପଣ ଯେଉଁ ପ୍ରତିଜ୍ଞା କରିବେ ତାହା ପାଳନ କରିବେ ନାହିଁ । ତେଣୁ ଆପଣ ପିନା ରାଜସିଂହାସନରେ ବସିବେ ନାହିଁ, କିନ୍ତୁ ନ୍ୟାୟତଃ ରାଜ୍ୟ ଉପରେ ଆପଣଙ୍କର ହିଁ ଅଧିକାର ରହିଛି । ମୋ'ର ନାତିକୁ ଆପଣ ସିଂହାସନରେ ବସାଇଦେଲେ ମଧ୍ୟ ଆପଣଙ୍କ ପୁଅ ଯୁଦ୍ଧ କରି ତାକୁ ରାଜଗାଦିରୁ ବିତାଡ଼ିତ କରିଦେଇ ପାରିବ । ଆପଣଙ୍କ ପୁଅକୁ ତ ଦେବତା ମଧ୍ୟ ପରାଜିତ କରିପାରିବେ ନାହିଁ । ଏହି କଥା ମୋ' ମନରେ ଘାଣ୍ଟି ହେଉଛି ।

ନିଷାଦରାଜଙ୍କ ମୁଖରୁ ଏପରି କାର୍ପଣ୍ୟସୂଚକ ଦୂରଦୃଷ୍ଟିପୂର୍ଣ୍ଣ କଥା ଶୁଣି କୁମାର ଦେବବ୍ରତ ଅତୀବ ଗମ୍ଭୀର ହୋଇଗଲେ ଓ ମେଘଗମ୍ଭୀର ବାଣୀରେ କହିଲେ—ହେ ରାଜନ୍ୟବର୍ଗ ! ହେ ବ୍ରାହ୍ମଣଗଣ ! ଉପସ୍ଥିତ ସମସ୍ତେ ମୋର ପ୍ରତିଜ୍ଞା ଶୁଣନ୍ତୁ । ପିତାଙ୍କ ପ୍ରୀତି ସମ୍ପାଦନ ପାଇଁ ମୁଁ ଆଜ ଧ୍ରୁବକୁ ସାକ୍ଷୀରଖି ଜୀବନ ସାରା ଅବିବାହିତ ରହିବି ବୋଲି ପ୍ରତିଜ୍ଞା କରୁଛି । ଅଖଣ୍ଡ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରି ମୁଁ ଜୀବନ ଅତିବାହିତ କରିବି । ଏହାଦ୍ୱାରା ମୋର ସନ୍ତାନ ସମ୍ଭାବନା ରହିବ ନାହିଁ । ଏଥର ମୁଁ ଭାବୁଛି ମୋର ପିତାଙ୍କୁ ତାଙ୍କ କନ୍ୟା ଦାନ କରିବାରେ ନିଷାଦରାଜାଙ୍କର କିଛି ଆପତ୍ତି ରହିବ ନାହିଁ ।

ମହର୍ଷି ସୂତ କହିଲେ—ମୁନିଗଣ ! ରାଜକୁମାର ଦେବବ୍ରତ ଏପରି ପ୍ରତିଜ୍ଞା କରୁଥିବା ସମୟରେ ସମସ୍ତେ ଆଶ୍ଚର୍ଯ୍ୟ ଚକିତ ହୋଇ ତାଙ୍କର ମୁହଁକୁ ଚାହିଁଥାନ୍ତି । ଏହି ସମୟରେ ଦେବଗଣ ଆକାଶରୁ ପୁଷ୍ପବୃଷ୍ଟି କଲେ । ଗନ୍ଧର୍ବଗଣ ବସୁ ଅବତାର ଦେବବ୍ରତଙ୍କୁ ପ୍ରଶଂସା କରି ଗୀତ ଗାଇଲେ । ଗଙ୍ଗାଙ୍କ ଜଳ ପ୍ରବାହରୁ ଧନ୍ୟ ଧନ୍ୟ ଧ୍ୱନି ଭାସିଆସିଲା ।

ମୁନିଗଣ ! ଏପରି କାର୍ଯ୍ୟକୁ ଧର୍ମ ପୂର୍ବକ ତ୍ୟାଗ କହନ୍ତି । ନୋହିଲେ ସେହି

ନିଷାଦ ତ' ରାଜ୍ୟର ଏକ ସାଧାରଣ ନାଗରିକ ମାତ୍ର ଥିଲା । ତାଙ୍କଠାରୁ ବଳପୂର୍ବକ କନ୍ୟା ହରଣ କରି ନିଆଯାଇପାରିଥାନ୍ତା । କିନ୍ତୁ ସେପରି କରିଥିଲେ ତାହା ଅଧର୍ମ ଓ ପ୍ରଜାଙ୍କ ପ୍ରତି ଅନ୍ୟାୟ ଆଚରଣ ହୋଇଥାନ୍ତା ! ଧର୍ମାତ୍ମା ଶାନ୍ତନୁ, ତାଙ୍କର ଯଶସ୍ୱୀ କୁମାର ଦେବବ୍ରତ ଏପରି ନୀତି, ସଦାଚାର ଓ ଧର୍ମବିରୁଦ୍ଧ କାର୍ଯ୍ୟ କିପରି କରିଥାନ୍ତେ ? ଦେବବ୍ରତଙ୍କ ଭୀଷ୍ମପ୍ରତିଜ୍ଞା ଶୁଣି ନିଷାଦପତିଙ୍କ ଦେହ ଉଲ୍ଲାସରେ ରୋମାଞ୍ଚିତ ହୋଇଗଲା । ଅତ୍ୟନ୍ତ ପ୍ରସନ୍ନତା ପ୍ରକଟ କରି କୁମାରଙ୍କୁ ବାରମ୍ବାର ପ୍ରଶଂସା କରି ସେ କହିଲେ—ରାଜକୁମାର ! ଆପଣଙ୍କ ବ୍ୟତୀତ ଏପରି ଭୀଷ୍ମପ୍ରତିଜ୍ଞା ଆଉ କେହି କରିପାରିବେ ନାହିଁ । ଆପଣଙ୍କ ପିତାଙ୍କୁ ମୁଁ ମୋ'ର ଝିଅକୁ ଆନନ୍ଦରେ ଦାନ କରୁଛି । ଏହା କହି ସେ ସତ୍ୟବତୀଙ୍କୁ ବସ୍ତ୍ରାଭୂଷଣରେ ଅଳଙ୍କୃତ କରି ସେଠାକୁ ଆଣିଲେ ।

ଭୀଷ୍ମ ପ୍ରତିଜ୍ଞ କୁମାର ଦେବବ୍ରତ ମୁଣ୍ଡ ନୁଆଁଇ ସତ୍ୟବତୀଙ୍କୁ ପ୍ରଣାମ କଲେ ଓ ଅତ୍ୟନ୍ତ ଆଦରର ସହିତ କହିଲେ—ମା ! ଆପଣ ରଥ ଉପରେ ବିଜୟ କରନ୍ତୁ ।

ସତ୍ୟବତୀ ପିତାଙ୍କଠାରୁ ବିଦାୟ ନେଇ ରଥରେ ବସିଲେ । ସମଗ୍ର ପୃଥିବୀରେ ଭୀଷ୍ମଙ୍କର ଏହି ତ୍ୟାଗକଥା ପ୍ରଚାରିତ ହୋଇଗଲା । ପିତା ଯେତେବେଳେ ପୁତ୍ରର ପ୍ରତିଜ୍ଞା କଥା ଶୁଣିଲେ ସେତେବେଳେ ସେ ଲଜ୍ଜିତ ହୋଇପଡ଼ିଲେ । ତାଙ୍କ ହୃଦୟ ତରଳିଗଲା । କିନ୍ତୁ ତାଙ୍କର ଅନ୍ତରାତ୍ମା ସନ୍ତୁଷ୍ଟ ହୋଇଥିଲା । ପୁଅର ସେହି ଭୀଷ୍ମ ପ୍ରତିଜ୍ଞାରେ ତାଙ୍କର ଗଭୀର ଦୁଃଖ ହେଲା । କିନ୍ତୁ ଆଉ କଣ କରିଯାଇ ପାରିବ ? ସୂର୍ଯ୍ୟ ପଶ୍ଚିମ ଦିଗରେ ଉଦୟ ହେଲେ, ସୁମେରୁ ସ୍ଥାନଚ୍ୟୁତ ହେଲେ, ଗଙ୍ଗାଙ୍କ ପ୍ରବାହ ସମୁଦ୍ରଆଡ଼ୁ ହିମାଳୟ ଆଡ଼କୁ ପ୍ରବାହିତ ହେଲେ, ଶେଷ ନାଗ ପୃଥିବୀକୁ ଧାରଣ କରିବା କାର୍ଯ୍ୟ ତ୍ୟାଗ କଲେ ବି ଦେବବ୍ରତ ନିଜର ପ୍ରତିଜ୍ଞା ଭାଙ୍ଗିବେ ନାହିଁ । ସେଥିପାଇଁ ନିଜର ପ୍ରିୟ ପୁତ୍ରକୁ ପ୍ରତିଜ୍ଞା ତ୍ୟାଗ କରିବାକୁ ସେ କହିଲେ ନାହିଁ । ଅଶ୍ରୁଳ ନୟନରେ ସେ ପୁତ୍ରର ମସ୍ତକ ଉପରେ ହାତ ରଖି କହିଲେ—ପୁତ୍ର ! ତୁ ଯୁଦ୍ଧରେ ସର୍ବଦା ବିଜୟୀ ହେବୁ । ଯୁଦ୍ଧରେ ଦେବତା ମଧ୍ୟ ତୋର ସମ୍ମୁଖୀନ ହୋଇ ପାରିବେ ନାହିଁ । ମୃତ୍ୟୁ ତୋର ଇଚ୍ଛାଧୀନ ହେବ ।

ମହାରାଜ ଶାନ୍ତନୁ ଭୀଷ୍ମଙ୍କୁ ଏହିପରି ବରଦାନ ଦେଇ ସତ୍ୟବତୀଙ୍କ ସହିତ ବିଧିପୂର୍ବକ ବିବାହ କଲେ । ବୃଦ୍ଧାବସ୍ଥାରେ ଏପରି ସୁନ୍ଦରୀ ଦେବକନ୍ୟା ତୁଲ୍ୟ ସୁକୁମାରୀ ପତ୍ନୀ ପାଇ ମହାରାଜାଙ୍କ ପ୍ରସନ୍ନତାର ସୀମା ରହିଲା ନାହିଁ । ଭୀଷ୍ମ ତ ରାଜକାର୍ଯ୍ୟ ପରିଚାଳନା କରୁଥିଲେ । ତେଣୁ ମହାରାଜ ସତ୍ୟବତୀଙ୍କ ସାଙ୍ଗରେ ଅନ୍ତଃପୁରରେ ଆନନ୍ଦ ବିହାର କରି ସମୟ ଅତିବାହିତ କରିବାକୁ ଲାଗିଲେ । ସତ୍ୟବତୀଙ୍କ ଗର୍ଭରୁ ଦୁଇ ପୁଅ ଜନ୍ମ ହେଲେ । ବଡ଼ର ନାମ ଚିତ୍ରାଙ୍ଗଦ ଓ ସାନର ନାମ ବିଚିତ୍ରବୀର୍ଯ୍ୟ । ଏ ଦୁହେଁ ଛୋଟ ଥିବାବେଳେ ହିଁ ଶାନ୍ତନୁ ଅସାର ସଂସାର ଛାଡ଼ି ଚାଲିଗଲେ । ବିଧବା ସତ୍ୟବତୀ ଓ ତାଙ୍କର ଛୋଟ ଛୋଟ ପୁଅ ଦୁହେଁ ରହିଗଲେ । ଚିତ୍ରାଙ୍ଗଦ କିଶୋର ଅବସ୍ଥାରେ ଉପନୀତ ହୋଇଥିଲେ ବି

ବିଚିତ୍ରବୀର୍ଯ୍ୟ କୋଳଛୁଆ ଥିଲେ । ରାଜା ନ ଥିଲେ ବି ରାଜସିଂହାସନ ଖାଲି ରହିବ ନାହିଁ । ତେଣୁ ଭୀଷ୍ମ ସତ୍ୟବତୀଙ୍କ ଅନୁମତି ନେଇ ଚିତ୍ରାଙ୍ଗଦକୁ ରାଜା କରିଦେଲେ ।

ଯାହାହେଲେ ବି, ଭୀଷ୍ମ ଆଉ ଆଉ ମହାରାଜ ଶାନ୍ତନୁ ନିଷାଦ କନ୍ୟାକୁ ବିବାହ କରିବା ତାଙ୍କ ଅନୁରୂପ କାର୍ଯ୍ୟ ହେଲନାହିଁ । ସେଥିପାଇଁ ତାଙ୍କ ବୃଦ୍ଧାବସ୍ଥାରେ ଯେଉଁ ସନ୍ତାନ ହେଲେ ସେମାନେ ତାଙ୍କ ଅନୁରୂପ ହୋଇ ନ ଥିଲେ । ଭୀଷ୍ମ ତ ପ୍ରତିଜ୍ଞାବଦ୍ଧ ଥିଲେ; ତେଣୁ ନିଜେ ସିଂହାସନରେ ବସିପାରିବେ ନାହିଁ । ଚିତ୍ରାଙ୍ଗଦ ନାମକୁ ମାତ୍ର ରାଜା ହୋଇଥିଲେ । ସମସ୍ତ ରାଜକାର୍ଯ୍ୟ ଭୀଷ୍ମହିଁ ଦେଖାଶୁଣା କରୁଥିଲେ । ଆର୍ଯ୍ୟ ରାଜା ହୋଇଥିବାରୁ ଚିତ୍ରାଙ୍ଗଦ ନିଜକୁ ବଡ଼ ବଳବାନ ଓ ବୀର ବୋଲି ଭାବୁଥିଲେ । ଗନ୍ଧର୍ବରାଜ ଚିତ୍ରାଙ୍ଗଦ ଥରେ ତାଙ୍କ ଉପରେ ଆକ୍ରମଣ କଲେ । କୁରୁକ୍ଷେତ୍ରରେ ଦୁଇ ପକ୍ଷଙ୍କର ଯୁଦ୍ଧ ହେଲା । ସେହି ଯୁଦ୍ଧରେ ଭୀଷ୍ମ ନ ଥିଲେ । ଗନ୍ଧର୍ବମାନେ ଚିତ୍ରାଙ୍ଗଦଙ୍କୁ ମାରିଦେଲେ । ଫଳରେ କୁରୁକୁଳର ସିଂହାସନ ପୁଣି ଖାଲି ପଡ଼ିଲା ।

ମହର୍ଷି ସୂତ କହିଲେ—ମୁନିଗଣ ! ଚିତ୍ରାଙ୍ଗଦଙ୍କ ମୃତ୍ୟୁ ପରେ ଭୀଷ୍ମ ଅଳ୍ପ ବୟସ୍କ ବିଚିତ୍ରବୀର୍ଯ୍ୟଙ୍କୁ ରାଜଗାଦିରେ ବସାଇଲେ ଓ ନିଜେ ରାଜକାର୍ଯ୍ୟ ଦେଖାଶୁଣା କରିବାକୁ ଲାଗିଲେ । ବିଚିତ୍ରବୀର୍ଯ୍ୟ ବଡ଼ ହେଲେ । ସେ ନିଜକୁ ଭୀଷ୍ମଙ୍କ ପାଖରେ ସର୍ବତୋଭାବେ ସମର୍ପଣ କରି ଦେଇଥିଲେ । ସେ ବି ସେପରି ବଳବାନ୍ ନ ଥିଲେ । ପିତାଙ୍କ ବୃଦ୍ଧାବସ୍ଥାରେ ଜନ୍ମ ହୋଇଥିଲେ, ନିଜ ପିତାଙ୍କୁ ମଧ୍ୟ ସେ ଭଲ କରି ଦେଖି ନ ଥିଲେ । ସେ ଭୀଷ୍ମଙ୍କୁ ହିଁ ନିଜର ପିତା ପରି ମାନୁଥିଲେ । ଭୀଷ୍ମ ମଧ୍ୟ ତାଙ୍କୁ ନିଜର ପୁଅ ପରି ଲାଳନ ପାଳନ କରୁଥିଲେ । ସତ୍ୟବତୀଙ୍କ ଆଜ୍ଞା ନେଇ ଭୀଷ୍ମ ରାଜ୍ୟର ସବୁ କାର୍ଯ୍ୟ ସମ୍ଭାଳୁ ଥିଲେ । ଧୀରେ ଧୀରେ ବିଚିତ୍ରବୀର୍ଯ୍ୟ ବଡ଼ ହେଲେ । ବାଲ୍ୟକାଳ ଗୁଡ଼ି ସେ ଯୌବନାବସ୍ଥାରେ ପଦାର୍ପଣ କଲେ । ଶ୍ରେଷ୍ଠ ଭାଇକୁ ତରୁଣ ତଥା ବିବାହଯୋଗ୍ୟ ଦେଖି ଭୀଷ୍ମ ତାଙ୍କ ବିବାହ ସମ୍ପର୍କରେ ଚିନ୍ତା କରିବାକୁ ଲାଗିଲେ । କୌଣସି ଯୋଗ୍ୟ ଓ ପ୍ରତିଷ୍ଠିତ କ୍ଷତ୍ରିୟକୁଳର କନ୍ୟା ସହିତ ବିଚିତ୍ରବୀର୍ଯ୍ୟଙ୍କ ବିବାହ କରିବାକୁ ସେ ଇଚ୍ଛା କରୁଥିଲେ । ସେହି ସମୟରେ କାଶୀରାଜଙ୍କ କନ୍ୟାର ସ୍ୱୟମ୍ବର ସମାଚାର ତାଙ୍କୁ ମିଳିଲା । ଭୀଷ୍ମ ସେହି ସ୍ୱୟମ୍ବରକୁ ଯାଇ କନ୍ୟାମାନଙ୍କୁ ହରଣ କରି ଆଣିଲେ ଓ ସେହି ସ୍ୱୟମ୍ବର ପରେ ତାଙ୍କର ମୃତ୍ୟୁର କାରଣ ହୋଇଥିଲା ।

ଏହା ଶୁଣି ଶୌନକ କହିଲେ—ମହାଭାଗ ! ଭୀଷ୍ମ କାଶୀରାଜାଙ୍କ କନ୍ୟାଙ୍କୁ କିପରି ହରଣ କଲେ ଓ ଯେଉଁ କାରଣରୁ କିପରି ତାଙ୍କର ମୃତ୍ୟୁ ହେଲା ? ଆପଣ ଦୟା କରି ଏ ସମସ୍ତ ତଥା ଆମକୁ କହନ୍ତୁ । ବାଳ ବ୍ରହ୍ମଚାରୀ ଭୀଷ୍ମଙ୍କ ଚରିତ ଶୁଣିବା ପାଇଁ ଆମର ଖୁବ୍ ଆଗ୍ରହ ହେଉଛି ।

ମହର୍ଷି ସୂତ କହିଲେ—ଠିକ୍ ଅଛି, ମହାଶୟ ! ବର୍ତ୍ତମାନ ମୁଁ ଆପଣମାନଙ୍କୁ ଭୀଷ୍ମଙ୍କ ଚରିତ କହୁଛି, ମନ ଦେଇ ଶୁଣନ୍ତୁ ।

### ଛପ୍ପୟ

ଶନ୍ତନୁ ଭୟେ ଉଦାସ ଲୌଟି ନିଜ ପୁର ମହଁ ଆୟେ ।
ନିଜ ପିତୁ ଇଚ୍ଛା ଜାନି କୁଁବର କେବଟ ଢିଁଗ ଧାୟେ ।।
ସମୁଝି ଦାଶ ପଣ ଭୀଷ୍ମ ପ୍ରତିଜ୍ଞା ଦାରୁଣ କୀହ୍ନୀ ।
ତ୍ୟାଗୋ ପଦ-ଯୁବରାଜ ସୀଖ ସବ ଜଗ କୂଁ ଦୀହ୍ନୀ ।।
ଜୀବନ ଭର କ୍ୱାଁରେ ରହେ, ପିତୁ ପ୍ରସନ୍ନତା କେ ନିମିତ୍ତ ।
ସତ୍ୟବତୀ କେ ଗରଭ ତେଁ, ଦ୍ୱୈ ଶନ୍ତନୁ କେ ଭୟେ ସୁତ ।।



## ବିଚିତ୍ରବୀର୍ଯ୍ୟଙ୍କ ବିବାହ

ବିଚିତ୍ରବୀର୍ଯ୍ୟୋଽଥୋବାହ କାଶୀରାଜସୁତେ ବଲାତ୍ ।
ସ୍ୱୟମ୍ବରାଦୁପାନୀତେ ଅମ୍ବିକାମ୍ବାଳିକେ ଉଭେ ।।
ତୟୋରାସକ୍ତହୃଦୟୋ ଗୃହୀତୋ ଯକ୍ଷ୍ମଣା ମୃତଃ ।।
( ଭାଗ ୯ସ୍କ, ୨୨ଅ, ୨୪ଶ୍ଳୋ )

### ଛପ୍ପୟ

ଚିତ୍ରାଙ୍ଗଦ ନୃପ ଭୟେ ହତେ ଗନ୍ଧର୍ବରାଜରନ ।
ଦୂସର କୁମର ବିଚିତ୍ରବୀର୍ଯ୍ୟ ନୃପ କରେ ପ୍ରଜାଗନ ।।
କାଶୀରାଜ କୀ ସୁତା ତୀନି ହର ଲଈଁ ଦୁଲାରୀ ।
ଶନ୍ତନୁ ଲଘୁ ସୁତ ସଙ୍ଗ ବିବାହୀ ଉଭୟ କୁମାରୀ ।।
ବୋଲୀ ଅମ୍ବା ଭୀଷ୍ମ ତେଁ ବରେ ଶାଲ୍ୱ ମୈନେ ପ୍ରଥମ ।
ଧର୍ମ ଜାନି ପଠଓ ତହାଁ, ଇଚ୍ଛା ପୂରନ କରହୁ ମମ ।।

ବ୍ରାହ୍ମଣ କନ୍ୟାମାନେ ବିଦ୍ୱାନ୍, ଯଶସ୍ୱୀ, ତପସ୍ୱୀ, ତଥା ଧାର୍ମିକ ପତି କାମନା କରନ୍ତି । ବୈଶ୍ୟ କନ୍ୟାମାନେ ସେମାନଙ୍କୁ ଶ୍ରୀସମ୍ପନ୍ନ ବିଭବଶାଳୀ ବର ମିଳୁ ବୋଲି ଇଚ୍ଛା କରନ୍ତି । ଶୂଦ୍ର କନ୍ୟାମାନେ ସେବାପରାୟଣ, ଧର୍ମଶୀଳ, ଧର୍ମାତ୍ମା ପତି ଓ କ୍ଷତ୍ରିୟ କନ୍ୟାମାନେ ବୀର, ବଳବାନ୍ ପତି ପାଇବା ପାଇଁ ଇଚ୍ଛା କରିଥାନ୍ତି । କିନ୍ତୁ ସବୁ କୁମାରୀ ସାଧାରଣତଃ ସୁନ୍ଦର ରୂପବାନ୍, ସୁସ୍ଥ ଯୁବକ ପତି ପାଇବା ପାଇଁ ଇଚ୍ଛା କରନ୍ତି। ସେଥିପାଇଁ ଏକ ନିର୍ଦ୍ଦିଷ୍ଟ ତିଥିରେ ସବୁ କୁଳୀନ ପ୍ରତିଷ୍ଠିତ ରାଜକୁମାରମାନଙ୍କୁ ସମ୍ମାନ ଓ ସତ୍କାର ପୂର୍ବକ ଡାକି ଆଣିବାର ପ୍ରାଚୀନ ପ୍ରଥା ରାଜାମାନଙ୍କ ମଧ୍ୟରେ ଥିଲା । ସେମାନେ ସମସ୍ତେ ବସ୍ତ୍ରାଭୂଷଣରେ ସୁସଜ୍ଜିତ ହୋଇ କନ୍ୟାପିତାଙ୍କ ନଗରକୁ ଆସୁଥିଲେ । ସେମାନଙ୍କ ସଭାକୁ ବିବାହଯୋଗ୍ୟା କନ୍ୟାକୁ ଅଣା ଯାଉଥିଲା ଓ ଉପସ୍ଥିତ ରାଜାମାନଙ୍କ ମଧ୍ୟରୁ ଯାହାକୁ ଇଚ୍ଛା ତାକୁ ବରଣ କରିବା ପାଇଁ କନ୍ୟାକୁ ସ୍ୱାଧୀନତା ଦିଆଯାଉଥିଲା । କନ୍ୟା ପ୍ରତ୍ୟେକଙ୍କ ପାଖକୁ ଯାଇ ତାଙ୍କର କୁଳ, ଗୋତ୍ର କଥା ଶୁଣେ, ବଳବୀର୍ଯ୍ୟର ପ୍ରଶଂସା ଶୁଣେ, ନିଜେ ତାଙ୍କ ରୂପକୁ ଦେଖେ, ତା'ପରେ ସେହି ଆସିଥିବା ରାଜକୁମାରମାନଙ୍କ ମଧ୍ୟରୁ ଜଣକୁ ବରଣମାଳା ପିନ୍ଧାଇଦିଏ । ସେହି ସମୟଠାରୁ ରାଜା ବା ରାଜକୁମାର କନ୍ୟାକୁ ପତ୍ନୀରୂପେ ଗ୍ରହଣ କରନ୍ତି । ପରେ ଶାସ୍ତ୍ରୀୟ ବିଧାନ ଅନୁସାରେ ଦୁହିଁଙ୍କର ବିବାହ କରା-ଯାଇଥାଏ । ବେଳେ ବେଳେ କେହି ବଳବାନ୍ ରାଜକୁମାର କନ୍ୟାକୁ ହରଣ କରି ନିଅନ୍ତି । ଏହା ମଧ୍ୟ ଶାସ୍ତ୍ର ଅନୁସାରେ ରାକ୍ଷସ ବିବାହ ନାମରେ ଗୃହୀତ । କ୍ଷତ୍ରିୟମାନଙ୍କ ମଧ୍ୟରେ ଗାନ୍ଧର୍ବ ଓ ରାକ୍ଷସ ବିବାହର ପ୍ରଶଂସା କରାଯାଇଛି । କ୍ଷତ୍ରିୟମାନଙ୍କ ମଧ୍ୟରୁ ବୀର, ବଳବାନ୍, ସାହସୀମାନେ କନ୍ୟା ହରଣ କରିଥାନ୍ତି ।

ମହର୍ଷି ସୂତ କହିଲେ—ମୁନିଗଣ ! କନ୍ୟାବସ୍ଥାରେ ଯାହା ଗର୍ଭରୁ ଭଗବାନ୍ ବ୍ୟାସ ଜନ୍ମ ହୋଇଥିଲେ, ଯେ ଶ୍ରୀମଦ୍‌ଭାଗବତ ରଚନା କରି ନିଜର ପ୍ରିୟପୁତ୍ର ଓ ମୋର ଗୁରୁଦେବ ଭଗବାନ୍ ଶୁକଙ୍କୁ ଦେଇଥିଲେ, ସେହି କୈବର୍ତ୍ତକନ୍ୟା ଭଗବତୀ ସତ୍ୟବତୀଙ୍କଠାରୁ ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ଜନ୍ମ ହୋଇଥିଲେ । ଚିତ୍ରାଙ୍ଗଦଙ୍କୁ ଯେତେବେଳେ ଗନ୍ଧର୍ବରାଜ ଯୁଦ୍ଧରେ ନିହତ କଲେ, ସେତେବେଳେ ବିଚିତ୍ରବୀର୍ଯ୍ୟଙ୍କୁ ରାଜା କରାଗଲା । ସେ ବିବାହଯୋଗ୍ୟ ହୋଇଗଲେ; କିନ୍ତୁ ତାଙ୍କର ବିବାହ ହୋଇ ନ ଥାଏ । ଭଗବତୀ ସତ୍ୟବତୀ ଉପରିଚର ବସୁଙ୍କ ଔରସରୁ ଓ ମତ୍ସ୍ୟଗର୍ଭରୁ ଜନ୍ମ ହୋଇଥିଲେ ବୋଲି କେବଳ ଜ୍ଞାନୀ ମୁନିମାନେ ଯୋଗବଳରେ ଜାଣିପାରିଥିଲେ । କିନ୍ତୁ ସର୍ବସାଧାରଣ ଲୋକେ ତାଙ୍କୁ କୈବର୍ତ୍ତକନ୍ୟା ରୂପେ ହିଁ ଗ୍ରହଣ କରିଥିଲେ । ତେଣୁ କୁଳୀନ ରାଜାମାନେ ବିଚିତ୍ରବୀର୍ଯ୍ୟଙ୍କୁ ଝିଅ ଦେବାପାଇଁ ରାଜି ହେଉ ନ ଥିଲେ । ମାତ୍ର ଯାହାର ରକ୍ଷକ ହେଉଛନ୍ତି ସ୍ୱୟଂ ବୀରଶ୍ରେଷ୍ଠ ଭୀଷ୍ମ, ତାର କିଏ କଣ କରିପାରିବ ? ବିଚିତ୍ରବୀର୍ଯ୍ୟଙ୍କ ବିବାହ କେଉଁଠି କଲେ ଭଲ ହେବ ଭୀଷ୍ମ ସର୍ବଦା ତାହା ଭାବୁଥିଲେ । ଏହି ସମୟରେ କାଶୀରାଜାଙ୍କର ବିବାହଯୋଗ୍ୟା ତିନୋଟି କନ୍ୟା ଅଛନ୍ତି ବୋଲି ଭୀଷ୍ମ ଖବର ପାଇଲେ । ସେମାନେ

ଅପ୍ସରା ପରି ରୂପବତୀ, ପରମ ଗୁଣବତୀ ତଥା ମନୋରମା ଥିଲେ । ସେମାନଙ୍କର ପ୍ରଶଂସା ଶୁଣି ଭୀଷ୍ମ ଏକାକୀ ରଥ ଉପରେ ବସି ହସ୍ତିନାରୁ କାଶୀ ବାହାରିଗଲେ । ବନ, ପର୍ବତ, ନଦୀ, ନାଳ ସବୁ ପାର ହୋଇ ସେ କେତେ ଦିନ ପରେ କାଶୀରେ ପହଞ୍ଚିଲେ ।

କାଶୀରେ ରାଜାଙ୍କ କନ୍ୟାମାନଙ୍କର ସ୍ୱୟମ୍ବର ପାଇଁ ଆଡ଼ମ୍ବର ପୂର୍ଣ୍ଣ ପ୍ରସ୍ତୁତି ଚାଲିଥିବାର ଭୀଷ୍ମ ଦେଖିଲେ । ଦେଶ ବିଦେଶରୁ ବହୁ ରାଜା ଓ ରାଜପୁତ୍ର କନ୍ୟା ଲାଭ ଆଶାରେ ସେଠାରେ ଏକତ୍ରିତ ହୋଇଥିଲେ । ସମସ୍ତଙ୍କର ଆଶା ଥିଲା କନ୍ୟା ତାଙ୍କୁ ହିଁ ବରଣ କରିବେ । ସମସ୍ତେ ବସ୍ତ୍ରାଭୂଷଣରେ ସୁସଜ୍ଜିତ ଥିଲେ । ସମସ୍ତଙ୍କ ମୁକୁଟରେ ଥିବା ମଣି ମାଣିକ୍ୟ ଚମକୁ ଥିଲା । ସମସ୍ତ ଅତିଥି ରାଜାମାନଙ୍କ ପାଇଁ ସୁନ୍ଦର ସିଂହାସନ ଦିଆଯାଇଥିଲା । ଗାଙ୍ଗେୟ ଭୀଷ୍ମଙ୍କ ଆଗମନ କଥା କାଶୀରାଜ ଜାଣିପାରି ତାଙ୍କୁ ଅଧିକ ଆଦରରେ ସ୍ୱାଗତ ସତ୍କାର କଲେ । ସ୍ୱୟମ୍ବର ସଭାରେ ଭୀଷ୍ମଙ୍କ ପାଇଁ ସିଂହାସନ ଦିଆଗଲା ।

ଯଥା ସମୟରେ ରାଜକୁମାରମାନେ ବେଶଭୂଷା ହୋଇ ସାଜସଜ୍ଜାର ସହିତ ନିଜ ନିଜର ଆସନରେ ବସିଲେ । ସମସ୍ତଙ୍କ ମଧ୍ୟରେ ଭୀଷ୍ମଙ୍କୁ ବସିଥିବା ଦେଖି ରାଜାମାନେ ପରସ୍ପର କଥାବାର୍ତ୍ତା ହେବାକୁ ଲାଗିଲେ । ଜଣେ କେହି କହିଲେ—ଏ ବୁଢ଼ା ସ୍ୱୟମ୍ବର ସଭାକୁ କାହିଁକି ଚାଲିଆସିଛି ? ଏ ବୟସରେ ବିବାହ କରିବାକୁ ଇଚ୍ଛା କଲା ନା କ'ଣ ?

ଆଉ ଜଣେ କହିଲେ—ଆରେ ଭାଇ ! ଭୀଷ୍ମ ହେଉଛନ୍ତି ବାଳବ୍ରହ୍ମଚାରୀ । ଏହା ସାରା ସଂସାର ଜାଣେ । ପିତାଙ୍କୁ ପ୍ରସନ୍ନ କରିବା ପାଇଁ ଆଜୀବନ ଅବିବାହିତ ରହିବେ ବୋଲି ସେ ଭୀଷ୍ମ ପ୍ରତିଜ୍ଞା କରିଛନ୍ତି ।......

କେହି ଜଣେ ମତ ଦେଲା—ହଁ ଭାଇ ! କେବେ ସେ ପ୍ରତିଜ୍ଞା କରିଥିଲେ । ମଣିଷର ବୁଦ୍ଧି ସବୁବେଳେ ଏକାପରି ରହେ ନାହିଁ । ବାଳ ପାଚିଲା ପରେ ବି ଯଦି ମନ ନ ପାଚେ, ତେବେ ସେପରି ବ୍ୟକ୍ତିକୁ ଯୁବକ ବୋଲି ଭାବିବାକୁ ପଡ଼ିବ ।

ଆଉ ଜଣେ କହିଲେ—ଯା ଯା, ପୃଥିବୀ ଓଲଟିଗଲେ ବି ଭୀଷ୍ମ ତାଙ୍କ ପ୍ରତିଜ୍ଞା ଭାଙ୍ଗିବେ ନାହିଁ । ଏହା ଶୁଣି ଆଉ ଜଣେ କହିଲେ—ତେବେ ରୂପର ପ୍ରଲୋଭନ ଅତି ପ୍ରବଳ । ସେଥିରୁ ଆତ୍ମରକ୍ଷା କରିବା ଯୋଗୀମାନଙ୍କ ପକ୍ଷରେ ବି କଷ୍ଟସାଧ୍ୟ ।

ଲୋକମାନଙ୍କ ମଧ୍ୟରେ ଏହିପରି କଥାବାର୍ତ୍ତା ଚାଲିଥିବାବେଳେ ସମସ୍ତ ପ୍ରକାର ବସ୍ତ୍ରାଭୂଷଣରେ ସୁସଜ୍ଜିତା ହୋଇ ତିନି ରାଜକୁମାରୀ ସ୍ୱୟମ୍ବର ସଭାମଧ୍ୟକୁ ଆସିଲେ । ସେମାନେ ଆସିବାମାତ୍ରେ ସମସ୍ତେ ନୀରବ ହୋଇଗଲେ । ସମସ୍ତଙ୍କ ଆଖି ସେମାନଙ୍କ ଉପରେ ଲାଖି ରହିଲା । ସେମାନଙ୍କ ମୁଖମଣ୍ଡଳର ଶୋଭା, ଆଭୂଷଣ ମଣି ମାଣିକ୍ୟର ଆଲୋକ ଯୋଗୁ ତିନିପ୍ରକାର ସୌଦାମିନୀ (ବିଦ୍ୟୁତ୍) ଏକାସାଙ୍ଗରେ ଆକାଶରେ ଚମକି ଯିବା ପରି ମନେ ହେଲା । ସେ ତିନିଜଣ ତିନୋଟି ହଂସୀ ପରି ନୂପୁର ଶବ୍ଦ କରି ଅଳସ ଗତିରେ ଆସୁଥିଲେ । ସେମାନଙ୍କ ପଛେ ପଛେ ଅନେକ ସଖୀ ଅନୁଗମନ କରୁଥିଲେ । ସମସ୍ତଙ୍କଠାରୁ

ବଡ଼ ଅମ୍ବା ଆଗେ ଆଗେ ଚାଲିଥାନ୍ତି । ତାଙ୍କର ବୟସ ସତର ବର୍ଷ ହେବ । ଯୌବନର ସମସ୍ତ ଲକ୍ଷଣ ତାଙ୍କ ଦେହରେ ପ୍ରସ୍ଫୁଟିତ ହୋଇ ଥିଲା । ତାଙ୍କଠାରୁ ସାନ ଅମ୍ବିକା ମଝିରେ ଥାଆନ୍ତି । ସେ ଅମ୍ବାଙ୍କ ଠାରୁ ସାନ ଓ ଅମ୍ବାଳିକାଙ୍କଠାରୁ ବଡ଼ । ବଡ଼ ବଡ଼ ଆଖିରେ ସେ କୁମାରମାନଙ୍କ ପ୍ରତି ସଲଜ୍ଜ କୁଟିଳ କଟାକ୍ଷ ପକାଇ ଚାହିଁଥାନ୍ତି । ସମସ୍ତଙ୍କ ଠାରୁ ସାନ ଅମ୍ବାଳିକା ପଛରେ ଆସୁଥାନ୍ତି । ତାଙ୍କର ପନ୍ଦର ବର୍ଷ ବୟସ ହେବ । ତିନି ଭଉଣୀ ରୂପରେ ଗୁଣରେ, ଆକୃତି ପ୍ରକୃତିରେ ପ୍ରାୟ ଏକାପରି ଜଣା ପଡ଼ୁଥାନ୍ତି । ପ୍ରଥମ କରି ଦେଖୁଥିବା ଲୋକ ସେମାନଙ୍କ ମଧ୍ୟରେ କିଏ ଅମ୍ବା, ଅମ୍ବିକା କିଏ ବା ଅମ୍ବାଳିକା ତାହା ଠିକ୍ କରିବା ସମ୍ଭବ ନୁହେଁ ।

କୁମାରୀମାନେ ଆସିଯିବା ପରେ ସୂତମାଗଧ ବୃନ୍ଦ ରାଜା ଓ ରାଜକୁମାରମାନଙ୍କ ପରିଚୟ ଦେବା ଆରମ୍ଭ କରିଦେଲେ । ଯେଉଁ ଯେଉଁ ରାଜକୁମାରମାନଙ୍କ ପାଖକୁ କୁମାରୀମାନେ ଯାଉଥିଲେ ସେମାନଙ୍କ ପରିଚୟ ଦିଆଯାଉଥିଲା । ଏହି ନିୟମ ଅନୁସାରେ ଯେତେବେଳେ କୁମାରୀମାନେ ଭୀଷ୍ମଙ୍କ ପାଖକୁ ଆସିଲେ, ସେତେବେଳେ ଭୀଷ୍ମଙ୍କ ପରିଚୟ ଦିଆଗଲା । ସେହି ସ୍ଥାନରେ ଅନୁଚ୍ଚ କଣ୍ଠରେ ଲାଜକରି କୁମାରୀମାନେ କହିଲେ—ଏ ବୃଦ୍ଧଙ୍କୁ କେଉଁ କନ୍ୟା ସ୍ୱେଚ୍ଛାରେ ବରଣ କରିବ ?

ଏହା ଶୁଣିବା ମାତ୍ରେ ସବୁ ରାଜା ଓ ରାଜକୁମାର ଅଟ୍ଟହାସ୍ୟ କରିବାକୁ ଲାଗିଲେ । ସେମାନେ ହସିବାର ଦେଖି ଅଭିମାନୀ ଗାଙ୍ଗେୟଙ୍କର କ୍ରୋଧ ଜାତ ହେଲା । ସେ ରାଜା-ମାନଙ୍କୁ ସମ୍ବୋଧନ କରି କହିଲେ—ହେ ରାଜନ୍ୟବର୍ଗ ଓ ରାଜପୁତ୍ରଗଣ ! ଯାହା ମୁଁ କହିବାକୁ ଯାଉଛି ତାହା ଆପଣମାନେ ମନଦେଇ ଶୁଣନ୍ତୁ । ଆଠପ୍ରକାର ବିବାହ ମଧ୍ୟରେ ରାକ୍ଷସ ବିବାହ ମଧ୍ୟ ଅଛି । ଏହି ପ୍ରଥା ଅନୁସାରେ ସବୁଠୁ ବଳବାନ୍ ବ୍ୟକ୍ତି କନ୍ୟାର ଇଚ୍ଛା ଥାଉ ବା ନ ଥାଉ ନିଜ ବୀରତ୍ୱର ଶୁଳ୍କ ଦେଇ କନ୍ୟାକୁ ବଳପୂର୍ବକ ହରଣ କରି ନେଇଥାଏ । ହଜାର ହଜାର ପୁରୁଷଙ୍କୁ ଜୟକରି କ୍ରନ୍ଦନ କରୁଥିବା କନ୍ୟାକୁ ନେଇଯିବା କ୍ଷତ୍ରିୟମାନଙ୍କ ପାଇଁ ଗୌରବର କଥା । ଏ କଥା ଆପଣମାନେ ଜାଣନ୍ତି ଯେ ମୁଁ ଆଜୀବନ ବିବାହ କରିବି ନାହିଁ ବୋଲି ପ୍ରତିଜ୍ଞା କରିଛି, ତେଣୁ ମୁଁ ଏହି କନ୍ୟାମାନଙ୍କୁ ମୋର ସାନ ଭାଇ ବିଚିତ୍ରବୀର୍ଯ୍ୟ ପାଇଁ ହରଣ କରି ନେଇଯାଉଛି । ଯାହାର ବାହୁରେ ବଳ ଥିବ, ଯେ ନିଜକୁ ବୀର ବୋଲି ଅଭିମାନ କରୁଥିବ, ସେ ମୋ' ସହ ଯୁଦ୍ଧ କରି କନ୍ୟାମାନଙ୍କୁ ଫେରାଇ ନେଇ ଯାଇପାରିବ । ଏତିକି କହି ଅଗରୁ ପ୍ରସ୍ତୁତ ହୋଇ ରହିଥିବା ରଥରେ ସେ ତିନି କନ୍ୟାଙ୍କୁ ବଳପୂର୍ବକ ଧରି ବସାଇ ରଥ ଦଉଡ଼ାଇ ଦେଲେ ।

ଭୀଷ୍ମଙ୍କର ଏପରି ସାହସ ଦେଖି ସବୁ ରାଜା ଓ ରାଜକୁମାରମାନେ ସ୍ତମ୍ଭିତ ହୋଇଗଲେ । ଏମାନେ ସଂଖ୍ୟାରେ ହଜାର ହଜାର ଥିଲେ । ସମସ୍ତେ ଏକାଠି ଭୀଷ୍ମଙ୍କୁ ଆକ୍ରମଣ କରିବା ପାଇଁ ଆଗେଇଲେ । ବର୍ଷା କାଳରେ ଜଳୁଥିବା ଅଗ୍ନି ଉପରେ ଚାରିଆଡ଼ୁ ଉଡ଼ିଆସି ଯେପରି ପତଙ୍ଗମାନେ ପଡ଼ନ୍ତି, ସେହିପରି ରାଜାମାନେ ଭୀଷ୍ମଙ୍କ ଉପରେ ଚାରିଆଡ଼ୁ

ଆକ୍ରମଣ କଲେ । ସେମାନଙ୍କ ଆକ୍ରମଣରେ ଭୀଷ୍ମ ତିଳେମାତ୍ର ବିଚଳିତ ନ ହୋଇ ନିଜର ଦିବ୍ୟାସ୍ତ୍ର ପ୍ରଭାବରେ ସମସ୍ତଙ୍କୁ ମୂର୍ଚ୍ଛିତ କରିଦେଲେ । ସମସ୍ତେ ରଣକ୍ଷେତ୍ରରେ କ୍ଷତବିକ୍ଷତ କଟା ଗଛପରି ପଡ଼ିରହିଲେ । କେତେକ ରାଜା ଯୁଦ୍ଧଭୂମି ତ୍ୟାଗକରି ପଳାଇ ଗଲେ । କେତେକ ଫେରିଗଲେ ଓ ଆଉ କେତେକ ବେଦନାରେ କରୁଣ ଚିତ୍କାର କରି ପଡ଼ିରହିଲେ । ଏହିପରି ସମସ୍ତେ ପରାଭୂତ ହୋଇ ଫେରିଗଲେ ମଧ୍ୟ ରାଜା ଶାଲ୍ୱ ଭୀଷ୍ମଙ୍କ ପଛରେ ଦଉଡ଼ିଲେ । ସେ ଖୁବ୍ ବଳଶାଳୀ ରାଜା ଥିଲେ । ନିଜର ବୀରତ୍ୱ ପାଇଁ ତାଙ୍କର ଅହଙ୍କାର ଥିଲା । ବହୁ ସମୟ ଧରି ସେ ଭୀଷ୍ମଙ୍କ ସହିତ ଯୁଦ୍ଧ କଲେ । କିନ୍ତୁ ଶେଷରେ ସେ ପରାଜୟ ବରଣ କଲେ । ଦେବବ୍ରତ ତାଙ୍କୁ ଜୀବନରେ ମାରିଲେ ନାହିଁ । ଶାଲ୍ୱ ନିଜ ରାଜଧାନୀକୁ ଫେରିଆସିଲେ । ସେ ସ୍ୱୟମ୍ବର କଥା ଭୁଲିଯାଇ ପ୍ରଜାପାଳନ କରିବାକୁ ଲାଗିଲେ । ଅନ୍ୟ ରାଜାମାନେ ମଧ୍ୟ ନିଜ ନିଜ ରାଜଧାନୀକୁ ଫେରିଗଲେ ।

ଦେବବ୍ରତ ଭୀଷ୍ମ ସେହି ତିନି କନ୍ୟାଙ୍କୁ ନେଇ ହସ୍ତିନାପୁର ଯାତ୍ରା କଲେ । ବାଟରେ ସେମାନଙ୍କ ସହିତ ଝିଅ ବା ବୋହୂ ପରି ସେ ବ୍ୟବହାର କରୁଥିଲେ । ଭୀଷ୍ମ କାଶୀରାଜାଙ୍କ ତିନି କନ୍ୟାକୁ ବଳପୂର୍ବକ ଯୁଦ୍ଧରେ ବିଜୟୀ ହୋଇ ଆଣୁଥିବାର ସମ୍ବାଦ ପାଇବା ମାତ୍ରେ ନଗରବାସୀମାନେ ଆଡ଼ମ୍ବର ସହକାରେ ଭୀଷ୍ମଙ୍କୁ ସ୍ୱାଗତ ଜଣାଇଲେ । ସମସ୍ତଙ୍କ ପ୍ରତି କୃତଜ୍ଞତା ପ୍ରକାଶ କରି ଭୀଷ୍ମ ତିନିକନ୍ୟାଙ୍କ ସହିତ ମାତା ସତ୍ୟବତୀଙ୍କ ମହଲରେ ପ୍ରବେଶ କଲେ । ତାଙ୍କ ଆଗରେ ତିନିକନ୍ୟାଙ୍କୁ ଠିଆ କରାଇ ସତ୍ୟବତୀଙ୍କୁ ପ୍ରଣାମ କରି ସେ କହିଲେ—ମା' ଆପଣଙ୍କ ପାଇଁ ଯୁଦ୍ଧ କରି ଏହି ତିନି ପୁତ୍ରବଧୂଙ୍କୁ ଆଣିଛି । ଏମାନଙ୍କ ପାଇଁ ମୋତେ ହଜାର ହଜାର ରାଜାଙ୍କ ସହିତ ଯୁଦ୍ଧ କରିବାକୁ ପଡ଼ିଲା । କିନ୍ତୁ ଆପଣଙ୍କ ଆଶୀର୍ବାଦରୁ ମୋର ଦେହରେ ସାମାନ୍ୟ କ୍ଷତ ହୋଇନାହିଁ । ବର୍ତ୍ତମାନ ଆପଣ ଏମାନଙ୍କୁ ଆପଣଙ୍କ ପୁତ୍ର ସହ ବିବାହ କରିଦିଅନ୍ତୁ ।

ଭୀଷ୍ମଙ୍କର ଏହି କଥା ଶୁଣି ସତ୍ୟବତୀଙ୍କ ଆଖିରୁ ପ୍ରେମାଶ୍ରୁ ବହିବାକୁ ଲାଗିଲା । ସେ ଭୀଷ୍ମଙ୍କ ମସ୍ତକ ଆଘ୍ରାଣ କରି ସ୍ନେହପୂର୍ଣ୍ଣ ସ୍ୱରରେ କହିଲେ—ଆୟୁଷ୍ମାନ୍ ! ତୁମ ଛଡ଼ା ଆଉ କିଏ ଏପରି ପୌରୁଷ ପ୍ରଦର୍ଶନ କରିପାରିବ ? ତୁମର ମଙ୍ଗଳ ହେଉ । ତୁମେ ଆଜି ମୋର ଅତ୍ୟନ୍ତ ପ୍ରିୟକାର୍ଯ୍ୟ କରିଛ । ଦେବକୁମାରୀ ସୁନ୍ଦରୀ ଏହି ତିନି କନ୍ୟାଙ୍କୁ ମୋର ପୁତ୍ରବଧୂ-ରୂପେ ଲାଭ କରି ମୁଁ ନିଜକୁ ପରମ ଭାଗ୍ୟବତୀ ବୋଲି ମନେ କରୁଛି । ବର୍ତ୍ତମାନ ତୁମେ ବିଚିତ୍ରବୀର୍ଯ୍ୟ ସହିତ ଏମାନଙ୍କର ବିଧିପୂର୍ବକ ବିବାହ କରିଦିଅ ।

ତା'ପରେ ଦେବବ୍ରତ ଭୀଷ୍ମ, ବିବାହ ପାଇଁ କାର୍ଯ୍ୟ ଆରମ୍ଭ କରିଦେଲେ । ସେତେବେଳେ ସେମାନଙ୍କ ମଧ୍ୟରେ ସମସ୍ତଙ୍କଠାରୁ ଜ୍ୟେଷ୍ଠା କନ୍ୟା ଅମ୍ବା ହାତଯୋଡ଼ି ଭୀଷ୍ମଙ୍କୁ କହିଲେ—ହେ ଦେବ ! ଆପଣ ଧର୍ମାତ୍ମା । ସ୍ୱପ୍ନରେ ମଧ୍ୟ ଆପଣ ଧର୍ମ ବିରୁଦ୍ଧ କାର୍ଯ୍ୟ କରିବେ ନାହିଁ । ମୁଁ ମନେ ମନେ ମହାରାଜ ଶାଲ୍ୱଙ୍କୁ ମୋର ପତି ରୂପେ ବରଣ କରି ସାରିଛି । ମୋର ପିତା ମଧ୍ୟ ମୋର ସଂକଳ୍ପକୁ ଅନୁମୋଦନ କରିଛନ୍ତି । ସମସ୍ତେ

ଜାଣିଥିଲେ ମୁଁ ସ୍ୱୟମ୍ବର ସଭାକୁ ଯାଇ ମହାରାଜ ଶାଲ୍ୱଙ୍କୁ ହିଁ ବରଣ କରିବି, ତାଙ୍କର କଣ୍ଠରେହିଁ ବରଣମାଳା ଦେବି । କିନ୍ତୁ ତାଙ୍କ ପାଖକୁ ଯିବା ପୂର୍ବରୁ ଆପଣ ମୋତେ ବଳପୂର୍ବକ ହରଣ କରି ଆଣିଲେ । କିନ୍ତୁ ଶାଲ୍ୱଙ୍କୁ ମୁଁ ମନରେ ପତିରୂପେ ସ୍ୱୀକାର କରିଛି । ବର୍ତ୍ତମାନ ଆପଣ ଦୟାକରି ମୋତେ ତାଙ୍କ ପାଖରେ ପହଞ୍ଚାଇ ଦିଅନ୍ତୁ ।

ଅମ୍ବାଙ୍କ ମୁଖରୁ ଏକଥା ଶୁଣି ଦେବବ୍ରତ ଭୀଷ୍ମ ଭୀଷଣ ଚିନ୍ତାରେ ପଡ଼ିଗଲେ । ସେ ଭାବିଲେ—ଜଣେ ଯୁବତୀ କନ୍ୟା ଯେତେବେଳେ ମନରେ ଜଣଙ୍କୁ ପତି ରୂପେ ଗ୍ରହଣ କରିଛି, ସେତେବେଳେ ତାକୁ ବାଧ୍ୟ କରି ଅନ୍ୟ ସହିତ ବିବାହ ଦେବା ଉଚିତ ନୁହେଁ । ମନ ଅନ୍ୟତ୍ର ଓ ଦେହ ଅନ୍ୟତ୍ର, ଏପରି ହେଲେ ଦାମ୍ପତ୍ୟ ଜୀବନ ସୁଖକର ହୁଏ ନାହିଁ । ମୋର ଭାଇ ପାଇଁ ଦୁଇଟି ସ୍ତ୍ରୀ ଯଥେଷ୍ଟ । ଏପରି ଭାବି ସେ କହିଲେ—ଯଦି ତୁମର ଏହାହିଁ ଇଚ୍ଛା ତାହାହେଲେ ମୁଁ ତୁମକୁ ମହାରାଜ ଶାଲ୍ୱଙ୍କ ପାଖକୁ ପଠାଇ ଦେଉଛି ।

ମହର୍ଷି ସୂତ କହିଲେ—ମୁନିଗଣ ! ଏହା କହି ଭୀଷ୍ମ ଅମ୍ବାଙ୍କୁ ଅନେକ ବିଶ୍ୱସ୍ତ ବ୍ରାହ୍ମଣଙ୍କ ସଙ୍ଗରେ ରଥରେ ବସାଇ ସସମ୍ମାନେ ମହାରାଜ ଶାଲ୍ୱଙ୍କ ପାଖକୁ ପଠାଇ-ଦେଲେ । ଶେଷରେ ଏହି ଅମ୍ବା ଦେବବ୍ରତଙ୍କ ପ୍ରାଣ ବିନାଶର କାରଣ ହୋଇଥିଲେ । ସ୍ୱେଚ୍ଛା ମୃତ୍ୟୁ ବରଲାଭ କରିଥିବା ଭୀଷ୍ମ ଏହି ଅମ୍ବାଙ୍କ ଯୋଗୁଁ ମୃତ୍ୟୁ ବରଣ କଲେ । ଏହି ଅମ୍ବାଙ୍କ ପାଇଁ ସେ ନିଜ ଗୁରୁ ପରଶୁରାମଙ୍କ ସହିତ ଯୁଦ୍ଧ କରିଥିଲେ ।

ଏହା ଶୁଣି ଶୌନକ ପଚାରିଲେ—ମହାଭାଗ ! ଭୀଷ୍ମ ଯଦି ଅମ୍ବାଙ୍କ ଇଚ୍ଛା ଅନୁସାରେ ତାଙ୍କୁ ଶାଲ୍ୱଙ୍କ ପାଖକୁ ପଠାଇଦେଲେ ତେବେ ସେ କାହିଁକି ଭୀଷ୍ମଙ୍କ ପ୍ରାଣ ନାଶ ପାଇଁ ଇଚ୍ଛା କଲେ ? ଏହି ସନ୍ଦେହର ନିରାକରଣ ସହ ପରଶୁରାମଙ୍କ ସହିତ ତାଙ୍କର ଯୁଦ୍ଧ କାହିଁକି ହେଲା, ସେକଥା ମଧ୍ୟ ଦୟାକରି ଆମକୁ କୁହନ୍ତୁ ।

ମହର୍ଷି ସୂତ କହିଲେ—ଠିକ୍ ଅଛି, ବର୍ତ୍ତମାନ ମୁଁ ଭୀଷ୍ମ ଓ ପରଶୁରାମଙ୍କ ଯୁଦ୍ଧ କଥା କହୁଛି, ଆପଣମାନେ ମନଦେଇ ଶୁଣନ୍ତୁ ।

## ଛପ୍‌ପୟ

ଅମ୍ବା ଇଚ୍ଛା ଜାଣି ଶାଲ୍ୱ ନିକଟିଁଗ ଭୀଷ୍ମ ପଠାଇ ।
କନ୍ୟା ନେ ନିଜ ପ୍ରୀତି ବିବଶତା ନୃପହିଁ ଜଣାଇ ॥
ବଲ ଅଭିମାନୀ ଶାଲ୍ୱ କହେ ପର ବିଜିତ କୁମାରୀ ।
କରୁଁ ଗ୍ରହଣ ତୋ ହୋଇ ଜଗତ ମହଁ ହଁସୀ ହମାରୀ ॥
ଅତି ଅନୁନୟ ଅମ୍ବା କରୀ, ଘୁଡ଼କୀ କହି ନୃପ ଚୈଁ ବକୈ ।
ଅପର ଗୃହୀତା ନାରୀ କା, ନୃପ ପଟରାନୀ ବନୀ ସକୈ ॥



# ଭୀଷ୍ମ ଓ ପରଶୁରାମ ଯୁଦ୍ଧ

ସର୍ବଧର୍ମବିଦାଂ ଶ୍ରେଷ୍ଠୋ ମହାଭାଗବତଃ କବିଃ ।
ବୀର ଯୂଥାଗ୍ରଣୀର୍ଯେନ ରାମୋଽପି ଯୁଧି ତୋଷିତଃ ॥

(ଭାଗ ୯ସ୍କ, ୨୨ଅ, ୧୯-୨୦ ଶ୍ଳୋ)

## ଛପ୍ପୟ

ହେ ନରଗଣ ବନ ମାଁହ୍ନ ଲୋଟି ଅମ୍ବା ତବ ଆଇ ।
ବଲଖି-ବଲଖି ନିଜ ବପତ୍ତି କଥା ସବ ମୁନିନ ସୁନାଇ ॥
ଦୈବ-ଯୋଗ ତେଁ ପରଶୁରାମ ମୁନିବର ତହଁ ଆୟେ ।
ମୁନି ଅମ୍ବା ବୃତ୍ତାନ୍ତ ରାମ-ନୟନନି ଜଳ ଛାୟେ ॥
ଅମ୍ବା କେ ହିତ ଭୀଷ୍ମତେଁ, ପରଶୁରାମ ଲଡିବେ ଚଲେ ।
ଶୁଭାଗମନ ମୁନି ସୁନି ତୁରତ, ହରଷି ଭୀଷ୍ମ ଗୁରୁ ତେଁ ମିଲେ ।

ଅନନ୍ତ ଜନ୍ମର କାମନାହିଁ ଜୀବକୁ ସଂସାର ଚକ୍ରରେ ବୁଲାଇଥାଏ । ଆମେମାନେ ଯାହା ଶୁଭ ଅଶୁଭ କାର୍ଯ୍ୟ କରୁଛୁ, ସେ ସବୁ ସଞ୍ଚିତ ହୋଇ ରହୁଛି । ସେହି ସଞ୍ଚିତ କର୍ମରୁ ଯେଉଁତକ ଭୋଗ ହେବାପାଇଁ ଗୋଟିଏ ଜନ୍ମର ଶରୀର ହେଉଛି ତାକୁ ପ୍ରାରବ୍ଧ ବୋଲି କୁହାଯାଏ । ଏ ଜନ୍ମରେ ଯେଉଁ ପ୍ରାରବ୍ଧ ଭୋଗ ହେବା ପାଇଁ ଅଛି, ତାହା ବିନା ଭୋଗରେ କ୍ଷୟ ହେବ ନାହିଁ । ଭବିଷ୍ୟତ ପାଇଁ ଆମେ ଯେପରି ବାସନା ରଖି ମରିବା, ଆମେ ସେହିପରି ଜନ୍ମ ନେବା । ପ୍ରାରବ୍ଧ କର୍ମ ବଳପୂର୍ବକ କାର୍ଯ୍ୟ କରେ ନାହିଁ । ତାହା ଯେପରି ଭୋଗ ହୁଏ, ମନିଷ ସେହିପରି କାର୍ଯ୍ୟକରେ । ବହୁ ଲୋକ ରାଜସମ୍ପଦ ଥିବା ଲୋକର ପୁଅ ରୂପେ ଜନ୍ମ ହୋଇ ମଧ୍ୟ ପ୍ରାରବ୍ଧ କର୍ମ ହେତୁ ଭିକ୍ଷା ମାଗନ୍ତି । ନିର୍ଦ୍ଧନ ଦରିଦ୍ରର କନ୍ୟା ରାଜରାଣୀ ହୋଇଯାଏ ଓ ରାଜକୁମାରୀ ଗାଁକୁ ଗାଁ ବୁଲି ଭିକ ମାଗନ୍ତି । ଆମେ ଯାହା ଯାହା ଇଚ୍ଛା କରୁଛୁ ତାହା ନିଶ୍ଚୟ ପୂର୍ଣ୍ଣ ହେବ, କିନ୍ତୁ କେବେ ହେବ ତାହା କହିହେବ ନାହିଁ । ଅନେକ ଭୋଗ ସ୍ୱପ୍ନରେ ଭୋଗ ହୋଇ କ୍ଷୟ ହୋଇଯାଏ, ଅନେକ କଳ୍ପନାରେ ମଧ୍ୟ ଭୋଗ ହୋଇଯାଏ । ଆଉ କେତେକ ଭୋଗ ପାଇଁ ଜନ୍ମ ଗ୍ରହଣ କରିବାକୁ ପଡ଼େ । ଅତି ଉତ୍କଟ ପାପପୁଣ୍ୟର ଫଳ, ଏହି ଜନ୍ମରେ ହିଁ ମିଳିଯାଇଥାଏ । ଏ ପ୍ରାଣୀ ସ୍ୱବଶ ନୁହେଁ । ସେ ଯେପରି

ଭାବ ପୋଷଣ କରେ ସେହିପରି ହୋଇଯାଏ । ଏ ସଂସାର ମଧ୍ୟ ଭାବମୟ । ଯାହାର ଯେପରି ଭାବ, ଏ ସଂସାର ତାକୁ ସେହିପରି ଦେଖାଯାଏ । କୌଣସି ବ୍ୟକ୍ତି ବିଶେଷ କାହାକୁ ସୁଖ ବା ଦୁଃଖ ଦିଏ ନାହିଁ । ସମସ୍ତ ସୁଖ ଦୁଃଖ ପ୍ରାରବ୍ଧ ବଳରେ ହିଁ ମିଳିଥାଏ । ପୁରୁଷାର୍ଥ ଦ୍ୱାରା ଭବିଷ୍ୟତ ପାଇଁ ସଂସ୍କାର ସୃଷ୍ଟି କରାଯାଇ ପାରେ; କିନ୍ତୁ ପ୍ରାରବ୍ଧକୁ ପୂରାପୂରି ଦୂର କରିବା ସମ୍ଭବ ହୁଏ ନାହିଁ ।

ମହର୍ଷି ସୂତ କହିଲେ—ମୁନିଗଣ ! ଅମ୍ବାଙ୍କ ଅଭିଳାଷ ଜାଣିପାରି ଭୀଷ୍ମ ତାଙ୍କୁ ଶାଲ୍ୱଙ୍କ ପାଖକୁ ପଠାଇଦେଲେ । ଶାଲ୍ୱଙ୍କ ପାଖରେ ପହଞ୍ଚି ଅମ୍ବା ଲଜ୍ଜାର ସହିତ ଧୀରେ ଧୀରେ କହିଲେ—ହେ ନରନାଥ ! ମୁଁ ଆପଣଙ୍କର ଶରଣ ପ୍ରାର୍ଥନା କରୁଛି ।

ଶାଲ୍ୱ ପଚାରିଲେ—ତୁମେ କିଏ ? ମୋ ପାଖରୁ କ'ଣ ଆଶା କରୁଛ ?

ଅମ୍ବା କହିଲେ—ମହାରାଜ ! ମୁଁ କାଶୀରାଜାଙ୍କ ଜ୍ୟେଷ୍ଠା କନ୍ୟା । ମୋର ନାମ ଅମ୍ବା । ସ୍ୱୟମ୍ବର ପୂର୍ବରୁ ମୋର ପୂଜ୍ୟ ପିତା କହିଥିଲେ, ଝିଅ ! ମହାରାଜ ଶାଲ୍ୱଙ୍କୁ ବରଣ କରିବୁ । ମୁଁ ବି ଆପଣଙ୍କ ବଳ, ପରାକ୍ରମର ପ୍ରଶଂସା ବହୁଦିନରୁ ଶୁଣିଆସୁଛି । ଆପଣଙ୍କୁ ଦେଖିବାମାତ୍ରେ ମୁଁ ମୋର ସର୍ବସ୍ୱ ଆପଣଙ୍କ ପାଦତଳେ ସମର୍ପଣ କରି ଦେଇଥିଲି । ମୁଁ ମନେ ମନେ ଆପଣଙ୍କୁ ପତିରୂପେ ବରଣ କରି ସାରିଛି । ଏବେ ଆପଣ ମୋତେ ଗ୍ରହଣ କରନ୍ତୁ ।

ଶାଲ୍ୱ ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲେ—ତୁମେ କାଶୀରାଜାଙ୍କ କନ୍ୟା ଅମ୍ବା ? ମୁଁ ବି ତୁମକୁ ମନେ ମନେ ଗ୍ରହଣ କରିଥିଲି । ସେଥିପାଇଁ ଜୀବନକୁ ବାଜି ଲଗାଇ ମୁଁ ଭୀଷ୍ମଙ୍କ ସହିତ ଯୁଦ୍ଧ କଲି । ତୁମକୁ ଶାନ୍ତନୁ ସୁତ ଗାଙ୍ଗେୟ ଭୀଷ୍ମ ବଳପୂର୍ବକ ହରଣ କରି ନେଇଗଲେ । ପୁଣି ତୁମେ ମୋ' ପାଖକୁ କାହିଁକି ଆସିଛ ?

ଅମ୍ବା କହିଲେ—ଭୀଷ୍ମ ମୋତେ ହରଣ କରିନେଇଥିଲେ ସତ; କିନ୍ତୁ ଆପଣ ଜାଣନ୍ତି ସେ ହେଉଛନ୍ତି ବାଲବ୍ରହ୍ମଚାରୀ । ତେଣୁ ବାଟରେ ଆମକୁ ନିଜର କନ୍ୟା ପରି ସେ ବ୍ୟବହାର କରିଥିଲେ । ହସ୍ତିନାପୁରରେ ପହଞ୍ଚିବା ପରେ ଯେତେବେଳେ ସେ ନିଜର ସାନଭାଇ ସହିତ ଆମ ତିନିଜଣଙ୍କୁ ବିବାହ କରିଦେବା ପାଇଁ ସ୍ଥିର କଲେ, ସେତେବେଳେ ମୁଁ ହାତଯୋଡ଼ି କହିଲି—ମୁଁ ମୋର ମନ, ଶରୀର ତଥା ସର୍ବସ୍ୱ ମହାରାଜ ଶାଲ୍ୱଙ୍କୁ ସମର୍ପଣ କରିସାରିଛି । ଆପଣ ମୋତେ ତାଙ୍କ ପାଖକୁ ପଠାଇଦିଅନ୍ତୁ ।

ସେହି ଧାର୍ମିକ ମହାପୁରୁଷ ମୋର ପ୍ରାର୍ଥନା ସ୍ୱୀକାର କରି ଆଦରର ସହିତ ବୃଦ୍ଧ ବ୍ରାହ୍ମଣମାନଙ୍କ ସହିତ ମୋତେ ଆପଣଙ୍କ ପାଖକୁ ପଠାଇ ଦେଲେ । ଏବେ ଆପଣ ମୋତେ ପତ୍ନୀ ରୂପେ ଗ୍ରହଣ କରନ୍ତୁ ।

ଏହା ଶୁଣି ଶାଲ୍ୱ କହିଲେ—ଭଦ୍ରେ ! ମୁଁ ଜଣେ କ୍ଷତ୍ରିୟ । ଅନ୍ୟର ବସ୍ତୁକୁ ମୁଁ ଗ୍ରହଣ କରି ପାରିବି ନାହିଁ ।

ଅମ୍ବା ପୁଣି କହିଲେ—ଦେବ ! ମୁଁ ଅନ୍ୟର ବସ୍ତୁ ନୁହେଁ । ମୁଁ ଆପଣଙ୍କର ଓ ମୋର ମନ ସର୍ବଦା ଆପଣଙ୍କ ଚରଣତଳେ ଆଶ୍ରୟ ନେଇଛି ।

ଶାଲ୍ୱ କହିଲେ—ଦେବି ! ତୁମର ଏପରି କଥା ମୋର ପଦପ୍ରତିଷ୍ଠା, କୁଳ, ଗୋତ୍ର ତଥା ଗୌରବର ସର୍ବଥା ପ୍ରତିକୂଳ । ସବୁ ରାଜାଙ୍କୁ ପରାଜିତ କରି ଭୀଷ୍ମ ତୁମକୁ ନେଇଗଲେ । ଏବେ କୌଣସି ଚରିତ୍ରବାନ୍ ଗୌରବଶାଳୀ ରାଜା ତୁମକୁ ପତ୍ନୀରୂପେ ଗ୍ରହଣ କରିବ ନାହିଁ ।

ଅମ୍ବା କହିଲେ—ନରନାଥ ! ମୋର କୌଣସି ଦୋଷ ନାହିଁ । ମୋ' ଇଚ୍ଛା ବିରୁଦ୍ଧରେ ଭୀଷ୍ମ ମୋତେ ବଳପୂର୍ବକ ହରଣ କରି ନେଇଥିଲେ । ମୁଁ ମନରେ ସର୍ବଦା ଆପଣଙ୍କୁ ହିଁ ଭାବୁଛି । ପ୍ରାର୍ଥନା କରୁଥିବା ଦୁଃଖିନୀ କାମପୀଡ଼ିତା ନାରୀକୁ ଯେ ନିରାଶ କରେ ଗୋବଧ ସଦୃଶ ପାପର ଭାଗୀଦାର ହୁଏ ।

ଶାଲ୍ୱ ଦୃଢ଼ତାର ସହିତ କହିଲେ—ସୁନ୍ଦରି ! ତୁମେ ଥରେ ବା ଲକ୍ଷେଥର ପ୍ରାର୍ଥନା କଲେ ବି ମୁଁ କୌଣସି ଅବସ୍ଥାରେ ତୁମକୁ ପତ୍ନୀରୂପେ ଗ୍ରହଣ କରିପାରିବି ନାହିଁ । ମୋ ଆଶା ତ୍ୟାଗକରି ତୁମର ଯେଉଁଆଡ଼େ ଇଚ୍ଛା ହେଉଛି, ସେଆଡ଼େ ଚାଲିଯାଅ ।

ମହର୍ଷି ସୂତ କହିଲେ— ମୁନିଗଣ ! ବହୁ ଅନୁନୟ ବିନୟ ହୋଇ କହିଲା ପରେ ବି ଯେତେବେଳେ ଶାଲ୍ୱ ଅମ୍ବାଙ୍କୁ ଗ୍ରହଣ କରିବା ପାଇଁ ଅସ୍ୱୀକାର କଲେ ସେତେବେଳେ ରାଜକୁମାରୀ ଅମ୍ବା ନିରାଶ ହୋଇପଡ଼ିଲେ । ସେ ଭାବିବାକୁ ଲାଗିଲେ—ଏବେ ମୁଁ ଭୀଷ୍ମଙ୍କ ପାଖକୁ କେଉଁ ମୁହଁରେ ଯିବି ? ଗଲେ ବି ସେ ମୋତେ ସେଠାରେ ରଖିବେ ନାହିଁ । ପିତାଙ୍କ ଘରକୁ ମଧ୍ୟ ଆଉ ଫେରିଯାଇ ପାରିବି ନାହିଁ । ଏବେ ଆତ୍ମହତ୍ୟା କରିବା ଛଡ଼ା ମୋ ପାଖରେ ଅନ୍ୟ ପନ୍ଥା ନାହିଁ । ଏହା ଭାବି ସେ ଘୋର ଅରଣ୍ୟକୁ ଚାଲିଗଲେ ।

କାଶୀରାଜଙ୍କ ଅଲିଅଳ କନ୍ୟା ରାଜକୁମାରୀ ଅମ୍ବା ବୁଲି ବୁଲି ବନରେ ମୁନିମାନଙ୍କ ଆଶ୍ରମ ପାଖରେ ପହଞ୍ଚିଲେ । ସେଠାରେ ବହୁ ମୁନି ତପସ୍ୟା କରୁଥିବାର ଦେଖିଲେ । ଜୀବନର ମୋହ ତ ସମସ୍ତଙ୍କର ଅଛି । ଅମ୍ବା ଭାବିଲେ—ଆତ୍ମହତ୍ୟା କରି କଣ କରିବି ? ଭୀଷ୍ମଙ୍କ ଯୋଗୁଁ ମୋର ଏହି ଦୁରବସ୍ଥା ଘଟିଛି । ସେ ଯଦି ବଳପୂର୍ବକ ହରଣ କରି ମୋତେ ମୋର ଇଚ୍ଛାବିରୁଦ୍ଧରେ ଆଣି ନ ଥାନ୍ତେ, ତାହାହେଲେ ମୁଁ ରାଜକୁମାରୀ ହୋଇ ବଣରେ ବୁଲିଥାନ୍ତି କାହିଁକି ? ଏହିପରି ଭାବି ଭାବି ସେ କିଛି ନ ଖାଇ ନ ପିଇ ଗୋଟିଏ ଗଛମୂଳରେ ବସିରହି ରାତିଟି କଟାଇଲା ।

ଦ୍ୱିତୀୟ ଦିନ ଅମ୍ବା ମୁନିମଣ୍ଡଳୀ ପାଖରେ ପହଞ୍ଚିଲେ । ମୁନିଗଣ ଅମ୍ବାଙ୍କର ଅଦ୍ଭୁତ ରୂପଲାବଣ୍ୟ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇପଡ଼ିଲେ । ଫୁଲଠାରୁ ଅଧିକ କୋମଳ ସୁକୁମାରୀକୁ ଅନାଥ ପରି ବୁଲୁଥିବାର ଦେଖି ତପୋଧନମାନଙ୍କ ମନରେ କରୁଣା ଜାତ ହେଲା । ଅମ୍ବା କାନ୍ଦି କାନ୍ଦି ନିଜର କରୁଣ କାହାଣୀ ସମସ୍ତଙ୍କ ଆଗରେ କହିଲେ । ମୁନିମାନେ ସେହି କରୁଣ କାହାଣୀ ଶୁଣି ଅତୀବ ଦୁଃଖିତ ହେଲେ । ସେମାନେ ବିଚାର କରିବାକୁ ଲାଗିଲେ ।

ଜଣେ ମୁନି କହିଲେ—ଏହାଙ୍କୁ ଶାଲ୍ୱଙ୍କ ପାଖକୁ ପଠାଇଦେବା ଉଚିତ୍ । ଅନ୍ୟଜଣେ କହିଲେ—ନାଁ, ତାଙ୍କୁ ଭୀଷ୍ମଙ୍କ ପାଖକୁ ପଠାଇ ଦିଆଯାଉ । ଆଉ ଜଣେ କହିଲେ—ତାଙ୍କ ବାପାଙ୍କ ପାଖକୁ ତାଙ୍କୁ ପଠାଇଦେବା ଉଚିତ୍ ।

ଅମ୍ବା କହିଲେ—ମୁନିଗଣ ! ଏହି ତିନୋଟି ସ୍ଥାନ ମଧ୍ୟରୁ ମୁଁ କୌଣସି ସ୍ଥାନକୁ ଯିବା ପାଇଁ ଚାହୁଁ ନାହିଁ । ଆପଣ ମୋତେ ସନ୍ନ୍ୟାସିନୀ କରିଦିଅନ୍ତୁ । ମୁଁ ତପସ୍ୟାରେ ଏ ଶରୀରକୁ ଭସ୍ମ କରିଦେବାକୁ ଚାହୁଁଛି ।

ମୁନିମାନଙ୍କ ମଧ୍ୟରେ ଯେ ସବୁଠାରୁ ବୟସ୍କ ଓ ଶାସ୍ତ୍ରଜ୍ଞ ଥିଲେ ସେ କହିଲେ—ଝିଅ ! ତପସ୍ୟା କରିବା ହସଖେଳର କଥା ନୁହେଁ । ତୁ ପୁଣି ଅତି ସୁକୁମାରୀ ରାଜକନ୍ୟା । ତୋର ଦେହ ତପସ୍ୟା କରିବା ପାଇଁ ସମର୍ଥ ନୁହେଁ । ତୁ ବଣରେ ରହିଲେ . ମୃଗୟା କରିବାକୁ ଆସୁଥିବା ରାଜା, ରାଜକୁମାର ତୋର ରୂପଲାବଣ୍ୟ ଦେଖି ତୋତେ ବିବାହ କରିବା ପାଇଁ ପ୍ରସ୍ତାବ ଦେବେ । ଏହିପରି ନାନାପ୍ରକାର ବିଘ୍ନ ଆସିବ । ତେଣୁ ସବୁଠାରୁ ଭଲକଥା ହେବ ତୁ ବାପାଙ୍କ ପାଖକୁ ଫେରିଯା । ସେଠାରେ ଇଚ୍ଛା ହେଲେ ଭଜନ ପୂଜନ କରିବୁ ନୋହିଲେ ବିବାହ କରିବୁ । ତୋର ତ କୌଣସି ଦୋଷ ନାହିଁ । ତୁ ତ ଗଙ୍ଗା ଜଳପରି ପବିତ୍ର ।

ଅମ୍ବା କହିଲେ—ମୁନିବର ! ମୁଁ ମୃତ୍ୟୁ ବରଣ କରିପାରେଁ; କିନ୍ତୁ କେବେହେଲେ ବାପଘରକୁ ଫେରିଯିବି ନାହିଁ । ବରଂ ଏହିପରି ଘୂରିଆଡ଼େ ବୁଲିବି । ମୋର ଭୀଷ୍ମଙ୍କ ଉପରେ ଭୀଷଣ କ୍ରୋଧ ଜାତ ହେଉଛି ।

ଅମ୍ବାଙ୍କର ପ୍ରତିହିଂସାପୂର୍ଣ୍ଣ କଥା ଶୁଣି ମୁନିମାନେ ତାଙ୍କୁ ବହୁତ ବୁଝାଇଲେ । କିନ୍ତୁ ଅମ୍ବା କୌଣସିମତେ ସନ୍ତୁଷ୍ଟ ହୋଇପାରିଲେ ନାହିଁ । ଏହି ସମୟରେ ସଞ୍ଜୟବଂଶୀୟ ରାଜର୍ଷି ହୋତ୍ରବାହନ ଆସି ସେଠାରେ ପହଞ୍ଚିଲେ । ସେହି ବୃଦ୍ଧ ରାଜର୍ଷିଙ୍କୁ ଆସିବାର ଦେଖି ମୁନିମାନେ ତାଙ୍କୁ ସ୍ୱାଗତ ଜଣାଇଲେ ଓ ଅର୍ଘ୍ୟଦାନ କରି ଯଥାବିଧି ଆସନରେ ବସାଇଲେ ।

ରାଜର୍ଷି ହୋତ୍ରବାହନ ମୁନିମାନଙ୍କୁ ପଚାରିଲେ—ମୁନିଗଣ ! ଆଜି ଆପଣମାନେ ଚିନ୍ତିତ ଦେଖାଯାଉଛନ୍ତି କାହିଁକି ? କେଉଁ ବିଷୟରେ ବାଦବିବାଦ ଚାଲିଛି ? ଏ ସରଳା ଝିଅଟି କିଏ ?

ଏହି ପ୍ରଶ୍ନ ଶୁଣି ମୁନିମାନେ ଅମ୍ବାଙ୍କର ସମସ୍ତକଥା କହିଲେ । ରାଜର୍ଷି ହୋତ୍ରବାହନ ସବୁକଥା ଶୁଣି ନିଜର କମ୍ପିତ ହସ୍ତରେ ଅମ୍ବାଙ୍କୁ କୋଳକୁ ନେଲେ ଓ ତାଙ୍କର ମସ୍ତକ ଆଘ୍ରାଣ କରି କହିଲେ—ଝିଅ ! ତୁ ମୋତେ ଜାଣି ନ ଥିବୁ, ତୁ ଜନ୍ମ ହେବା ପୂର୍ବରୁ ମୁଁ ରାଜ୍ୟ ଛାଡ଼ି ବଣକୁ ଆସିଥିଲି । ମୁଁ ତୋର ଜେଜେ ଅର୍ଥାତ୍ ଅଜା । ତୋର ଏଇ ଅବସ୍ଥା ଦେଖି ମୁଁ ଅତ୍ୟନ୍ତ ଦୁଃଖିତ । କହ ମୁଁ ତୋର କି ଉପକାର କରିବି ?

ଅମ୍ବା କହିଲେ—ମୋର ଏ ଦୁର୍ଦ୍ଦଶା ଭୀଷ୍ମଙ୍କ ପାଇଁ ହୋଇଛି । ତେଣୁ ଭୀଷ୍ମଙ୍କ ଉପରେ ମୋର ଭୀଷଣ ରାଗ ହେଉଛି ।

ରାଜର୍ଷି ହୋତ୍ରବାହନ କହିଲେ—ନା, ଝିଅ ! ବୃଥାରେ କାହାର ଉପରେ କ୍ରୋଧ କରିବା ଉଚିତ ନୁହେଁ । ଭାଗ୍ୟ ଯୋଗୁଁ ସୁଖ ଦୁଃଖ ମିଳେ । ତୁ ଶାଲ୍ୱଙ୍କୁ ବିବାହ କରିବା ପାଇଁ ଚାହୁଁଛୁ ବୋଲି ଭୀଷ୍ମ ତ' ଜାଣି ନ ଥିଲେ । ସେ ଯେତେବେଳେ ଜାଣିଲେ ସେତେ-ବେଳେ ଶାଲ୍ୱଙ୍କ ପାଖକୁ ତୋତେ ପଠାଇଦେଲେ ।

ଅମ୍ବା କହିଲେ—କିନ୍ତୁ ମୁଁ ଯେ ପର୍ଯ୍ୟନ୍ତ ଭୀଷ୍ମଙ୍କର ପ୍ରତିଶୋଧ ନ ନେଇଛି ସେ ପର୍ଯ୍ୟନ୍ତ ଶାନ୍ତି ପାଇବି ନାହିଁ ।

ଏହା ଶୁଣି ହୋତ୍ରବାହନ ହସି ହସି କହିଲେ—ଝିଅ ! ଭୀଷ୍ମଙ୍କର ପ୍ରତିଶୋଧ ନେବା ସହଜ ନୁହେଁ । ଦେବତାମାନେ ମଧ୍ୟ ଯୁଦ୍ଧରେ ତାଙ୍କୁ ପରାଜିତ କରି ପାରିବେ ନାହିଁ । ସେହି ବାଲବ୍ରହ୍ମଚାରୀଙ୍କୁ କାଳ ମଧ୍ୟ ନିଜ ଇଚ୍ଛାରେ ମାରିପାରିବ ନାହିଁ । ହଁ ଗୋଟିଏ ଉପାୟ ଅଛି । ତୁ ଭଗବାନ୍ ପରଶୁରାମଙ୍କ ଶରଣ ପ୍ରାର୍ଥନା କର, ସେ ସବୁକିଛି କରିବା ପାଇଁ ସମର୍ଥ । ଭୀଷ୍ମ ତାଙ୍କର ଶିଷ୍ୟ । ସେ ଇଚ୍ଛାକଲେ ଭୀଷ୍ମଙ୍କୁ ଆଦେଶ ଦେଇ ତୋତେ ପୁଣି ଗ୍ରହଣ କରିନେବେ । ସେ ଶାଲ୍ୱଙ୍କୁ ମଧ୍ୟ ଆଦେଶ ଦେଇପାରିବେ ଏବଂ ଦରକାର ପଡ଼ିଲେ ସେ ଭୀଷ୍ମଙ୍କ ସହିତ ଯୁଦ୍ଧ ବି କରିପାରିବେ । ବର୍ତ୍ତମାନ ସେ ମହେନ୍ଦ୍ର ପର୍ବତରେ ଘୋର ତପସ୍ୟା କରୁଛନ୍ତି ।

ଏହା ଶୁଣି ଅମ୍ବା ଖୁସି ହୋଇଗଲା । ସେ ଭଗବାନ୍ ପରଶୁରାମଙ୍କୁ ସାକ୍ଷାତ୍ କରିବା ପାଇଁ ମହେନ୍ଦ୍ର ପର୍ବତ ଅଭିମୁଖେ ବାହାରିଲା । ସେହି ସମୟରେ ପରଶୁରାମଙ୍କ ପ୍ରିୟ ଶିଷ୍ୟ ଅକୃତବ୍ରଣ ସେଠାରେ ଆସି ପହଞ୍ଚିଲେ । ସମସ୍ତେ ତାଙ୍କୁ ସ୍ୱାଗତ ସତ୍କାର କଲେ । ପରସ୍ପର ଆଳାପ ଆଲୋଚନା ହେବା ସମୟରେ ରାଜର୍ଷି ହୋତ୍ରବାହନ ଅମ୍ବାଙ୍କ କଥା ତାଙ୍କୁ କହିଲେ ଓ ଭଗବାନ୍ ପରଶୁରାମଙ୍କ ଠିକଣା ପଚାରିଲେ ।

ମହାମୁନି ଅକୃତବ୍ରଣ କହିଲେ—ରାଜନ୍ ! ପରଶୁରାମ ମହାଶୟ ଏଇ ଜଙ୍ଗଲରେ ତପସ୍ୟା କରୁଛନ୍ତି । ଆପଣ ଏଠାରେ ଅଛନ୍ତି ବୋଲି ସେ ଜାଣନ୍ତି । ସେ ଆପଣମାନଙ୍କ ସହିତ ସାକ୍ଷାତ କରିବା ପାଇଁ ଏଠାକୁ ଆସିବେ ।

ଏହା ଶୁଣି ଅମ୍ବା ଓ ହୋତ୍ରବାହନ ବହୁତ ଆନନ୍ଦିତ ହେଲେ । ସେ ରାତିଟି ଏହିପରି ଆଲୋଚନାରେ କଟିଲା । ସକାଳେ ନିତ୍ୟକର୍ମ ସାରି ସମସ୍ତେ ଯେତେବେଳେ ଅଗ୍ନିଶାଳାରେ ଆସି ବସିଲେ ଠିକ୍ ସେତେବେଳେ ଜଟାଜୁଟଧାରୀ ଭଗବାନ୍ ପରଶୁରାମ ଆସି ପହଞ୍ଚିଲେ । ତାଙ୍କୁ ଦେଖି ସମସ୍ତେ ଠିଆହୋଇ ପଡ଼ିଲେ । ମୁନି ପହଞ୍ଚିଲା ପରେ ସମସ୍ତେ ତାଙ୍କୁ ପ୍ରଣାମ କଲେ । ଯଥାବିଧି ପୂଜା ଅର୍ଚ୍ଚନା ପରେ ତାଙ୍କୁ ଉଚ୍ଚ ଆସନରେ ବସାଇଲେ । ଭଗବାନ୍ ପରଶୁରାମ ମୁନିମାନଙ୍କର ପୂଜା ସ୍ୱୀକାର କରି ସେମାନଙ୍କ ତପସ୍ୟା, ଅଗ୍ନିହୋତ୍ର, ପଶୁପକ୍ଷୀ ତଥା ବୃକ୍ଷଲତାଦିଙ୍କର କୁଶଳ ପଚାରି ବୁଝିଲେ । ଏହାପରେ ରାଜର୍ଷି ହୋତ୍ରବାହନଙ୍କ ସହିତ ବିଭିନ୍ନ ପ୍ରସଙ୍ଗର ଆଲୋଚନାବେଳେ

ହୋତ୍ରବାହନ ନିଜ ନାତୁଣୀ ଅମ୍ବାଙ୍କର କାହାଣୀ କହିଲେ । ଅମ୍ବାର ଅବସ୍ଥା, ଶରୀରର ସୁକୁମାରତା ଓ ସରଳ, ନିରପରାଧ ଚେହେରାକୁ ଦେଖି ପରଶୁରାମଙ୍କ ହୃଦୟରେ ଦୟା ଜାତ ହେଲା । ସେ ଅମ୍ବାଙ୍କୁ କହିଲେ—ଝିଅ ! ତୁ ମୋ'ଠାରୁ କଣ ଆଶା କରୁଛୁ । ଭୀଷ୍ମ ମୋର ଶିଷ୍ୟ । ତୁ କହିଲେ ଭୀଷ୍ମଙ୍କୁ କହିବି ନୋହିଲେ ଶାଲ୍ୱଙ୍କୁ କହିବି ଏବଂ ଯାହାକୁ ଚାହୁଁ ତା' ସହିତ ତୋର ବିବାହ କରାଇଦେବି ।

ଅମ୍ବା କହିଲେ—ପ୍ରଭୋ ! ଶାଲ୍ୱ ମୋତେ ଅପମାନିତ କରିଛନ୍ତି । ତେଣୁ ମୁଁ ତାଙ୍କୁ ବିବାହ କରିବା ପାଇଁ ଚାହୁଁ ନାହିଁ । ମୋର ଏ ଦୁର୍ଦ୍ଦଶା ଭୀଷ୍ମଙ୍କ ଯୋଗୁ ଘଟିଛି । ମୁଁ ତାର ପ୍ରତିଶୋଧ ନେବା ପାଇଁ ଚାହୁଁଛି ।

ପରଶୁରାମ କହିଲେ—ଝିଅ ! ଭୀଷ୍ମର ତ ଏଥିରେ କିଛି ଦୋଷ ନାହିଁ । ସେ ଧର୍ମପୂର୍ବକ କ୍ଷତ୍ରିୟବିଧିରେ ତୋତେ ଅପହରଣ କରି ନେଇଥିଲା । ତୁ ଶାଲ୍ୱକୁ ବିବାହ କରିବାକୁ ଚାହୁଁଛୁ ବୋଲି ତ ସେ ଜାଣିନଥିଲା । ତୋର ମନୋଗତ ଭାବ ଯେତେବେଳେ ସେ ଜାଣିଲା ସେତେବେଳେ ସଙ୍ଗେ ସଙ୍ଗେ ତୋତେ ଶାଲ୍ୱ ପାଖକୁ ପଠାଇଦେଲା । ଏବେ ମୁଁ ଭୀଷ୍ମ ଯେପରି ତୋତେ ସ୍ୱୀକାର କରିବ ସେହି ଉପାୟ କରୁଛି । ସେ ତା'ର ଭାଇ ସହିତ ତୋର ବିବାହ କରିଦେବ । ତୁମେ ତିନି ଭଉଣୀ ସାଙ୍ଗରେ ଓ ସୁଖରେ ରହିବ ।

ଅମ୍ବା ପଚାରିଲେ—ଯଦି ସେ ସ୍ୱୀକାର ନ କରିବେ ?

ପରଶୁରାମ କହିଲେ—କରିବ ନାହିଁ କାହିଁକି ? ସେ ମୋର ଶିଷ୍ୟ । ସେ ମୋ' କଥା ନ ମାନିଲେ ମୁଁ ତାକୁ ଯୁଦ୍ଧରେ ପରାସ୍ତ କରିବି । କିନ୍ତୁ ପ୍ରଥମେ ମୁଁ ତାକୁ ବୁଝାଇବି । ମୁଁ ଅସ୍ତ୍ରଶସ୍ତ୍ର ତ୍ୟାଗ କରିଥିଲେ ମଧ୍ୟ ଧର୍ମ ରକ୍ଷା ପାଇଁ ବ୍ରାହ୍ମଣମାନଙ୍କ ଆଦେଶ ନେଇ ପୁଣି ଅସ୍ତ୍ର ଧାରଣ କରିବି ।

ଅମ୍ବା ଜାଣିଥିଲେ, ଭୀଷ୍ମଙ୍କ ପରି ଆତ୍ମାଭିମାନୀ, ଜିଦ୍‌ଖୋର ବୀରାଗ୍ରଣୀ ପୁରୁଷ, କେବେହେଲେ ପରପୁରୁଷକୁ ପ୍ରେମ କରୁଥିବା ମୋତେ ସ୍ୱୀକାର କରିବେ ନାହିଁ । ଠିକ୍ ଅଛି, ପରଶୁରାମଙ୍କ ସହିତ ତାଙ୍କର ଯୁଦ୍ଧ ହେଉ । ଏହା ଭାବି ଅମ୍ବା କହିଲେ—ଭଗବନ୍ ! ଆପଣ ଯାହା ଠିକ୍ ବୋଲି ଭାବୁଛନ୍ତି ତାହା କରନ୍ତୁ, ମୋର ଆପତ୍ତି ନାହିଁ ।

ନିଜ କଥା ଉପରେ ଜୋର୍ ଦେଇ ପରଶୁରାମ କହିଲେ—ଅବଶ୍ୟ ମୋର ଆଦେଶ ଲଙ୍ଘନ କଲେ ମୁଁ ଭୀଷ୍ମଙ୍କୁ ମାରିଦେବି । ଏହିପରି ପ୍ରତିଜ୍ଞା କରି ଅମ୍ବାଙ୍କୁ ସାଙ୍ଗରେ ନେଇ ପରଶୁରାମ ହସ୍ତିନାପୁର ଗଲେ । ବହୁ ମୁନି ଋଷି କୌତୁହଳ ବଶତଃ ପରଶୁରାମଙ୍କ ସାଙ୍ଗରେ ଗଲେ ।

ଋଷି, ମୁନିମାନଙ୍କ ଗହଣରେ ଭଗବାନ୍ ପରଶୁରାମ କୁରୁକ୍ଷେତ୍ରରେ ପହଞ୍ଚିଲେ । ସେଠାରେ ସରସ୍ୱତୀ ନଦୀକୂଳରେ ସମସ୍ତେ ବିଶ୍ରାମ ନେଲେ । ପରଶୁରାମ ନିଜର ଆଗମନ ସମ୍ବାଦ ସୂଚନା ଦେବବ୍ରତ ଗାଙ୍ଗେୟଙ୍କ ପାଖକୁ ପଠାଇ ଦେଲେ । ଗୁରୁଦେବ ପରଶୁରାମଙ୍କ ଆଗମନ ବାର୍ତ୍ତା ଶୁଣି ଭୀଷ୍ମ ଆନନ୍ଦିତ ହେଲେ ଓ ମନ୍ତ୍ରୀ, ପୁରୋହିତ, ବୃଦ୍ଧ ବ୍ରାହ୍ମଣମାନଙ୍କୁ

ସାଙ୍ଗରେ ନେଇ ପରଶୁରାମଙ୍କୁ ସାକ୍ଷାତ କରିବା ପାଇଁ ସରସ୍ୱତୀ ନଦୀକୂଳକୁ ଗଲେ । ଭୀଷ୍ମ ଗୁରୁଦେବଙ୍କ ପାଖରେ ପହଞ୍ଚି ପ୍ରେମପୂର୍ବକ ତାଙ୍କୁ ପୂଜା କଲେ, ମଧୁପର୍କ ଅର୍ଘ୍ୟ ଓ ଗାଈ ଉପହାର ଦେଲେ । ପରଶୁରାମ ଭୀଷ୍ମଙ୍କ ରାଜ୍ୟ, କୋଷ, ମନ୍ତ୍ରୀ, ଅମାତ୍ୟ, ସେବକ, ପ୍ରଜା ତଥା ପରିବାରର କୁଶଳ ପଚାରିଲେ । ତା'ପରେ କହିଲେ—ରାଜନ୍ ! ମୁଁ ଏକ ବିଶେଷ କାର୍ଯ୍ୟରେ ତୁମ ପାଖକୁ ଆସିଛି ।

ବିନମ୍ର ଭାବେ ଭୀଷ୍ମ କହିଲେ—ଆଦେଶ ଦିଅନ୍ତୁ ଗୁରୁଦେବ !

ପରଶୁରାମ ଋହି ରହି ନିଜର ଅଧିକାର ଜାହିର କରିବା ସହିତ ସଙ୍ଗେ କହିଲେ—ତୁମେ ତ ଜାଣ ଅମ୍ବା, ନିର୍ଦ୍ଦୋଷା ଓ ନିରପରାଧିନୀ । ତା'ର ଚରିତ୍ରରେ କୌଣସି ଦୋଷ ନାହିଁ । ତୁମେ ତାକୁ ଶାଲ୍ୱ ପାଖକୁ ପଠାଇ ଉଚିତ କାର୍ଯ୍ୟ କରିଛ; କିନ୍ତୁ ଶାଲ୍ୱ ତାକୁ ସ୍ୱୀକାର କଲେ ନାହିଁ । ତେଣୁ ତୁ ନିଜର ସମ୍ମାନରକ୍ଷା ବିଚାରିବାର ପାଇଁ ତାକୁ ପୁଣି ଗ୍ରହଣ କର ।

ଭୀଷ୍ମ କହିଲେ—ଭଗବନ୍ ! ଏପରି ତ ହୋଇପାରିବ ନାହିଁ ।

ପରଶୁରାମ ଉତ୍ତେଜିତ ହୋଇ କହିଲେ—କାହିଁକି ହୋଇ ପାରିବ ନାହିଁ ?

ଭୀଷ୍ମ କହିଲେ—ତା'ର ଅନ୍ୟ ପୁରୁଷ ସହିତ ପ୍ରେମ ଅଛି ।

ପରଶୁରାମ କହିଲେ—ସେ ସମ୍ପର୍କ ଦୈହିକ ନୁହେଁ ମାନସିକ । ତେଣୁ ସେଥିରେ ଆପତ୍ତିର କାରଣ ନାହିଁ ।

ଭୀଷ୍ମ କହିଲେ—ଭଗବାନ୍ ! ମଣିଷର ମନ ହିଁ ବନ୍ଧନ ଓ ମୁକ୍ତିର କାରଣ । ଏ କ୍ଷେତ୍ରରେ ଏପରି ସ୍ତ୍ରୀ ସହିତ ବିବାହ କରିବା ଉଚିତ ନୁହେଁ, ଯାହାର ଅନ୍ୟ ପୁରୁଷ ସହିତ ପ୍ରେମ ସମ୍ପର୍କ ଅଛି । ଏହା ଆର୍ଯ୍ୟ ସଂସ୍କୃତିର ବିରୋଧାଚରଣ କରୁଛି ।

ଏହା ଶୁଣିବାମାତ୍ରେ ସର୍ପ ପରି ଗର୍ଜି ଉଠି ପରଶୁରାମ କହିଲେ—ଭୀଷ୍ମ ! ତୁ ନିଜକୁ ଜଣେ ବଡ଼ ପଣ୍ଡିତ ବୋଲି ଭାବୁଛୁ । ଝିଅକୁ ଅପହରଣ କରି ତୁ ତାକୁ ସ୍ତ୍ରୀ ଧର୍ମରୁ ଭ୍ରଷ୍ଟ କରିଛୁ । ସେଥିପାଇଁ ତା'ର ପତି ତାକୁ ଗ୍ରହଣ କଲା ନାହିଁ । ଏହାର ଏକ ମାତ୍ର ସମାଧାନ ହେଉଛି ତୁ ଏହାକୁ ଗ୍ରହଣ କର । ନୋହିଲେ ମନ୍ତ୍ରିମାନଙ୍କ ସହିତ ତୋତେ ମୁଁ ମାରିଦେବି ।

ଅତିବ ନମ୍ରତାର ସହିତ ଭୀଷ୍ମ କହିଲେ—ଗୁରୁଦେବ ! ମୁଁ ତ ଆପଣଙ୍କର ପ୍ରିୟ-ଶିଷ୍ୟ । କେଉଁ ଅପରାଧରୁ ଆପଣ ମୋତେ ମାରି ଦେବା ପାଇଁ ଚାହୁଁଛନ୍ତି ? ଆପଣ ନିଜେ ବିଚାର କରନ୍ତୁ, ଅମ୍ବା ସ୍ପଷ୍ଟଭାବେ କହିଲେ—ମୁଁ ଶାଲ୍ୱଙ୍କୁ ପ୍ରେମ କରୁଛି । ଏହା ଶୁଣି ମୁଁ ତାଙ୍କର ଇଚ୍ଛା ଅନୁସାରେ ଶାଲ୍ୱଙ୍କ ପାଖକୁ ପଠାଇଲି । ଯଦି ମୁଁ ପୁଣି ତାଙ୍କୁ ଗ୍ରହଣ କରିବି ତେବେ ଲୋକେ କହିବେ ମୁଁ କାମବଶୀଭୂତ ହୋଇ ଏପରି କାମକଲି । କିଏ କହିବ ଲୋଭବଶତଃ, ଆଉ କିଏ କହିବ ପରଶୁରାମଙ୍କୁ ଭୟ କରି ଭୀଷ୍ମ ଏପରି ଅନୁଚିତ

କାର୍ଯ୍ୟ କଲେ । ଭଗବନ୍ ! ମୁଁ କାମ, କ୍ରୋଧ, ଲୋଭ ତଥା ଭୟର ଅଧୀନ ହୋଇ କୌଣସି ଅନୁଚିତ କରିବ ନାହିଁ ।

ଏହା ଶୁଣି ପରଶୁରାମ ଆତୁର ରାଗିଗଲେ । ସେ କହିଲେ—ତୁ ମୋ'ର ଶିଷ୍ୟ ହୋଇ ମୋର ଆଦେଶ ପାଳନ କରିବୁ ନାହିଁ ? ତାହାହେଲେ ତୁ ବଧଯୋଗ୍ୟ । ମୁଁ ତୋ' ସହିତ ଯୁଦ୍ଧ କରିବ । ତୁ ପ୍ରସ୍ତୁତ ହୋଇଯା' ।

ଭୀଷ୍ମ ଏହା ଶୁଣିବା ମାତ୍ରେ କ୍ରୋଧାନ୍ୱିତ ହୋଇପଡ଼ିଲେ । ସେ କହିଲେ—ମହର୍ଷେ ! ମୁଁ କାଳ ସହିତ ବି ଯୁଦ୍ଧ ପାଇଁ ପ୍ରସ୍ତୁତ । କ୍ଷତ୍ରିୟ କେବେ ଯୁଦ୍ଧକୁ ଭୟ କରେନାହିଁ । ମୁଁ ଅମ୍ବାକୁ କୌଣସି ମତେ ଗ୍ରହଣ କରିବ ନାହିଁ, କରିବ ନାହିଁ, କରିବ ନାହିଁ, ଆପଣ ମୋ' ସହିତ ଯୁଦ୍ଧ କରନ୍ତୁ ପଛକେ । ଆପଣ ମୋର ଗୁରୁ । ମୁଁ ପ୍ରଥମେ ଆପଣଙ୍କୁ ପ୍ରହାର କରି ପାରିବ ନାହିଁ; କିନ୍ତୁ ଆପଣ ଯଦି ଅସ୍ତ୍ର ଶସ୍ତ୍ର ଧରି କ୍ଷାତ୍ର ଧର୍ମ ଅନୁଯାରେ ମୋ' ସହିତ ଯୁଦ୍ଧ କରିବେ ତେବେ ମୁଁ ପଶ୍ଚାତ୍ପଦ ହେବି ନାହିଁ । ଆପଣଙ୍କ ପାଇଁ, ବେଦ ବ୍ରାହ୍ମଣାଦିଙ୍କ ପାଇଁ ମୋର ହାର୍ଦ୍ଦିକ ସମ୍ମାନ ଓ ଆଦର ଅଛି । ଅସ୍ତ୍ର ଶସ୍ତ୍ର ଧରି ସମ୍ମୁଖ ଯୁଦ୍ଧରେ ଯୁଦ୍ଧ କରୁଥିବା ବ୍ରାହ୍ମଣଙ୍କୁ ମଧ୍ୟ ବଧ କରିବା ଦୋଷାବହ ନୁହେଁ ।

ଭୀଷ୍ମଙ୍କର ଏପରି ଅଭିମାନ ସୂଚକ ବାକ୍ୟ ଶୁଣି ଅଭିମାନୀ ପରଶୁରାମ ହସି ଉଠିଲେ ଓ ବ୍ୟଙ୍ଗ ସ୍ୱରରେ କହିଲେ—ସାଧୁ ସାଧୁ, ବଡ଼ ଆନନ୍ଦର କଥା । ଭୀଷ୍ମ ! ତୁ ମୋର ଶିଷ୍ୟ ହୋଇ ମୋ'ର ସହିତ ଯୁଦ୍ଧ କରିବୁ ? ଯା, ନିଜର ବନ୍ଧୁ ବାନ୍ଧବଙ୍କ ସହିତ ଶେଷ ସାକ୍ଷାତ କରି ଆ । ଅସ୍ତ୍ର ଶସ୍ତ୍ରରେ ସୁସଜ୍ଜିତ ହୋଇ କୁରୁକ୍ଷେତ୍ରକୁ ଆସିବୁ । ମୁଁ ସେଠାକୁ ଯାଉଛି । ସଂସାର ଆଜି ଦେଖୁ, ଗର୍ବାଭିମାନୀ ଭୀଷ୍ମ ଆଜି ଏପରି ମୃତ୍ୟୁ ବରଣ କରୁଛି ଓ ଶରୀରକୁ ମାଂସଭୋଜୀମାନେ କିପରି ଖାଉଛନ୍ତି ?

ଏହାଶୁଣି ଭୀଷ୍ମ ଗୁରୁଦେବ ପାଦତଳେ ପ୍ରଣାମ କଲେ ଓ କହିଲେ—ଆପଣ ମଧ୍ୟ ପ୍ରସ୍ତୁତ ହୋଇ ଆସନ୍ତୁ । ମୁଁ ମା'ଙ୍କଠାରୁ ଅନୁମତି ନେଇ ଆସୁଛି । ଏହା କହି ଭୀଷ୍ମ ଗୁରୁଙ୍କ ଚରଣ ବନ୍ଦନା କରି ହସ୍ତିନାପୁର ଗଲେ । ପରଶୁରାମ ମଧ୍ୟ ଋଷି, ମୁନି ଓ ଅମ୍ବାଙ୍କୁ ସାଙ୍ଗରେ ନେଇ ସରସ୍ୱତୀ କୂଳ ତ୍ୟାଗ କଲେ ଓ ସ୍ୟମନ୍ତ ପଞ୍ଚକ କ୍ଷେତ୍ର ନିକଟବର୍ତ୍ତୀ ରଣାଙ୍ଗନରେ ଭୀଷ୍ମଙ୍କୁ ଅପେକ୍ଷା କରି ରହିଲେ ।

ଦେବବ୍ରତ ଭୀଷ୍ମ ସବୁ ଘଟଣା ମାତା ସତ୍ୟବତୀଙ୍କୁ ଜଣାଇଲେ । ସତ୍ୟବତୀ ପ୍ରଥମେ ଭୀତା ହୋଇପଡ଼ିଲେ ବି ପରେ ଧୈର୍ଯ୍ୟ ଧାରଣ କରି ପୁତ୍ରକୁ ଯୁଦ୍ଧ କରିବା ପାଇଁ ଅନୁମତି ଦେଲେ । ସେ ନିଜେ ଭୀଷ୍ମଙ୍କର ସ୍ୱସ୍ତ୍ୟୟନ କଲେ । ବ୍ରାହ୍ମଣମାନେ ଆଶୀର୍ବାଦ ଦେଲେ । ମନ୍ତ୍ରୀ, ପୁରୋହିତ ପ୍ରଭୃତି ସଜଳ ନୟନରେ ବିଦାୟ ଦେଲେ । ପ୍ରଜାବର୍ଗ ଭୀଷ୍ମଙ୍କୁ ମଙ୍ଗଳ-କାମନା ଜଣାଇଲେ ।

ଭୀଷ୍ମ ଶୁଭ୍ରବସ୍ତ୍ର ପରିଧାନ କରି ଶ୍ୱେତ ପୁଷ୍ପମାଳା ପିନ୍ଧିଲେ । ଧନୁଃଶର ଧରି ରଥରେ ବସି ଭୀଷ୍ମ ପରଶୁରାମଙ୍କ ସହିତ ଯୁଦ୍ଧ କରିବାପାଇଁ କୁରୁକ୍ଷେତ୍ର ଯାତ୍ରା କଲେ । କୁରୁକ୍ଷେତ୍ରରେ

ପହଞ୍ଚି ସେ ନିଜର ଦିବ୍ୟ ଶଙ୍ଖ ଧ୍ୱନି କଲେ । ସମସ୍ତେ ସେହି ଧ୍ୱନିକୁ ଯୁଦ୍ଧର ସୂଚନା ବୋଲି ଜାଣିଲେ । ଆକାଶରେ ଦେବତା ଓ ଦେବାଙ୍ଗନାମାନେ ଦଳ ଦଳ ହୋଇ ସମବେତ ହେଲେ । ଋଷି, ମୁନିମାନେ ଗୃହଦ୍ୱାରରେ ଠିଆ ହୋଇ ଭୀଷ୍ମ ଓ ପରଶୁରାମଙ୍କ ଯୁଦ୍ଧ ଦେଖିବାପାଇଁ ଉତ୍ସୁକ ହୋଇ ଉଠିଲେ ।

ଗାଙ୍ଗେୟ ଭୀଷ୍ମ ଯେତେବେଳେ ଅସ୍ତ୍ରଶସ୍ତ୍ର ଧରି ପରଶୁରାମଙ୍କ ସହିତ ଯୁଦ୍ଧ କରିବା ପାଇଁ ଉଦ୍ୟତ ହେଲେ ସେତେବେଳେ ପୁତ୍ର ସ୍ନେହ କାତରା ଦେବୀ ଗଙ୍ଗା ନିଜର ଦିବ୍ୟ ରୂପରେ ଭୀଷ୍ମଙ୍କ ପାଖକୁ ଆସି କହିଲେ—ପୁଅ ! ତୁ କି ଅନର୍ଥ କରିବାକୁ ଯାଉଛୁ ? ବିଶ୍ୱବିଜୟୀ ପରଶୁରାମଙ୍କ ସହିତ ଯୁଦ୍ଧ କରିବା ଉଚିତ ନୁହେଁ । ତୁ ମୋର ଏକମାତ୍ର ପୁତ୍ର । ପରଶୁରାମ ଏକୋଇଶ ବାର ପୃଥିବୀ ନିଃକ୍ଷତ୍ରିୟ କରିଥିଲେ । ତାଙ୍କ ସହିତ ଯୁଦ୍ଧ କରନା ।

ଭୀଷ୍ମ ବୀରତ୍ୱ ପୂର୍ଣ୍ଣ ସ୍ୱରରେ କହିଲେ—ମା, ଗୁରୁଦେବ ପରଶୁରାମ ମୋତେ ଭୟ ଦେଖାଇ ଅନୁଚିତ କାର୍ଯ୍ୟ କରିବାପାଇଁ କହୁଛନ୍ତି । ତାଙ୍କ କଥା ଗ୍ରାହ୍ୟ, ସ୍ୱୟଂ ଯମରାଜ ଆସିଲେ ବି ମୁଁ ତାଙ୍କ ଆଗରେ ନମ୍ର ହେବି ନାହିଁ । ମୋର ତ କୌଣସି ଅପରାଧ ନାହିଁ । ପରଶୁରାମ ମୋତେ ଯୁଦ୍ଧ ପାଇଁ ଆହ୍ୱାନ କରୁଛନ୍ତି, ମୁଁ ପଛେଇଯିବି କିପରି ?

ଏହା ଶୁଣି ଗଙ୍ଗାଦେବୀ ପରଶୁରାମଙ୍କ ପାଖକୁ ଯାଇ ବହୁ ଅନୁନୟ ବିନୟ ହୋଇ ଯେତେବେଳେ ବୁଝାଇଲେ ସେତେବେଳେ ପରଶୁରାମ କହିଲେ—ମୋର କୌଣସି ଆପତ୍ତି ନାହିଁ । କିନ୍ତୁ ଭୀଷ୍ମ ଅଭିମାନବଶତଃ ଜିଦ୍ କରୁଛି । ମୋ' କଥା ମାନିନେଲେ ଯୁଦ୍ଧ କରିବାର ପ୍ରଶ୍ନ ଉଠିବ ନାହିଁ ।

ଗଙ୍ଗା ଏହା ଶୁଣି ପୁଣି ଭୀଷ୍ମଙ୍କ ପାଖକୁ ଆସି କହିଲେ—ପୁଅ ! ତୁ ନିଜ ଗୁରୁଙ୍କ କଥା ମାନିଯା' ।

ଭୀଷ୍ମ କହିଲେ—ମା, ତୁମେ ଏ ବିଷୟରେ ମୁଣ୍ଡ ଖେଳାଅ ନାହିଁ । ମୁଁ ଯୁଦ୍ଧରୁ ଓହରି ଯିବି ନାହିଁ । ଭୟ କରି ମୁଁ ପଦ ଓ ପ୍ରତିଷ୍ଠାର ବିରୁଦ୍ଧ କାର୍ଯ୍ୟ କରିବି ନାହିଁ ।

ଗଙ୍ଗା ଦେବୀ ଉଭୟଙ୍କର ଜିଦ୍ ଦେଖି ନିରୁପାୟ ହୋଇ ପୁଅର ମଙ୍ଗଳ କାମନା କରି ଅନ୍ତର୍ଦ୍ଧାନ ହୋଇଗଲେ । ଭୀଷ୍ମ ଦିବ୍ୟରଥରେ ବସିଥିଲେ । ଚତୁର ସାରଥି ତାଙ୍କ ରଥ ଚାଳୁଥିଲେ । ପରଶୁରାମଙ୍କ ରଥ ବି ଅଲୌକିକ ପ୍ରକାର ଥିଲା । ତାଙ୍କ ଶିଷ୍ୟ ଅକୃତ-ବ୍ରଣ ରଥର ସାରଥି ହୋଇଥିଲେ । ଜଟାଜୁଟ ମଣ୍ଡିତ ପରଶୁରାମ, ମୂର୍ତ୍ତିମାନ ବୀର ରସ ପରି ଦେଖାଯାଉଥିଲେ । ସେ ପ୍ରଥମେ ଭୀଷ୍ମଙ୍କୁ ଲକ୍ଷ୍ୟ କରି ତିନୋଟି ବାଣ ମାରିଲେ । ଭୀଷ୍ମ ହଠାତ୍ ରଥ ଠିଆ କରି ତଳକୁ ଓହ୍ଲାଇ ପଡ଼ିଲେ । ମୁନି, ଋଷି ଦେବଗଣ ଦେବବ୍ରତଙ୍କ ବ୍ୟବହାର ଦେଖି ଚକିତ ହୋଇପଡ଼ିଲେ । ଭୀଷ୍ମ ଧନୁଶର ରଥରେ ରଖିଦେଲେ । ସେ ଖାଲି ପାଦରେ ଚାଲି ଚାଲି ପରଶୁରାମଙ୍କ ପାଖରେ ପହଞ୍ଚିଲେ, ଯଥାବିଧି ପୂଜା ଓ ପ୍ରଣାମ କଲେ । ପୁଣି ହାତ ଯୋଡ଼ି କହିଲେ—ଗୁରୁଦେବ ! ମୁଁ ଆପଣଙ୍କଠାରୁ ଧନୁର୍ବିଦ୍ୟା ଶିକ୍ଷା କରିଛି । ଆପଣ ଯୁଦ୍ଧ କରିବା ପାଇଁ ମୋତେ ଆଦେଶ ଦିଅନ୍ତୁ ଓ ମୋତେ ବିଜୟ ଆଶୀର୍ବାଦ

ଦାଆନ୍ତୁ । ଭୀଷ୍ମଙ୍କର ଏପରି ସଦାଚାର ଓ ଅଲୌକିକ ନମ୍ରତା ଦେଖି ପରଶୁରାମ ପ୍ରୀତ ହୋଇ କହିଲେ—ବାବୁ ! ତୋର ବ୍ୟବହାରରେ ମୁଁ ଖୁସି ହୋଇଛି । ତୁ ଏପରି କରି ନ ଥିଲେ ଅଭିଶାପ ଦେଇଥାନ୍ତି । ଏବେ ଯା, ବିଜୟ ଆଶୀର୍ବାଦ ଦେଇପାରିବିନି ; କିନ୍ତୁ ତୋର ମଙ୍ଗଳ ହେଉ ।

ଭୀଷ୍ମ ତାଙ୍କର ଚରଣ ବନ୍ଦନା କରି ଫେରିଆସିଲେ । ଦୁହିଁଙ୍କ ଘୋର ଯୁଦ୍ଧ ଲାଗିଗଲା । ଦୁହେଁ ଥିଲେ ବିଶ୍ୱବିଜୟୀ ବୀର । ଦୁହିଁଙ୍କ ପାଖରେ ଦିବ୍ୟାସ୍ତ୍ର ଥିଲା । ଦୁହେଁ ରଣରଙ୍ଗ-ଦୁର୍ମଦ, ସଂଯମୀ, ସଦାଚାରୀ, ଜ୍ଞାନୀ, ଜିତେନ୍ଦ୍ରିୟ ଥିଲେ । ଦୁହେଁ ଜୀବନକୁ ପାଣି-ଛଡ଼େଇ ଯୁଦ୍ଧରେ ପୁରୁଷାର୍ଥ ଓ କୌଶଳ ପ୍ରଦର୍ଶନ କରିବାକୁ ଲାଗିଲେ । ଦୁହେଁ ଘୋର ଯୁଦ୍ଧ କରୁଥିଲେ । ତୁଇଦିନ ଗଲିଗଲା । ତୃତୀୟଦିନ କ୍ରୋଧାନ୍ଧ ହୋଇ ପରଶୁରାମ ଭୀଷ୍ମଙ୍କ ସାରଥିକୁ ମାରିଦେଲେ ଓ ଭୀଷ୍ମଙ୍କୁ ମୂର୍ଚ୍ଛିତ କରି ପକାଇଲେ । ଗଙ୍ଗାପୁତ୍ର ଦେବବ୍ରତଙ୍କୁ ମୃତ ବୋଲି ମନେକରି ପରଶୁରାମ ଗର୍ଜନ କଲେ । କିନ୍ତୁ ଅଷ୍ଟବସୁ ଓ ଗଙ୍ଗାଦେବୀ ଭୀଷ୍ମଙ୍କୁ ରକ୍ଷା କଲେ । ଭୀଷ୍ମ ପୁଣି ସଚେତ ହୋଇ ଏକ ଦିବ୍ୟ ଶରଦ୍ୱାରା ପରଶୁରାମଙ୍କୁ ଆହତ କରି ପକାଇଲେ । ପରଶୁରାମ ମୂର୍ଚ୍ଛା ଭଙ୍ଗ ହେବା ପରେ ପୁଣି ଭୀଷ୍ମଙ୍କୁ ଆକ୍ରମଣ କରିବାକୁ ଯିବାର ଦେଖି ମୁନିମାନେ ତାଙ୍କୁ ବାରଣ କଲେ ।

ପରଶୁରାମଙ୍କ ପରାକ୍ରମ ଦେଖି ଭୀଷ୍ମ ନିରାଶ ହୋଇପଡ଼ିଲେ । ରାତିରେ ସେ ବିଶ୍ରାମ ନେଲାବେଳେ ଅଷ୍ଟବସୁ ସ୍ୱପ୍ନରେ ବ୍ରାହ୍ମଣ ବେଶରେ ଆସି ତାଙ୍କୁ ଏକ ଦିବ୍ୟାସ୍ତ୍ର ସ୍ମରଣ କରାଇ ଦେଲେ । ଭୀଷ୍ମ ତ ପୂର୍ବଜନ୍ମରେ ବସୁ ହିଁ ଥିଲେ । ତେଣୁ ସକାଳେ ଉଠିବା-ମାତ୍ରେ ସେହି ଅସ୍ତ୍ର କଥା ମନେ ପଡ଼ିଗଲା । ଯୁଦ୍ଧ ସମୟରେ ଯେତେବେଳେ ସେ ସେହି ଦିବ୍ୟାସ୍ତ୍ର ମାରିବାକୁ ଉଦ୍ୟତ ହେଲେ ସେତେବେଳେ ଋଷି, ମୁନି, ଦେବତା, ସିଦ୍ଧଗଣ ସମସ୍ତେ ତାଙ୍କୁ ବାରଣ କଲେ । ଅଷ୍ଟବସୁ ଓ ଦେବୀ ଗଙ୍ଗା ମଧ୍ୟ ଭୀଷ୍ମଙ୍କୁ ସେହି ଦିବ୍ୟାସ୍ତ୍ର ନିକ୍ଷେପ କରିବାକୁ ମନା କଲେ । ସେହି ସମୟରେ ପରଶୁରାମଙ୍କ ପିତୃଗଣ ଆକାଶମାର୍ଗରେ ଆସି ସେଠାରେ ପହଞ୍ଚିଲେ । ସେମାନଙ୍କ ମଧ୍ୟରେ ଭଗବାନ୍ ଭୃଗୁ, ଋଚୀକ ଓ ରାଜର୍ଷି ଜମଦଗ୍ନି ଉପସ୍ଥିତ ଥିଲେ । ସମସ୍ତେ ପରଶୁରାମଙ୍କୁ ଯୁଦ୍ଧ ବନ୍ଦ କରିବା ପାଇଁ କହିଲେ । ଭୀଷ୍ମଙ୍କ ଯୁଦ୍ଧ କୌଶଳରେ, ବଳ, ପରାକ୍ରମ ଓ ଚତୁରୀରେ ପରଶୁରାମ ସନ୍ତୋଷ ଲାଭ କରିଥିଲେ ଏବଂ ନିଜର ବିଜୟ ଆଶା ହରାଇଥିଲେ । ସେ ଚିତ୍କାର କରି କହିଲେ—ଭୀଷ୍ମ ଆଜି ମୋତେ ପରାସ୍ତ କଲା । ଏହା କହି ସେ ଠିଆ ହୋଇଗଲେ ।

ପିତୃଗଣ କହିଲେ—ପୁତ୍ର ! ବ୍ରାହ୍ମଣ ପକ୍ଷରେ ଯୁଦ୍ଧ କରିବା ଉଚିତ୍ ନୁହେଁ । ସବୁ କାର୍ଯ୍ୟରେ ନିର୍ଦ୍ଦିଷ୍ଟ ସମୟ ଅଛି । ତୋର ବୀରତ୍ୱର ଶେଷ ସମୟ ଆସିଯାଇଛି । ସୌଭାଗ୍ୟର କଥା ଯେ, ତୁ ଏପର୍ଯ୍ୟନ୍ତ ଜୀବିତ ଅଛୁ । ଏବେ ଯୁଦ୍ଧ ଶେଷ କର ।

ପରଶୁରାମ କହିଲେ—ପିତୃଗଣ ! ଯୁଦ୍ଧରୁ ହଟି ନ ଯିବା ପାଇଁ ମୁଁ ପ୍ରତିଜ୍ଞା

କରନ୍ତୁ । ଭୀଷ୍ମ ଯୁଦ୍ଧ ବନ୍ଦ କରୁ । ଏହା ଶୁଣି ପିତୃଗଣ ଭୀଷ୍ମଙ୍କ ପାଖକୁ ଯାଇ ଯୁଦ୍ଧ ବନ୍ଦ କରିବାକୁ ଅନୁରୋଧ କଲେ ।

ଭୀଷ୍ମ କହିଲେ—ମୁଁ ନିଜ ସ୍ଥାନରୁ ଟଳେ ହେଲେ ବିଚଳିତ ହେବି ନାହିଁ । ପୃଥିବୀ ଓଲଟି ପଡ଼ୁ ପଛକେ, ମୁଁ ମୋର କ୍ଷତ୍ରିୟ ଧର୍ମ କଦାପି ତ୍ୟାଗ କରିବି ନାହିଁ ।

ଭୀଷ୍ମଙ୍କ କଥା ଶୁଣି ପିତୃଗଣ ଦେବତା ଓ ଅନ୍ୟାନ୍ୟ ମୁନି ଋଷିମାନେ ପରଶୁରାମଙ୍କୁ ଘେରିଯାଇ କହିଲେ—ଭୀଷ୍ମ ତ କିଛି ଶୁଣୁନାହିଁ; କିନ୍ତୁ ବ୍ରାହ୍ମଣ ଯାହା ହେଲେ ବି କ୍ଷମାଶୀଳ । ବ୍ରାହ୍ମଣ କେବେହେଲେ ଅତି ନିର୍ଦ୍ଦୟ ହୋଇପାରିବ ନାହିଁ । ତେଣୁ ଆପଣ ହିଁ ଯୁଦ୍ଧ ବନ୍ଦ କରନ୍ତୁ ।

ସମସ୍ତଙ୍କ ଆଗରେ ପରଶୁରାମଙ୍କୁ ହାର ମାନିବାକୁ ପଡ଼ିଲା । ସେ ଅସ୍ତ୍ର ଶସ୍ତ୍ରକୁ ପୃଥିବୀ ପୃଷ୍ଠରେ ରଖିଦେଲେ । ଏହା ଦେଖି ଭୀଷ୍ମ ଅସ୍ତ୍ରଶସ୍ତ୍ର ସବୁ ରଥରେ ରଖିଦେଇ ଦୌଡ଼ି ଦୌଡ଼ି ଆସି ପରଶୁରାମଙ୍କ ପାଦତଳେ ପ୍ରଣାମ କଲେ । ପରଶୁରାମ ଆଦରରେ ଭୀଷ୍ମଙ୍କୁ କୁଣ୍ଢାଇ ପକାଇଲେ । ତାଙ୍କ ମସ୍ତକ ଆଘ୍ରାଣ କରି ସର୍ବଦା ବିଜୟୀ ହେବାର ଆଶୀର୍ବାଦ ପ୍ରଦାନ କଲେ ।

ଭୀଷ୍ମ ପରଶୁରାମଙ୍କ ଆଦେଶ ପାଇ ହସ୍ତିନାପୁର ଫେରିଯିବା ପରେ, ପରଶୁରାମ ଅମ୍ବାକୁ କହିଲେ—ପୁତ୍ରୀ ! ମୁଁ ଯଥାଶକ୍ତି ଚେଷ୍ଟା କଲି; କିନ୍ତୁ ସଫଳ ହୋଇ ପାରିଲି ନାହିଁ । ଏଣିକି ତୋର ଯାହା ଇଚ୍ଛା ହେଉଛି ତାହା କର ।

ପରଶୁରାମଙ୍କ ମୁଖରୁ ଏହା ଶୁଣି ଅମ୍ବା କହିଲେ—ପ୍ରଭୋ ! ଆପଣଙ୍କର କିଛି ଦୋଷ ନାହିଁ, ଏସବୁ ମୋ' ଭାଗ୍ୟର ଦୋଷ । ଏବେ ମୁଁ ତପସ୍ୟା କରି ଏ ଶରୀର ତ୍ୟାଗ କରିବି ଓ ପରଜନ୍ମରେ ଭୀଷ୍ମଙ୍କ ଅପମାନର ପ୍ରତିଶୋଧ ନେବି । ଏହା କହି ଅମ୍ବା ତପସ୍ୟା କରିବା ପାଇଁ ବଣକୁ ଚାଲିଗଲା । ସବୁ ଋଷି, ମୁନି ନିଜ ନିଜ ସ୍ଥାନକୁ ଫେରିଗଲେ । ପରଶୁରାମ ମହେନ୍ଦ୍ର ପର୍ବତକୁ ଯାଇ ଘୋର ତପସ୍ୟାରେ ନିମଗ୍ନ ହେଲେ ।

ଅମ୍ବା ବଣକୁ ଯାଇ ପ୍ରତିଶୋଧ ନେବା ଲକ୍ଷ୍ୟରେ ଘୋର ତପସ୍ୟା କଲା । ମୁନି, ଋଷିମାନେ ବାରଣ କଲେ ବି ଅମ୍ବା ମାନିଲା ନାହିଁ । ମହାଦେବ ତାର ତପସ୍ୟାରେ ପ୍ରୀତ ହୋଇ ପରଜନ୍ମରେ ଭୀଷ୍ମଙ୍କ ଅପମାନର ପ୍ରତିଶୋଧ ନେବା ପାଇଁ ବର ଦେଲେ । ତା'ପରେ ଅମ୍ବା ଚିତାଗ୍ନି ପ୍ରସ୍ତୁତ କରି ସେଥିରେ ଆତ୍ମ ବିସର୍ଜନ କଲେ ।

ସେହି ସମୟରେ ମହାରାଜ ଦ୍ରୁପଦ ପୁତ୍ର ପ୍ରାପ୍ତି ପାଇଁ ଘୋର ତପସ୍ୟା କରୁଥିଲେ । ତାଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ଦେବଦେବ ମହାଦେବ ବର ଦେବାକୁ ଯାଇ କହିଲେ—ପ୍ରଥମେ ତୁମର କନ୍ୟାଟିଏ ହେବ । ତା'ପରେ ପୁତ୍ର ଜନ୍ମ ହେବ । ଦ୍ରୁପଦ ଫେରି ଆସି ଏହି ବର କଥା ରାଣୀଙ୍କୁ କହିଲେ । යଥା ସମୟରେ ରାଣୀଙ୍କ ଗର୍ଭରୁ କନ୍ୟା ଜାତ ହେଲା । କିନ୍ତୁ ରାଜା ତାଙ୍କର ପୁତ୍ର ହୋଇଛି ବୋଲି ପ୍ରଚାର କରିଦେଲେ ଓ ତାର ନାମ ରଖିଲେ ଶିଖଣ୍ଡୀ । ସେହି ଦ୍ରୁପଦ କନ୍ୟା ଯେତେବେଳେ ଷୋଳ ବର୍ଷର ହେଲା

ସେତେବେଳେ ରାଜା ଦଶାର୍ଣ୍ଣ ଦେଶର ରାଜା ହିରଣ୍ୟବର୍ମାଙ୍କ ପୁତ୍ରୀ ସହିତ ତାର ବିବାହ କରାଇଦେଲେ । ନବବଧୂ ଯେତେବେଳେ ଜାଣିଲା ଯେ ବିବାହ କରିଥିବା କୁମାର କୁମାର ନୁହେଁ, କୁମାରୀ ସେତେବେଳେ ସବୁ କଥା ନିଜ ଧାଈକୁ କହିଦେଲା । ସମୟକ୍ରମେ ଏହା ଜାଣି ହିରଣ୍ୟବର୍ମା ଦ୍ରୁପଦଙ୍କ ଉପରେ ଆକ୍ରମଣ କଲେ । ରାଜା ରାଣୀ ଚିନ୍ତିତ ହୋଇ ପଡ଼ିଲେ । ଏସବୁ ଘଟଣାରେ ଶିଖଣ୍ଡୀ ଲଜ୍ଜିତ ହୋଇ ବଣକୁ ଚାଲିଗଲା ଏବଂ ସ୍ଥୂଣାକର୍ଣ୍ଣ ନାମକ ଏକ ଯକ୍ଷକୁ ନିଜର ସ୍ତ୍ରୀତ୍ୱ ଦେଇ ତା'ଠାରୁ ପୁରୁଷତ୍ୱ ଗ୍ରହଣ କରି ଫେରିଆସିଲା । ଶିଖଣ୍ଡୀ ଫେରି ଆସି ଏସବୁ କଥା ମା'ଙ୍କୁ କହିଦେଲା । ରାଣୀଙ୍କଠାରୁ ସବୁ କଥା ଜାଣି ଦ୍ରୁପଦ ଦଶାର୍ଣ୍ଣ ନରପତିଙ୍କୁ ଦୂତ ମାଧ୍ୟମରେ 'ଶିଖଣ୍ଡୀ ଝିଅ ନୁହେଁ ପୁଅ' ବୋଲି ଜଣାଇଦେଲେ । ଦଶାର୍ଣ୍ଣ ରାଜା ଯୁଦ୍ଧ ନ କରି ଫେରିଗଲେ । ଭୀଷ୍ମ ପିତାମହ ଅମ୍ବା ଶିଖଣ୍ଡୀ ରୂପରେ ଜନ୍ମ ହୋଇଛି ବୋଲି ଜାଣିଥିଲେ । ତେଣୁ ତାକୁ ଦେଖିବା ମାତ୍ରେ ଭୀଷ୍ମ ଅସ୍ତ୍ରତ୍ୟାଗ କରିଥିଲେ ଓ ଅର୍ଜୁନ ତାଙ୍କୁ ଶରଶଯ୍ୟାଶାୟୀ କରିଥିଲେ ।

ମହର୍ଷି ସୂତ କହିଲେ—ମୁନିଗଣ ! ଏହିପରି ଭାବେ ଭୀଷ୍ମ କାଶୀରାଜଙ୍କ ତିନି କନ୍ୟା ମଧ୍ୟରୁ ଦୁଇ କନ୍ୟାଙ୍କ ବିବାହ ନିଜର ସାନଭାଇ ବିଚିତ୍ରବୀର୍ଯ୍ୟଙ୍କ ସହିତ କରାଇ-ଥିଲେ ଓ ତୃତୀୟ କନ୍ୟାକୁ ନିଜର ମୃତ୍ୟୁର କାରଣ ରୂପେ ବରଣ କରିଥିଲେ । ବିଚିତ୍ରବୀର୍ଯ୍ୟ ସୁନ୍ଦରୀ ରାଜକୁମାରୀଙ୍କୁ ପାଇ ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ରାଣୀମାନଙ୍କ ପ୍ରତି ଏପରି ଆସକ୍ତ ହୋଇପଡ଼ିଲେ ଯେ ରାଜମହଲରୁ ବାହାରକୁ ଆସିଲେ ନାହିଁ । ରାଜକାର୍ଯ୍ୟ ଭୀଷ୍ମ ହିଁ ପରିଚାଳନା କରୁଥିଲେ । ରାଜକୁମାରୀ ତିନି ରାତି ବିଚିତ୍ରବୀର୍ଯ୍ୟଙ୍କ ସେବା କରୁଥିଲେ । ଅତ୍ୟଧିକ ସହବାସ ଓ ବିଷୟାଶକ୍ତି ହେତୁ ବିଚିତ୍ରବୀର୍ଯ୍ୟ ରାଜଯକ୍ଷ୍ମା ରୋଗରେ ଆକ୍ରାନ୍ତ ହୋଇପଡ଼ିଲେ । ବହୁ ବଡ଼ ବଡ଼ ଚିକିତ୍ସକଙ୍କଦ୍ୱାରା ଚିକିତ୍ସା କରାଗଲେ ମଧ୍ୟ ଶେଷରେ ସବୁ ବ୍ୟର୍ଥ ହେଲା । ଅକାଳରେ ସତ୍ୟବତୀ ସୁତ ବିଚିତ୍ରବୀର୍ଯ୍ୟ କାଳ କବଳିତ ହେଲେ । ଯୁବତୀ ପତ୍ନୀଙ୍କୁ ନିଃସନ୍ତାନ ଅବସ୍ଥାରେ ଛାଡ଼ି ସେ ପରଲୋକ ଚାଲିଗଲେ । ଭୀଷ୍ମ ଅତି ଦୁଃଖରେ ଭାଇର ପ୍ରେତକୃତ୍ୟ କଲେ । ଯେ ଅନ୍ୟର ଅଧିକାରକୁ କଳେ ବଳେ କୌଶଳେ ଛଡ଼ାଇନିଏ ତାହା ସେ ବେଶୀଦିନ ଭୋଗ କରିପାରେ ନାହିଁ । କୁରୁକୁଳର ରାଜସିଂହାସନ ପୁଣି ଖାଲି ପଡ଼ିଲା । ସତ୍ୟବତୀ ଭୀଷ୍ମଙ୍କୁ ବିବାହ କରି ରାଜସିଂହାସନରେ ଅଭିଷିକ୍ତ ହେବାପାଇଁ ବହୁ ଅନୁରୋଧ କଲେ । କିନ୍ତୁ ଦୃଢ଼ପ୍ରତିଜ୍ଞ ଭୀଷ୍ମ ସିଂହାସନରେ ବସିବା ପାଇଁ ସ୍ପଷ୍ଟଭାବେ ମନା କରିଦେଲେ । ବର୍ତ୍ତମାନ କୁରୁବଂଶର ଧାରାକୁ କିପରି ଭାବେ ଅବିଚ୍ଛିନ୍ନ ରଖାଯାଇ ପାରିବ ତାହା ହିଁ ସମସ୍ତେ ଚିନ୍ତା କଲେ । ସତ୍ୟବତୀ ଏ ବିଷୟରେ ଗଭୀର ଚିନ୍ତା କରିବା ସଙ୍ଗେ ସଙ୍ଗେ ଉପାୟ ଖୋଜିବାକୁ ଲାଗିଲେ ।

**ଛପ୍ପୟ**

**କରିବେ ଅମ୍ବା ଗ୍ରହଣ ଭୀଷ୍ମ ତେବେଁ ରାମ କହୀ ପୁନି ।**
**ମାନୀ ନହୁଁ ଜବ ବାତ କହୀ ମୁନି-ଆ ମୋତେ ଲରୁ ॥**

ଭୟୋ ଯୁଦ୍ଧ ଘନଘୋର, ଦେବବ୍ରତ ପଣ୍ଡି ନର୍ଣ୍ଣ ହାରେ ।
ଭୟେ ରାମ ସନ୍ତୁଷ୍ଟ ସକୁଚ ବନ ମାହିଁ ସିଧାରେ ॥
ଅମ୍ବା ବନ କେ ଶିଖଣ୍ଡୀ, ଭୀଷମ ତେଁ ବଦଲୋ ଲୟୋ ।
ନୃପ ବଚନ ଆସକ୍ତ ଅତି, ନିଦ ରାଜନ ମହିଁ ହେଇ ଗୟୋ ॥



## ବିଚିତ୍ରବୀର୍ଯ୍ୟଙ୍କ କ୍ଷେତ୍ରଜ ସୁତ

କ୍ଷେତ୍ରେଽପ୍ରଜସ୍ୟ ବୈ ଭ୍ରାତୁର୍ମାତ୍ରୋକ୍ତୋ ବାଦରାୟଣଃ ।
ଧୃତରାଷ୍ଟ୍ରଂ ଚ ପାଣ୍ଡୁଂ ଚ ବିଦୁରଂ ଚାପ୍ୟଜୀଜନତ୍ ॥

(ଭାଗ-୯ସ୍କ, ୨୨ଅ, ୨୫ ଶ୍ଲୋ)

### ଛପ୍ପୟ

ଭୟୋ ରୋଗ କ୍ଷୟ ପୁତ୍ର ହୀନ ନୃପ ସ୍ୱରଗ ସିଧାରେ ।
ମାତା ସୁମିରନ କରେ ବ୍ୟାସ ମୁନି ତୁରତ ପଧାରେ ॥
କୁରୁ କୁଳ କୋ କ୍ଷୟ ଜାନ ବ୍ୟାସତେଁ କରଓ୍ୟାୟୌ ସୁତ ।
ଅନ୍ଧ ଭୟେ ଧୃତରାଷ୍ଟ୍ର ପାଣ୍ଡୁ ଅରୁ ବିଦୁର ନୀତି ଯୁତ ॥
ପୁତ୍ରବତୀ ରାନୀ ଲଖି, ଭୟେ ହୃଦୟ ସବକେ ହରେ ।
ଶନ୍ତନୁ ସୁତ ନେ ସବ ତନୟ, ପାଲି ପୋଷି ସମରଥ କରେ ॥

ଧର୍ମର ଗତି ଅତି ସୂକ୍ଷ୍ମ । ଧର୍ମ ପ୍ରାଣୀମାନଙ୍କ ସ୍ୱାଭାବିକ ପ୍ରବୃତ୍ତିକୁ ତ୍ୟାଗ କରିବା ପାଇଁ କହୁ ନାହିଁ; କିନ୍ତୁ ତାକୁ ନିୟମିତ, ସଂଯତ କରିବା ପାଇଁ ଉପଦେଶ ଦେଇଛି । ସୃଷ୍ଟିରେ ମୈଥୁନ ଇଚ୍ଛା ସ୍ୱାଭାବିକ, ଅପରିହାର୍ଯ୍ୟ ମଧ୍ୟ ! ବିଷୟ ଭାବନା ଦ୍ୱାରା ପ୍ରାଣୀ ଜନ୍ମ ହୁଏ । ତେଣୁ ସେଥିପାଇଁ କାମନା ରହିବା ଆବଶ୍ୟକ; କିନ୍ତୁ କାମନାରେ ତାର ତୃପ୍ତି ଆସେ ନାହିଁ । ଉପଭୋଗ ଦ୍ୱାରା କାମନା, ଅଗ୍ନିରେ ଇନ୍ଧନ ପକାଇଲା

ପର ଉତ୍ତରୋତ୍ତର ବୃଦ୍ଧିପାଏ । ସେଥିପାଇଁ ମୁନି ଋଷିମାନେ କାମୋପଭୋଗ ବିଷୟରେ ଏକ ବ୍ୟବସ୍ଥା ଛିଣ୍ଡି ଦେଇଛନ୍ତି । ଅବ୍ୟବସ୍ଥିତ ଭାବେ କାମୋପଭୋଗ ପାଇଁ ସ୍ୱାଧୀନତା ଦେଲେ ପଶୁ ଓ ମଣିଷ ମଧ୍ୟରେ କୌଣସି ପାର୍ଥକ୍ୟ ରହିବ ନାହିଁ । ଏଣୁ ଶାସ୍ତ୍ରକାରମାନେ କହିଛନ୍ତି—ଋତୌ ଭାର୍ଯ୍ୟାମୁପେୟାତ୍ ଅର୍ଥାତ୍ ଋତୁକାଳ ପରେ ଯଥା ସମୟରେ ନିଜର ଭାର୍ଯ୍ୟା ସହିତ ସହବାସ କରଣୀୟ । ଏହା ସାଧାରଣ ନିୟମ । ଆବଶ୍ୟକ ହେଲେ ବେଳେ ବେଳେ ଏହି ନିୟମରେ ବ୍ୟତିକ୍ରମ କରାଯାଏ । ଏହାକୁ ଅପଦ୍‌ଧର୍ମ କହନ୍ତି । କିନ୍ତୁ କେବଳ ବିଷୟ ଜନିତ ତୃପ୍ତି ପାଇଁ ଯେଉଁ କାର୍ଯ୍ୟ କରାଯାଏ ତାହାକୁ ଧର୍ମ କୁହାଯାଏ ନାହିଁ ।

ମହର୍ଷି ସୂତ କହିଲେ—ମୁନିଗଣ ! ମହାରାଜ ଶାନ୍ତନୁ କାମବଶତଃ ଯେଉଁ କୈବର୍ତ୍ତି କନ୍ୟାକୁ ବୃଦ୍ଧାବସ୍ଥାରେ ବିବାହ କଲେ, ଯାହା ଦ୍ୱାରା ସର୍ବସମର୍ଥ ଭୀଷ୍ମଙ୍କ ଅଧିକାର ନଷ୍ଟହେଲା, ତା'ର ପରିଣତି ଭଲ ହେଲା ନାହିଁ । ଯେ କୌଣସି ଉପାୟରେ ହେଲେ ବି କୁରୁକୁଳର ଅକ୍ଷୁଣ୍ଣତା ବଜାୟ ରହିପାରିଲା ନାହିଁ । ଯେଉଁ ସତ୍ୟବତୀର ରୂପ ପ୍ରତି ମହାରାଜ ଆସକ୍ତ ଥିଲେ ତା' ସହିତ ଅଧିକ କାଳ ସୁଖଭୋଗ କରିପାରିଲେ ନାହିଁ । ଦୁଇଟି ସାନ ସାନ ପିଲାଙ୍କୁ ଛାଡ଼ି ସେ ପରଲୋକ ଗମନ କଲେ । ନାମକୁ ମାତ୍ର ସେ ପିଲା ରାଜା ହେଲେ ମଧ୍ୟ ଭୀଷ୍ମ ହିଁ ସବୁ କଥା ବୁଝୁଥିଲେ । ଭୀଷ୍ମ ଆଶା କରିଥିଲେ ଯେ ଦୁହିଁଙ୍କ ମଧ୍ୟରୁ କେହି ଜଣେ ଯୋଗ୍ୟ ହୋଇ ବାହାରିବ । କିନ୍ତୁ ସେ ଆଶା ତାଙ୍କର ସଫଳ ହେଲା ନାହିଁ କୁରୁକୁଳର, ପୁରୁବଂଶର ନାମ ଚିରଦିନ ଲିଭିଯିବ, ଏହି ଚିନ୍ତାରେ ସତ୍ୟବତୀ ବ୍ୟାକୁଳ ହେଉଥିଲେ । ସେ ଦେବବ୍ରତଙ୍କ ଆଡ଼କୁ ଚାହିଁ ଥିଲେ । କିନ୍ତୁ ସେ ଜାଣିଥିଲେ ଯେ, ଦେବବ୍ରତ ବଡ଼ ଜିଦ୍‌ଖୋର ଓ ଦୃଢ଼ପ୍ରତିଜ୍ଞ । ହେଥିପାଇଁ ସେ ସାହସ କରି ଭୀଷ୍ମଙ୍କୁ କିଛି କହିପାରୁ ନ ଥିଲେ ।

ଦିନେ ମାତା ସତ୍ୟବତୀ ଅତି ବିନମ୍ର ଭାବରେ କହିଲେ—ଦେବବ୍ରତ ! ଦେଖ, ଆଜି କୁରୁକୁଳର ଦୀପ ଚିରଦିନ ପାଇଁ ଲିଭିବାକୁ ବସିଛି । ସମସ୍ତେ ତୋ'ରି ଆଡ଼କୁ ଚାହିଁଛନ୍ତି । ତେଣୁ ତୋର ପ୍ରତିଜ୍ଞା ବଦଳେଇ ରାଜସିଂହାସନରେ ବସ, ବିବାହ କର, ସନ୍ତାନ ଉତ୍ପନ୍ନ କର, ଆଉ କୁରୁକୁଳର ବଂଶ ପରମ୍ପରାକୁ ନିରବଚ୍ଛିନ୍ନ ରଖ ।

ଭୀଷ୍ମ କହିଲେ—ମା, ସଜ୍ଜନମାନେ ନିଜର ପ୍ରତିଜ୍ଞା ଭାଙ୍ଗନ୍ତି ନାହିଁ । ମୁଁ ରାଜା ନ ହେବାର ପ୍ରତିଜ୍ଞା ଭଙ୍ଗ କରିପାରିବି ନାହିଁ ।

ସତ୍ୟବତୀ କହିଲେ—ତୁ ମୋର ଅନୁରୋଧ ରକ୍ଷାକର । ମୁଁ ତୋତେ ରାଜ୍ୟ ନେବା କଥା କହୁନି; କିନ୍ତୁ କୁଳ ପରମ୍ପରାର ବୃଦ୍ଧି ପାଇଁ ନିବେଦନ କରୁଛି । ତୁ ଯଦି ଭାବୁଛୁ ମୋ' ପରେ ମୋ'ରି ପୁତ୍ରମାନେ ରାଜ୍ୟାଧିକାରୀ ହେବେ; ତେଣୁ ସଂସାର ଆଗରେ ମିଥ୍ୟା-ବାଦୀ ହେବୁ, ତେବେ ଗୋଟିଏ କାମ କର । ଏବେ ତୁ ରାଜ୍ୟ ଭାର ବହନ କର ଓ ବିଚିତ୍ର-ବୀର୍ଯ୍ୟର ପତ୍ନୀ ଯେଉଁ ସୁନ୍ଦରୀ ରାଜକୁମାରୀ ଦୁହେଁ ଅଛନ୍ତି ସେମାନେ ଯୁବତୀ, ତାଙ୍କର

ମାଧ୍ୟମରେ ତୁ ସନ୍ତାନ ଉତ୍ପନ୍ନ କର । ଶାସ୍ତ୍ରକାରମାନେ କହିଛନ୍ତି— ଯାହା ସହିତ ଯାହାର ବିବାହ ହୁଏ, ସେ କ୍ଷେତ୍ରରେ ଜାତ ସନ୍ତାନ ତାଙ୍କର ହୁଏ । ତେଣୁ ସେହି ରାଣୀମାନଙ୍କ ଗର୍ଭରୁ ଯେଉଁ ସନ୍ତାନ ଜାତ ହେବେ, ସେମାନେ ବିଚିତ୍ରବୀର୍ଯ୍ୟର ସନ୍ତାନ ବୋଲି ପରିଚିତ ହେବେ, ସେମାନେ ଯେତେବେଳେ ସମର୍ଥ ହୋଇଯିବେ ସେତେବେଳେ ତାଙ୍କୁ ରାଜ୍ୟଭାର ଦେଇଦେବୁ, ଏହାଦ୍ୱାରା ବଂଶ ପରମ୍ପରା ଅକ୍ଷୁଣ୍ଣ ରହିବ ଓ ତୋର ପ୍ରତିଜ୍ଞା ଭଙ୍ଗ ହେବ ନାହିଁ । ଏହି କାର୍ଯ୍ୟ ବିଶୁଦ୍ଧ ଧର୍ମ ସମ୍ମତ ନୁହେଁ । କିନ୍ତୁ ଏବେ ଆମକୁ ଆପଦ୍‌ଧର୍ମର ଆଶ୍ରୟ ନେବାକୁ ପଡ଼ିବ ।

ଭୀଷ୍ମ କହିଲେ—ମା' ଆପଣଙ୍କ କଥା ସତ । କିନ୍ତୁ ମୋର ପ୍ରତିଜ୍ଞା ହେଉଛି, ମୁଁ ଆଜୀବନ ବ୍ରହ୍ମଚାରୀ ରହିବି । ବିଚିତ୍ରବୀର୍ଯ୍ୟର ପତ୍ନୀମାନେ ମୋର ପୁତ୍ରୀ ଓ ପୁତ୍ରବଧୂ ତୁଲ୍ୟା । ସେମାନଙ୍କ ପ୍ରଶ୍ନ ଉଠୁନି, ଅନ୍ୟ କୌଣସି ସ୍ତ୍ରୀଦ୍ୱାରା ମଧ୍ୟ ସନ୍ତାନ ଉତ୍ପନ୍ନ କରିପାରିବି ନାହିଁ ।

ନିରାଶ ହୋଇ ସତ୍ୟବତୀ କହିଲେ—ତେବେ କ'ଣ କରିବା ? ରାଜର୍ଷି ପ୍ରତୀପଙ୍କ ବଂଶ କଣ ଏଇଠୁ ଶେଷ ହୋଇଯିବ । ତୁ ତ ଜଣେ ଧାର୍ମିକ ପୁରୁଷ, ତୁ କହି କି ଉପାୟ କରିବା ?

ଭୀଷ୍ମ କହିଲେ—ମା, ଆପଦକାଳରେ ମର୍ଯ୍ୟାଦା ରକ୍ଷାକରି ହୁଏ ନାହିଁ । ମର୍ଯ୍ୟାଦା-ହୀନ ଧର୍ମର ନାମ ଆପଦ୍‌ଧର୍ମ । ଯେତେବେଳେ ବିପଦ ଆସେ ସେତେବେଳେ ଏହି ଧର୍ମ ପାଳନ କରାଯାଏ । ଯେତେବେଳେ ପରଶୁରାମ ପୃଥିବୀକୁ ନିଃକ୍ଷତ୍ରିୟ କରି ଦେଲେ ସେତେବେଳେ କ୍ଷତ୍ରିୟାମାନେ ବ୍ରାହ୍ମଣମାନଙ୍କ ଦ୍ୱାରା ସନ୍ତାନ ଉତ୍ପନ୍ନ କରାଇ ଥିଲେ ଓ ସେମାନେ ସମସ୍ତେ କ୍ଷତ୍ରିୟ ରୂପେ ପରିଚିତ ହୋଇଥିଲେ । ଯଦି ସନ୍ତାନ କାମନା ବ୍ୟତୀତ ସେମାନେ ଇନ୍ଦ୍ରିୟ ସୁଖ ପାଇଁ ଏପରି କରିଥାନ୍ତେ ତେବେ ତାହା ବ୍ୟଭିଚାର ହୋଇଥାନ୍ତା । ସେହିପରି ତୁମେ କୌଣସି ଯୋଗ୍ୟ ବ୍ରାହ୍ମଣଙ୍କୁ ଡକାଇ ଏଇ ଦୁଇ ରାଣୀଙ୍କଠାରୁ ସନ୍ତାନ ଉତ୍ପନ୍ନ କରାଇନିଅ । ତଦ୍‌ବ୍ୟତୀତ ଅନ୍ୟ ଉପାୟ ନାହିଁ ।

ଏହି କଥାରେ ଲଜ୍ଜିତା ହୋଇ ସତ୍ୟବତୀ କହିଲେ—ଦେବବ୍ରତ ! ତୁ ମୋ'ଠାରୁ ବଡ଼ ଓ ଧାର୍ମିକ । ଆମ ସମସ୍ତଙ୍କର ତୁ ହିଁ ଗତିମୁକ୍ତିଦାତା । ଏପରି ଏକ କଥା ଅଛି, ଯାହା ତୋତେ କହିବା କଥା ନୁହେଁ; କିନ୍ତୁ ନ କହିଲେ କାମ ହେବନାହିଁ । ଦେଖ, ମୁଁ ଯେତେବେଳେ କୁମାରୀ କନ୍ୟା ଥିଲି ସେତେବେଳେ ଭଗବାନ୍ ପରାଶରଙ୍କ ଦ୍ୱାରା ମୋର ଏକ ପୁତ୍ର ହୋଇଥିଲା । ସେ ତାର ପିତାଙ୍କ ପରି ତେଜସ୍ୱୀ । ଜନ୍ମ ହେବାମାତ୍ରେ ସେ ତା'ର ବାପାଙ୍କସହ ଚାଲିଗଲା । ଯିବାବେଳେ ସେ ମୁଁଅ କହିଯାଇଥିଲା—ମା, ଆପଣ ଯେତେ-ବେଳେ ମୋତେ ସ୍ମରଣ କରିବେ ମୁଁ ଆସିଯିବି । ଯଦି ତୁ ଅନୁମତି ଦେବୁ ମୁଁ ତାକୁ ଡାକିବି ତା'ର ନାମ ହେଉଛି ବ୍ୟାସ ।

ଭୀଷ୍ମ କହିଲେ—ମା, ମୁଁ ଭଗବାନ୍ ବେଦବ୍ୟାସଙ୍କୁ ଭଲଭାବରେ ଜାଣେ । ସେ ଆପଣଙ୍କ ସନ୍ତାନ, ଏକଥା ମଧ୍ୟ ଜାଣେ । ସେ ଆପଣଙ୍କର କାନୀନ ପୁତ୍ର । ମହାମୁନି

ପରାଶରଙ୍କ ଆଶୀର୍ବାଦରୁ ତାଙ୍କୁ ଜନ୍ମ ଦେଇ ଆପଣଙ୍କର କନ୍ୟାତ୍ୱ ନଷ୍ଟ ହୋଇ ନ ଥିଲା । ତାଙ୍କ ଦ୍ୱାରା ସନ୍ତାନ ଉତ୍ପନ୍ନ କରାଇବା ଅଧର୍ମ ହେବ ନାହିଁ ।

ଧର୍ମାତ୍ମା ଭୀଷ୍ମଙ୍କ ଅନୁମତି ପାଇ ମାତା ସତ୍ୟବତୀ ସେହି ସମୟରେ ନିଜର ପୁତ୍ରଙ୍କୁ ସ୍ମରଣ କଲେ । ସ୍ମରଣ ମାତ୍ରେ ଭଗବାନ ବ୍ୟାସଦେବ ଉପସ୍ଥିତ ହୋଇଗଲେ । ମା'ଙ୍କର ଆନନ୍ଦ କହିଲେ ନସରେ । କୁଶଳ ପ୍ରଶ୍ନ ପରେ ମାତା ମୂଳରୁ ଶେଷଯାଏ ସବୁକଥା କହିଲେ । ଆପଦ୍‌ଧର୍ମ ଦୃଷ୍ଟିରୁ ଭଗବାନ ବେଦବ୍ୟାସ ମା'ଙ୍କ କଥା ସ୍ୱୀକାର କଲେ । ସେ କହିଲେ—ମା, ମୋର ତେଜ ଅସହ୍ୟ । ତପସ୍ୟା କାରଣରୁ ମୋ' ଦେହରୁ ଉତ୍କଟ ଗନ୍ଧ ବାହାରୁଛି । ଘୋର ତପସ୍ୟା ହେତୁ ମୋର ଦେହ କଳା ହୋଇଯାଇଛି । ଜଟା ତମ୍ବାଳିଆ ଦିଶୁଛି । ଯେ ବ୍ରତ ଉପବାସ ନ କରିଛି ସେ ମୋ' ପାଖକୁ ଆସି ପାରିବ ନାହିଁ । ତେଣୁ ତୁମେ ଦୁଇ ବୋହୂଙ୍କୁ କୁହ ସେମାନେ ବର୍ଷେ କାଳ ବ୍ରତ ପାଳନ କରନ୍ତୁ । ତା'ପରେ ହିଁ ସେମାନେ ମୋ' ପାଖକୁ ଆସି ପାରିବେ ।

ସତ୍ୟବତୀ କହିଲେ—ପୁଅ ! ଗୋଟିଏ ଗୋଟିଏ ମୁହୂର୍ତ୍ତ କଟାଇବା ମୋ' ପକ୍ଷରେ ଅସମ୍ଭବ ହୋଇପଡ଼ୁଛି । ରାଜା ବିନା ପ୍ରଜା ଉଚ୍ଛୃଙ୍ଖଳ ହୋଇପଡ଼ନ୍ତି । ସର୍ବତ୍ର ଅରାଜକତା ବ୍ୟାପିଯାଏ । ଇନ୍ଦ୍ର ଯଥା ସମୟରେ ବର୍ଷା କରନ୍ତି ନାହିଁ । ଧାର୍ମିକ କ୍ରିୟା-କଳାପ ଲୋପ ହୋଇଯାଏ । ତେଣୁ ତୁ ଯଥାଶୀଘ୍ର ମୋର ଏ କାର୍ଯ୍ୟଟି କର ।

ବ୍ୟାସଦେବ କହିଲେ—ହଉ ମା, ତୁମେ ଯାହା ଚାହୁଁଛ ତାହା ହିଁ ହେଉ । ତୁମେ ବୋହୂମାନଙ୍କୁ କହିଦିଅ ସେମାନେ ସାବଧାନ ରହିବେ; କିନ୍ତୁ ଭୟ କରିବେ ନାହିଁ ।

ସତ୍ୟବତୀ ପୁତ୍ରର ପରାମର୍ଶ ଗ୍ରହଣ କଲେ । ସେ ବଡ଼ ବୋହୂ ଅମ୍ବିକାକୁ ଡାକି ସବୁକଥା ବୁଝାଇଦେଲେ । ରାଜକୁମାରୀ ଏ ବିଷୟରେ ଆପତ୍ତି କଲେ ମଧ୍ୟ ସତ୍ୟବତୀଙ୍କ ଆଦେଶକୁ ସ୍ୱୀକାର କଲେ ।

ରାତିର ମଧ୍ୟ ଭାଗରେ ବ୍ୟାସଦେବ ଅମ୍ବିକାର ଶୟନ କକ୍ଷରେ ବିଜେ କଲେ । ଅମ୍ବିକା ବସ୍ତ୍ରାଭୂଷଣରେ ଅଳଙ୍କୃତା ହୋଇ ତାଙ୍କର ପ୍ରତୀକ୍ଷାରେ ଥିଲି । ଶୟନ ମନ୍ଦିରଟି ଖୁବ୍ ଆଡ଼ମ୍ବରରେ ସଜା ହୋଇଥିଲା । ସୁବାସିତ ତୈଳ ପୂରିତ ଦୀପ ଜଳୁଥିଲା । ଭଗବାନ୍ ବ୍ୟାସ ଶୟନ କକ୍ଷରେ ପ୍ରବେଶ କରିବା ମାତ୍ରେ ଏକପ୍ରକାର ଗନ୍ଧରେ ଗୃହଟି ପୂର୍ଣ୍ଣ ହୋଇଗଲା । ଦୀପର ଆଲୋକରେ ବ୍ୟାସଦେବଙ୍କ ଜଟା ବିଜୁଳି ପରି ଝଟକୁଥିଲା । ବଡ଼ ବଡ଼ ଆଖି ଦୁଇଟିରୁ ଦିବ୍ୟଜ୍ୟୋତି ବାହାରୁଥିଲା । ସେ ମୃଗଚର୍ମ ପିନ୍ଧିଥିଲେ । ତାଙ୍କର ଏପରି ଅଦ୍ଭୁତାକାର ରୂପ ଦେଖି ଅମ୍ବିକା ଭୟରେ ଆଖି ବୁଜି ପକାଇଲେ ଓ ଆଉ ବ୍ୟାସଦେବଙ୍କୁ ଚାହିଁଲେ ନାହିଁ । ଭଗବାନ୍ ବ୍ୟାସ ଗର୍ଭାଧାନ ସଂସ୍କାର ସାରି ଚାଲିଗଲେ ।

ସତ୍ୟବତୀ ଅତି ଉତ୍ସୁକ ହୋଇ ପଚାରିଲେ - ପୁଅ ! ଅମ୍ବିକା ଗର୍ଭରୁ ଆମ କୁଳ ଉପଯୋଗୀ ପୁତ୍ର ଜାତ ହେବ ତ ?

ବ୍ୟାସଦେବ କହିଲେ—ମା, ମୁଁ ପ୍ରଥମରୁ ଆପଣଙ୍କୁ କହିଥିଲି, ମରୁକାମ ତରବର ହୋଇ କରିବା ଉଚିତ ନୁହେଁ । ଅମ୍ବିକା ଗର୍ଭରୁ ଦଶ ହଜାର ହସ୍ତୀ ଶକ୍ତି ବିଶିଷ୍ଟ ବଳବାନ୍ ପୁତ୍ର ଜାତ ହେବ; କିନ୍ତୁ ସେ ଅନ୍ଧ ହେବ, କାରଣ ତୁମର ବୋହୂ ମୋତେ ଦେଖି ଆଖି ବନ୍ଦ କରି ଦେଇଥିଲେ ।

ସତ୍ୟବତୀ କହିଲେ—ପୁଅ ! ଅନ୍ଧପୁତ୍ର ତ ରାଜ୍ୟ ପରିଚାଳନା କରିପାରିବେ ନାହିଁ । ତୁ ଦୟା କରି ଆଉ ଏକ ପୁତ୍ର ଅମ୍ବାଳିକା ଦ୍ୱାରା ଉତ୍ପନ୍ନ କର । ଭଗବାନ୍ ବ୍ୟାସଦେବ ମା'ଙ୍କର ଅନୁରୋଧକୁ ଅସ୍ୱୀକାର କରିପାରିଲେ ନାହିଁ । ସତ୍ୟବତୀ ସାନବୋହୂ ଅମ୍ବାଳିକାକୁ ଡାକି ସବୁକଥା ଭଲଭାବରେ ବୁଝାଇଦେଲେ ଏବଂ ଆଖି ବନ୍ଦ ନ କରି ସାବଧାନ ରହିବା ପାଇଁ କହିଲେ । ସାନବୋହୂ ବି ସବୁକଥା ମାନିଗଲେ ; କିନ୍ତୁ ଭଗବାନ୍ ବ୍ୟାସ ଯେତେବେଳେ ଆସିଲେ ସେତେବେଳେ ତାଙ୍କର ତେଜୋମୟ ରୂପକୁ ଦେଖି ଅମ୍ବାଳିକା ଭୟରେ ପାଣ୍ଡୁର ହୋଇଗଲେ । ବ୍ୟାସଦେବ ଗର୍ଭାଧାନ ପରେ ଯେତେବେଳେ ଫେରିଲେ, ସେତେବେଳେ ସତ୍ୟବତୀ ପୁଣି ପଚାରିଲେ—ପୁଅ ! ଅମ୍ବାଳିକାର କିପରି ପୁତ୍ର ଜନ୍ମ ହେବ ?

ବ୍ୟାସଦେବ କହିଲେ—କଣ କହିବି ମା, ତୁମର ଭାଗ୍ୟ ଠିକ୍ ନାହିଁ । ଉତ୍ତମ ପୁତ୍ର ଜାତ ହେବ; କିନ୍ତୁ ତା'ର ଦେହ ପାଣ୍ଡୁର ବର୍ଣ୍ଣ ହେବ । ରାଜ କାର୍ଯ୍ୟରେ ତାର ଆଗ୍ରହ ରହିବ ନାହିଁ, କାରଣ ତୁମର ବୋହୂ ମୋତେ ଦେଖି ଭୟରେ ହଳଦିଆ ପଡ଼ିଗଲେ ।

ଏହା ଶୁଣି ସତ୍ୟବତୀ କହିଲେ—ପୁଅ ! ଆଉ ଥରେ ମାତ୍ର ଦୟାକର । ବଡ଼ ବୋହୂଦ୍ୱାରା ଆଉ ଏକ ସନ୍ତାନ ଉତ୍ପନ୍ନ କର ।

ବ୍ୟାସଦେବ କହିଲେ—ମା, ମୁଁ ଯାହା କିଛି କରୁଛି ବିଶୁଦ୍ଧ ଧର୍ମଭାବନା ନେଇ କରୁଛି । ସେଥିରେ ଉଣେ ହେଲେ କାମଭାବ ନାହିଁ ।

ସତ୍ୟବତୀ କହିଲେ—ମୁଁ ଜାଣେ । ତୁ ଜିତେନ୍ଦ୍ରିୟ ଓ ସାକ୍ଷାତ୍ ଧର୍ମସ୍ୱରୂପ ; କିନ୍ତୁ ଆମର ବିପଦ ପ୍ରତି ଦୃଷ୍ଟି ଦେଇ ବିଚାର କର । ଆମର ସର୍ବଗୁଣ ସମ୍ପନ୍ନ ପୁତ୍ରଟିଏ ଦରକାର, ଯେ ଏହି କୁରୁକୁଳର ଯଶସ୍ୱୀ ରାଜା ହେବ ।

ବ୍ୟାସଦେବ କହିଲେ—ଠିକ୍ ଅଛି, ବର୍ଷେ ପରେ ମୁଁ ପୁଣି ଆସିବି । ଏହା କହି ସେ ହଠାତ୍ ଅନ୍ତର୍ଦ୍ଧାନ ହୋଇଗଲେ ।

ଯଥା ସମୟରେ ଅମ୍ବିକାଙ୍କ ଗର୍ଭରୁ ଅନ୍ଧ ପୁତ୍ରଟିଏ ଜନ୍ମ ହେଲା । ସେ ଧୃତରାଷ୍ଟ୍ର ନାମରେ ଅଭିହିତ ହେଲା । କିଛି ଦିନ ପରେ ଅମ୍ବାଳିକା ହଳଦିଆ ପୁଅ ପିଲାଟିଏ ଜନ୍ମ କଲେ । ତା'ର ଦେହ ହଳଦିଆ ହୋଇଥିବାରୁ ସେ ପାଣ୍ଡୁ ନାମରେ ଅଭିହିତ ହେଲା । ଅମ୍ବିକାଙ୍କର ପ୍ରସବ କାଳ ନିବୃତ୍ତି ପରେ ସତ୍ୟବତୀ ବୁଝାଇ କହିଲେ—ଝିଅ ! ଅନ୍ଧ ପୁତ୍ର ରାଜା ହେବାପାଇଁ ଯୋଗ୍ୟ ନୁହେଁ । ବ୍ୟାସଦେବ ପୁଣି ଥରେ ଆସିବେ । ତୁ ତାଙ୍କୁ ଆଦୌ ଭୟ କରିବୁ ନାହିଁ । ଏହା ଶୁଣି ଅମ୍ବିକା ମନରେ ହଁ ମାରିଲେ । କିନ୍ତୁ ମନରୁ ଭୟ ଦୂର

ହେଲ ନାହିଁ । ଜର୍ଦ୍ଦିଷ୍ଟ ଦିନ ଅମ୍ବିକା ଶୟନାଗାରକୁ ଗଲ ନାହିଁ । ନିଜର ବସ୍ତ୍ରାଭୂଷଣରେ ସଜ୍ଜିତ କରି ଏକ ଅତି ସୁନ୍ଦରୀ ଦାସୀକୁ ସେ ଶୟନାଗାରକୁ ପଠାଇଦେଲେ ।

ଭଗବାନ ବ୍ୟାସଦେବ ଯଥା ସମୟରେ ପହଞ୍ଚିଲେ । ଦାସୀ ପକ୍ଷରେ ତାହା ଥିଲ ବଡ଼ ସୌଭାଗ୍ୟର ବିଷୟ । ଭଗବାନ୍ ପହଞ୍ଚିବା ପରେ ସେ ଉଠିଯାଇ ଭକ୍ତି ସହକାରେ ତାଙ୍କ ପାଦତଳେ ପ୍ରଣାମ କଲ ଓ ଯଥାବିଧି ସେବା କରିବାକୁ ଲଗିଲ । ବ୍ୟାସଦେବ ଦାସୀର ସେବାରେ ସନ୍ତୁଷ୍ଟ ହେଲେ ଏବଂ ଗର୍ଭାଧାନ ପରେ ଆଶୀର୍ବାଦ ଦେଇ କହିଲେ—ତୋ' ଗର୍ଭରୁ ସାକ୍ଷାତ୍ ଧର୍ମରାଜ ଅବତୀର୍ଣ୍ଣ ହେବେ । ସେ ସଂସାରରେ ବଡ଼ ଖ୍ୟାତିଲଭ କରିବେ । ତାଙ୍କ ନୀତି ପଣ୍ଡିତମାନଙ୍କୁ ମାର୍ଗ ପ୍ରଦର୍ଶନ କରିବ । ଏହାପରି ବରଦେଇ ଭଗବାନ୍ ବ୍ୟାସଦେବ ଫେରିଗଲେ । ଯଥା ସମୟରେ ଦାସୀ ଗର୍ଭରୁ ବିଦୁର ଜନ୍ମଗ୍ରହଣ କଲେ । ସେ ପୂର୍ବ ଜନ୍ମରେ ଧର୍ମରାଜ ଥିଲେ । ଋଷି ଅଣିମାଣ୍ଡବ୍ୟଙ୍କ ଅଭିଶାପ ହେତୁ ତାଙ୍କୁ ଶୂଦ୍ର ଯୋନିରେ ଜନ୍ମଗ୍ରହଣ କରିବାକୁ ପଡ଼ିଲ ।

ମହର୍ଷି ସୂତ କହିଲେ—ମୁନିଗଣ ! ଏହିପରି ଧୃତରାଷ୍ଟ୍ର, ପାଣ୍ଡୁ ଓ ବିଦୁର ମହାରାଜ ବିଚିତ୍ରବୀର୍ଯ୍ୟଙ୍କ କ୍ଷେତ୍ରରେ ବ୍ୟାସଙ୍କ ଔରସରୁ ଉତ୍ପନ୍ନ ହୋଇଥିବାରୁ ବୈଚିତ୍ରବୀର୍ଯ୍ୟ ରୂପେ ଅଭିହିତ ହେଲେ । ଦେବବ୍ରତ ଭୀଷ୍ମ ସାବଧାନତାର ସହିତ ସେମାନଙ୍କୁ ପାଳି ପୋଷି ବଡ଼ କଲେ । ଧୃତରାଷ୍ଟ୍ର ଜନ୍ମାନ୍ଧ ଥିବାରୁ ରାଜ୍ୟର ଅଧିକାରୀ ହୋଇପାରିଲେ ନାହିଁ । ବିଦୁର ଦାସୀପୁତ୍ର ହୋଇ ଥିବାରୁ ପ୍ରାଚୀନ ପରମ୍ପରା ଅନୁସାରେ ରାଜା ହୋଇପାରି ନ ଥିଲେ । ତେଣୁ ପାଣ୍ଡୁଙ୍କୁ କୁରୁକୁଳର ରାଜ ସିଂହାସନରେ ଅଭିଷିକ୍ତ କରାଗଲ । ମହାରାଜ ପାଣ୍ଡୁ ଖୁବ୍ ବଳବାନ୍ ଥିଲେ । ପ୍ରଜାମାନେ ପାଣ୍ଡୁଙ୍କୁ ରାଜା ରୂପେ ପାଇ ଆନନ୍ଦିତ ହେଲେ ।

ଏହା ଶୁଣି ଶୌନକ ପଚାରିଲେ—ମହାଭାଗ ! ଧୃତରାଷ୍ଟ୍ର ଓ ପାଣ୍ଡୁଙ୍କର ସନ୍ତାନ ସନ୍ତତି ହୋଇଥିଲେ କି ନାହିଁ ?

ମହର୍ଷି ସୂତ କହିଲେ—ହଁ ମହାଶୟ ! ହୋଇଥିଲେ; କିନ୍ତୁ ସେମାନେ ସମସ୍ତେ ବ୍ୟାସମୁନିଙ୍କ କୃପାରୁ ଜାତ ହୋଇଥିଲେ । ବର୍ତ୍ତମାନ ମୁଁ କୌରବ ଓ ପାଣ୍ଡବଙ୍କ ଜନ୍ମକଥା କହୁଛି । ଆପଣମାନେ ଶ୍ରଦ୍ଧାର ସହିତ ନରପତିମାନଙ୍କ କାହାଣୀ ଶୁଣନ୍ତୁ ।

### ଛପ୍ପୟ

ଅନ୍ଧ ନ ରାଜା ହୋନ୍ତି ବିଦୁର ଦାସୀ କେ ଜାୟେ ।
ତାତେଁ ମହିପଲେ ପାଣ୍ଡୁ ପ୍ରଜା ଜନ ଭୂପ ବନାୟେ ।
ଅନ୍ଧ କୁମର ଧୃତରାଷ୍ଟ୍ର ସଙ୍ଗ ବ୍ୟାହୀ ଗାନ୍ଧାରୀ ।
ଜାନି ଅନ୍ଧପତି କବହୁଁ ସ୍ୱୟଂ ନହିଁ ବସ୍ତୁ ନିହାରୀ ॥
ପତି ସମାନ ଅନ୍ଧୀ ଭଈ ନୟନନି ପଟ୍ଟୀ ବାନ୍ଧିକେ ।
ବିପୁଲ କୀର୍ତ୍ତି ଜଗମହଁ ଲହୀ, ସ୍ୟୋଁ ଅଖଣ୍ଡ ବ୍ରତ ସାଧିକେ ॥

# ଧୃତରାଷ୍ଟ୍ର ଓ ପାଣ୍ଡୁଙ୍କ ପୁତ୍ର

ଗାନ୍ଧାର୍ଯ୍ୟାଂ ଧୃତରାଷ୍ଟ୍ରସ୍ୟ ଜଜ୍ଞେ ପୁତ୍ରଶତଂ ନୃପ ।
ତତ୍ର ଦୁର୍ଯ୍ୟୋଧନୋ ଜ୍ୟେଷ୍ଠୋ ଦୁଃଶଳା ଚାପି କନ୍ୟକା ॥
ଶାପାନ୍ମୈଥୁନରୁଦ୍ଧସ୍ୟ ପାଣ୍ଡୋଃ କୁନ୍ତ୍ୟାଂ ମହାରଥାଃ ।
ଜାତା ଧର୍ମାନିଲେନ୍ଦ୍ରେଭ୍ୟୋ ଯୁଧିଷ୍ଠିରମୁଖାସ୍ତ୍ରୟଃ ॥
ନକୁଳଃ ସହଦେବଶ୍ଚ ମାଦ୍ର୍ୟାଂ ନାସତ୍ୟଦସ୍ରୟୋଃ

( ଭାଗ ୯ସ୍କ, ୨୨ଅ, ୨୭-୨୮ଶ୍ଳୋ )

## ଷଟ୍‌ପଦୀ

ଏକ ସୂତା ଶତ ପୁତ୍ର ଜନେ ଗାନ୍ଧାରୀ ରାନୀ ।
ଦୁର୍ଯ୍ୟୋଧନ ଜିନ ମାହିଁ ଜ୍ୟେଷ୍ଠ ଅତଶୟ ଅଭିମାନୀ ॥
କୌରବ ସବକୁଁ କହେଁ ପାଣ୍ଡୁସୁତ ପାଂଚହୁଁ ପାଣ୍ଡବ ।
ଅର୍ଜୁନ ହରି କେ ସଖା ଜରାୟୋ ଜନ ବନ ଖାଣ୍ଡବ ॥
ଭରତ ମହଁ କୌରବ ମରେ, ପୁତ୍ର ମିତ୍ର ବାନ୍ଧବ ସହିତ ।
କୁନ୍ତୀ ମାଦ୍ରୀ ମହଁ ଭୟେ, ପାଞ୍ଚ ପାଣ୍ଡୁ କେ ଅମର ସୁତ ॥

ପିତା ମାତା ଯେଉଁ ସନ୍ତାନ ସନ୍ତତିଙ୍କୁ ଜନ୍ମ ଦେଇଥାନ୍ତି ଅଥବା ଯେଉଁ ପୁତ୍ର-ପୁତ୍ରୀଙ୍କୁ ପାଳନ ପୋଷଣ କରିଥାନ୍ତି, ସେମାନଙ୍କୁ ବିବାହିତ ଦେଖିବା ପାଇଁ ସ୍ୱାଭାବିକ ଭାବେ ଇଚ୍ଛା କରନ୍ତି । ମଣିଷ ଯାହାଦ୍ୱାରା ସୁଖ ଅନୁଭବ କରେ ତାହା ନିଜ ପ୍ରିୟଲୋକଙ୍କୁ ଦେବା ପାଇଁ ଚାହେଁ । ଗୃହସ୍ଥର ସବୁଠୁ ବଡ଼ ସୁଖ ହେଲା ମିଥୁନ ହେବା, ଏକରୁ ଦୁଇ ହେବା । ମାତା ପିତା ପୁତ୍ର ପାଇଁ ଯୋଗ୍ୟ ବଧୂ ଓ ପୁତ୍ରୀ ପାଇଁ ଯୋଗ୍ୟ ବର ପାଇବା ନିମିତ୍ତ ନିରନ୍ତର ଚିନ୍ତା କରନ୍ତି । ବିବାହ ଦ୍ୱାରା ସମ୍ବନ୍ଧୀୟ ଲୋକ ଓ ବଂଶର ବୃଦ୍ଧି ଘଟେ । ତେଣୁ ବିବାହ ଗୃହସ୍ଥ ଜୀବନର ସବୁଠାରୁ ବଡ଼ ମହୋତ୍ସବ ଓ ସୁଖପ୍ରଦ କାର୍ଯ୍ୟ ରୂପେ ବିବେଚିତ ହୁଏ ।

ମହର୍ଷି ସୂତ କହିଲେ—ମୁନିଗଣ ! ଶାନ୍ତନୁ ସୁତ ଭୀଷ୍ମ ବଡ଼ ଯତ୍ନରେ ଧୃତରାଷ୍ଟ୍ର ପାଣ୍ଡୁ ଓ ବିଦୁରଙ୍କୁ ପାଳି ପୋଷି ବଡ଼ କଲେ । ତିନି ଭାଇ ଯେତେବେଳେ ଯୁବକ ହୋଇଗଲେ ସେତେବେଳେ ଭୀଷ୍ମ ସେମାନଙ୍କ ବିବାହ ବିଷୟରେ ଚିନ୍ତା କଲେ ।

ଧୃତରାଷ୍ଟ୍ର ବଡ଼ ହୋଇଥିବାରୁ ପ୍ରଥମେ ବିବାହ ହେବାର କଥା । ଧୃତରାଷ୍ଟ୍ର ଅନ୍ଧ ଥିଲେ । ଅନ୍ଧକୁ କିଏ ଝିଅ ଦେବ ? କିନ୍ତୁ ଉତ୍ତମ କୁଳ, ଧନ, ଐଶ୍ୱର୍ଯ୍ୟର ଏପରି ଏକ ପ୍ରଲୋଭନ ଅଛି ଯେ ମହାବ୍ୟାଧିଯୁକ୍ତ ପୁରୁଷର ବି ବିବାହ ହୋଇଯାଏ । ସେ ଦୃଷ୍ଟିରୁ ଧୃତରାଷ୍ଟ୍ର ତ ଖୁବ୍ ସୁନ୍ଦର ରାଜପୁତ୍ର ଥିଲେ ।

ଗାଙ୍ଗେୟ ଭୀଷ୍ମ ଶୁଣିଲେ ଗାନ୍ଧାର ଦେଶର ରାଜା ସୁବଳଙ୍କର ଏକ ରୂପବତୀ, ଗୁଣବତୀ ସୁନ୍ଦରୀ କନ୍ୟା ଅଛି । ତେଣୁ ଧୃତରାଷ୍ଟ୍ରଙ୍କୁ ସେହି କନ୍ୟା ପ୍ରଦାନ ପାଇଁ ଭୀଷ୍ମ ରାଜା ସୁବଳଙ୍କ ପାଖକୁ ଖବର ପଠାଇଲେ । ମହାରାଜ ସୁବଳ ଧୃତରାଷ୍ଟ୍ର ଅନ୍ଧ ହୋଇଥିବାର ଜାଣି ଚିନ୍ତିତ ହୋଇପଡ଼ିଲେ । ନିଜର ସୁନ୍ଦରୀ ସୁକୁମାରୀ ଅଳିଅଳି କନ୍ୟାଙ୍କୁ ଜାଣିଶୁଣି ଜଣେ ଜନ୍ମାନ୍ଧ ସହିତ କିପରି ବିବାହ ଦେବେ ? ପୁଣି ସେ ଭାବିଲେ—ଆମେ ସାଧାରଣ ରାଜା କୁଳୀନ ବଂଶୀୟ ରାଜାମାନେ ଆମ ସହିତ ବୈବାହିକ ସମ୍ପର୍କ ସ୍ଥାପନ ପାଇଁ ରାଜି ହେଉ ନାହାନ୍ତି । ପୁରୁବଂଶ ସହ ଆମର ସମ୍ବନ୍ଧ ସ୍ଥାପିତ ହେବା ଶ୍ରେୟସ୍କର । ଅନ୍ଧ ହେଲେ କଣ ହେଲା ? ଏତେ ବଡ଼ ଘରକୁ ଯାଇ ଝିଅ ତ ମୋର ସୁଖରେ ରହିବ । ଏହିପରି ବହୁତ ଭାବିଚିନ୍ତି ମହାରାଜ ସୁବଳ ବିବାହ ପ୍ରସ୍ତାବ ସ୍ୱୀକାର କଲେ । ତାଙ୍କର ଶକୁନି ନାମରେ ଏକ ପୁତ୍ର ଥିଲା । ସେ ବି ବାପାଙ୍କ ସହିତ ଏକମତ ହେଲା । ଏତେ ଦୂରରୁ ବର ଆଣିବା କଷ୍ଟକର । ଏହା ଭାବି ଶକୁନି ଭଉଣୀକୁ ରଥରେ ବସାଇ ହସ୍ତିନାପୁର ନେଇ ଆସିଲା । ଭୀଷ୍ମ ଏହା ଦେଖି ଖୁବ୍ ଖୁସି ହେଲେ । ଶାସ୍ତ୍ରବିଧି ଅନୁସାରେ ଧୃତରାଷ୍ଟ୍ରଙ୍କ ସହିତ ଗାନ୍ଧାରୀର ବିବାହ ଅନୁଷ୍ଠିତ ହୋଇଗଲା ।

ଯେଉଁଦିନ ଗାନ୍ଧାରୀ ଜାଣିଲେ ଯେ ତାଙ୍କ ବାପା ଜାଣିଶୁଣି ଜଣେ ଜନ୍ମାନ୍ଧ ରାଜକୁମାର ସହିତ ତାଙ୍କର ବିବାହ ସ୍ଥିର କରିଛନ୍ତି, ସେହି ଦିନଠାରୁ ସେ ନିଜ ଆଖିରେ ପଟି ବାନ୍ଧିଦେଲେ । ସେ ଭାବିଲେ—ମୁଁ ମୋର ଅନ୍ଧ ପତିଙ୍କ ପରି ଜୀବନଯାପନ କରିବି, ଯାହାଦ୍ୱାରା ମୋ' ମନରେ ପତି ପ୍ରତି କେବେହେଲେ ଅନାଦର ଭାବ ଜାତ ହେବ ନାହିଁ ।

ଗାନ୍ଧାରୀ ବଡ଼ ପତି ପରାୟଣା ଥିଲେ । ସେ ନିଜର ସ୍ୱଭାବ, ସଦାଚାର, ସଦ୍-ବ୍ୟବହାର ଦ୍ୱାରା ସମସ୍ତଙ୍କୁ ଖୁସି ରଖୁଥିଲେ । ଧୃତରାଷ୍ଟ୍ର ଏପରି ସତୀ, ସାଧ୍ୱୀ, ପତିବ୍ରତା ପତ୍ନୀ ପାଇ ପରମ ଆନନ୍ଦିତ ହେଲେ ଓ ସୁଖୋପଭୋଗ କରିବାକୁ ଲାଗିଲେ ।

ଏହାପରେ ପାଣ୍ଡୁଙ୍କ ବିବାହ ପ୍ରସଙ୍ଗ ଉଠିଲା । ମହାରାଜ ପାଣ୍ଡୁ ବୀର, ସୁନ୍ଦର ଓ ଗୁଣବାନ୍ ଥିଲେ । କିନ୍ତୁ ତାଙ୍କର ବର୍ଣ୍ଣ ଥିଲା ହଳଦିଆ । କୌଣସି କନ୍ୟା ତାଙ୍କୁ ସ୍ୱୟଂ ବରଣ କରୁ ବୋଲି ଭୀଷ୍ମ ଇଚ୍ଛା କରୁଥିଲେ । ସେହି ସମୟରେ ମହାରାଜ କୁନ୍ତିଭୋଜଙ୍କ କନ୍ୟା କୁନ୍ତୀର ସ୍ୱୟମ୍ବର ହେଉଥିଲା । କୁନ୍ତୀ ଥିଲେ ତାଙ୍କର ପାଳିତା କନ୍ୟା । ବୃଷ୍ଣିବଂଶୀୟ ମହାରାଜ ଶୂରସେନ ବଡ଼ ଧାର୍ମିକ ରାଜା ଥିଲେ । ତାଙ୍କର ନାମ ଅନୁସାରେ ଦେଶ ଶୂରସେନ ନାମରେ ପ୍ରସିଦ୍ଧ ଲାଭ କରିଥିଲା । ମହାରାଜ କୁନ୍ତିଭୋଜ ତାଙ୍କର ପିଉସୀ ପୁଅ

ଭାଇ ଥିଲେ । ଉଭୟଙ୍କ ମଧ୍ୟରେ ଗଭୀର ସ୍ନେହ ସମ୍ପର୍କ ଥିଲା । ମହାରାଜ କୁନ୍ତିଭୋଜଙ୍କର କୌଣସି ସନ୍ତାନ ସନ୍ତତି ନ ଥିଲେ । ଶୂରସେନ କହିଲେ—ମୋର ପ୍ରଥମ ସନ୍ତାନ ଆପଣଙ୍କୁ ଦେବି ।

ଭାଗ୍ୟର କଥା, ମହାରାଜ ଶୂରସେନଙ୍କର ପ୍ରଥମେ ଏକ କନ୍ୟା ଜାତ ହେଲା । ପ୍ରତିଜ୍ଞା ଅନୁସାରେ ସେ କନ୍ୟାଟିକୁ କୁନ୍ତିଭୋଜଙ୍କୁ ଦେଇଦେଲେ । ଏକ ସୁନ୍ଦର ସରୋବରରୁ କୁମୁଦିନୀ ଲତାଟିଏ ଆଣି ଅନ୍ୟ ସରୋବରରେ ଯେପରି ତାକୁ ବଢ଼ାଯାଏ ସେହିପରି ମହାରାଜ ଶୂରସେନଙ୍କ ଘରୁ ଆସି ପୃଥା ମହାରାଜ କୁନ୍ତିଭୋଜଙ୍କ ଘରେ କନ୍ୟାଟି ବଢ଼ିବାକୁ ଲାଗିଲା । ସେଠାରେ କୁନ୍ତୀ ନାମରେ ସେ ପରିଚିତ ହେଲା । ମହାରାଜ ଶୂରସେନଙ୍କର କୁନ୍ତୀକୁ ଛାଡ଼ି ଅନ୍ୟ ଚାରିକନ୍ୟା ଓ ବସୁଦେବ ଆଦି ଦଶପୁତ୍ର ଜନ୍ମ ହୋଇଥିଲେ । ସେଥିପାଇଁ କୁନ୍ତୀ ଭଗବାନ୍ କୃଷ୍ଣଙ୍କର ସମ୍ପର୍କରେ ପିଉସୀ ଥିଲେ । ମହାରାଜ ଯଯାତି ନିଜର ପାଞ୍ଚପୁତ୍ରଙ୍କ ମଧ୍ୟରୁ ଚାରିଜଣଙ୍କୁ ରାଜ୍ୟରୁ ବିତାଡ଼ିତ କରିଥିଲେ । କେବଳ ସାନପୁଅ ପୁରୁକୁ ସେ ରାଜା କରାଇଥିଲେ । ତେଣୁ ପୁରୁବଂଶୀୟ ରାଜାମାନେ ସର୍ବଶ୍ରେଷ୍ଠ କ୍ଷତ୍ରିୟ ରୂପେ ବିବେଚିତ ହୁଅନ୍ତି । ଯଦୁବଂଶୀମାନେ ସାଧାରଣ ରାଜା ଥିଲେ । କିନ୍ତୁ ନିୟମାନୁସାରେ ସେମାନଙ୍କର ସମ୍ରାଟ୍ ଛତ୍ର ଧାରଣ କରିବାର ଅଧିକାର ନ ଥିଲା । ପୁରୁବଂଶୀୟ ରାଜା-ମାନଙ୍କ ସହିତ ସେମାନଙ୍କର ବୈବାହିକ ସମ୍ବନ୍ଧ ନ ଥିଲା । କୁନ୍ତୀ ଯେତେବେଳେ କନ୍ୟା ଥିଲେ ସେତେବେଳେ ମହର୍ଷି ଦୁର୍ବାସାଙ୍କ କୃପାରୁ ଦେବହୂତି ବିଦ୍ୟା ଲାଭ କରିଥିଲେ । ମନ୍ତ୍ରର ପରୀକ୍ଷା ପାଇଁ କୁତୂହଳବଶତଃ ସେ ଭଗବାନ୍ ସୂର୍ଯ୍ୟନାରାୟଣଙ୍କୁ ଡାକାଇଥିଲେ । କନ୍ୟାବସ୍ଥାରେ ହିଁ ସେ ପିତାଳୟରେ ସୂର୍ଯ୍ୟଙ୍କ ଔରସ ଜାତ ମହାବୀର କର୍ଣ୍ଣଙ୍କୁ ଜନ୍ମ ଦେଇଥିଲେ । ଲୋକାପବାଦ ଭୟରେ କୁନ୍ତୀ ଏକ ପେଡ଼ିରେ ପିଲାଟିକୁ ରଖି ନଦୀଜଳରେ ଭସାଇ ଦେଇଥିଲେ । ସୂର୍ଯ୍ୟଙ୍କ କୃପାରୁ ସେ ପୂର୍ବପରି କନ୍ୟାତ୍ୱ ଲାଭ କଲେ । ତାଙ୍କ ସୌନ୍ଦର୍ଯ୍ୟର ଖ୍ୟାତି ଚାରିଆଡ଼େ ବ୍ୟାପିଯାଇଥିଲା । ବହୁ ରାଜକୁମାର କୁନ୍ତିଭୋଜଙ୍କୁ କୁନ୍ତୀର ପାଣି ପ୍ରାର୍ଥନା କଲେ । କାହାକୁ ଦେବେ ଓ କାହାକୁ ନ ଦେବେ ଏହା ଭାବି କୁନ୍ତିଭୋଜ କନ୍ୟାର ସ୍ୱୟମ୍ବର ଆୟୋଜନ କଲେ । ସେହି ସ୍ୱୟମ୍ବରରେ ମହାରାଜ ପାଣ୍ଡୁ ମଧ୍ୟ ଯୋଗ ଦେଲେ । କୁନ୍ତୀ ମହାରାଜ ପାଣ୍ଡୁଙ୍କର ବୀରତ୍ୱ ବିଷୟରେ ଶୁଣିଥିଲେ । ତେଣୁ ସେ ତାଙ୍କର କଣ୍ଠରେ ବରମାଳା ପକାଇଦେଲେ । ଅନ୍ୟ ରାଜା ଓ ରାଜକୁମାରମାନେ ନିରାଶ ହୋଇ ଫେରିଗଲେ । ପାଣ୍ଡୁଙ୍କ ସହିତ କୁନ୍ତୀଙ୍କ ବିବାହ ବଡ଼ ଆଡ଼ମ୍ବରରେ ପାଳିତ ହେଲା । କୁନ୍ତୀଙ୍କ ପରି ସୁନ୍ଦରୀ ପତ୍ନୀ ପାଇ ପାଣ୍ଡୁ ବହୁତ ଖୁସି ହେଲେ ।

ବହୁଦିନ ପର୍ଯ୍ୟନ୍ତ କୁନ୍ତୀଙ୍କର କୌଣସି ସନ୍ତାନ ସନ୍ତତି ନ ହେବାରୁ ଭୀଷ୍ମ ପାଣ୍ଡୁଙ୍କର ଦ୍ୱିତୀୟ ବିବାହ ପାଇଁ ଚିନ୍ତାକଲେ । ମହାରାଜ ମଦ୍ରରାଜାଙ୍କର ମାଦ୍ରୀ ନାମରେ ଏକ ସୁନ୍ଦରୀ କନ୍ୟା ଥିବାର ଭୀଷ୍ମ ଖବର ପାଇଲେ । ଶାସ୍ତ୍ରରେ ମଦ୍ରଦେଶର ବଡ଼ ନିନ୍ଦା କରାଯାଇଛି । ମହାଭାରତରେ ମହାବୀର କର୍ଣ୍ଣ ନିଜର ସାରଥି ହୋଇଥିବା ମଦ୍ରରାଜ

ଶାଳ୍ୟଙ୍କୁ ସେଥିପାଇଁ ବାରମ୍ବାର ତାଚ୍ଛଲ୍ୟ କରିଛନ୍ତି । ସେ ଯାହାହେଉ 'ସ୍ତ୍ରୀରତ୍ନଂ ଦୁଷ୍କୁଳାଦପି' ବୋଲି ଶାସ୍ତ୍ରକାରମାନେ କହିଛନ୍ତି । ମଦ୍ରରାଜ ତ କ୍ଷତ୍ରିୟ ଥିଲେ । ତେଣୁ ଦେବବ୍ରତ ଭୀଷ୍ମ ମନ୍ତ୍ରୀ, ପୁରୋହିତ ଓ ବ୍ରାହ୍ମଣମାନଙ୍କ ସାଙ୍ଗରେ ସ୍ୱୟଂ ବାହ୍ଲୀକ ବଂଶାବତଂସ ମହାରାଜ ମଦ୍ରରାଜଙ୍କ ପାଖକୁ ଗଲେ । ମଦ୍ରରାଜ ଆନନ୍ଦରେ ସମସ୍ତଙ୍କୁ ସ୍ୱାଗତ କଲେ । ଯଥାବିଧି ପୂଜା ଓ ଆତିଥ୍ୟ ପରେ ମଦ୍ରରାଜ ନମ୍ରତାର ସହିତ ପଚାରିଲେ—ପ୍ରଭୋ ! ଆପଣ ଏତେ ନଦ, ନଦୀ, ବନ, ପର୍ବତ ପାର ହୋଇ ମୋ'ଘରେ ପଦାର୍ପଣ କରିବାର କାରଣ କ'ଣ ? ମୋ'ଦ୍ୱାରା ଯଦି କିଛି କାର୍ଯ୍ୟ ହେବ ତାହା ଆଦେଶ ଦିଅନ୍ତୁ ।

ଭୀଷ୍ମ କହିଲେ—ରାଜନ୍ ! ମୁଁ ଶୁଣିଛି, ଆପଣଙ୍କର ବିବାହଯୋଗ୍ୟ, କନ୍ୟାଟିଏ ଅଛି । ତାକୁ ମୋ'ର ପୁତ୍ରରାଜ ବିବାହ ପାଇଁ ମାଗିବାକୁ ଆସିଛି । ଏହା ଶୁଣି ପ୍ରସନ୍ନ ହୋଇ ମଦ୍ରରାଜା କହିଲେ—ମହାରାଜ ! ମୋ ପକ୍ଷରେ ଏହା ପରମ ସୌଭାଗ୍ୟର ବିଷୟ । ପୁରୁବଂଶୀୟମାନଙ୍କ ସହିତ ସମ୍ପର୍କ ସ୍ଥାପନ କରିବା ପାଇଁ କିଏ ଇଚ୍ଛୁକ ନୁହେଁ । ରାଜନ୍ ! ମୋର କନ୍ୟା ପାଇଁ ଏପରି ସୁନ୍ଦର ବର, ସୌଭାଗ୍ୟଶାଳୀ, ସମୃଦ୍ଧିଶାଳୀ, ଗୌରବାନ୍ୱିତ କୁଳ ମୋତେ ଆଉ କେଉଁଠି ମିଳିବ । କିନ୍ତୁ ରାଜନ୍ ! ଆମର କୁଳପରମ୍ପରାଗତ ଏକ ସଦାଚାର ଅଛି ।

ଦେବବ୍ରତ ଭୀଷ୍ମ ପଚାରିଲେ—କ'ଣ ସେ ପରମ୍ପରା ?

ମଦ୍ରରାଜ କହିଲେ—ଆମର ଏଠାରେ ବର ପାଖରୁ ଧନ ନେଇ କନ୍ୟା ବିବାହ କରାଯାଏ ।

ଭୀଷ୍ମ କହିଲେ—ଏହା ତ' ଭଲ କଥା ନୁହେଁ । କନ୍ୟାର ଧନ ନେଇ ବିବାହ କରିବା ନିନ୍ଦନୀୟ କାର୍ଯ୍ୟ ।

ମଦ୍ରରାଜା କହିଲେ—ଯାହାହେଉ ପଛକେ ମୋତେ କୁଳପରମ୍ପରା ପାଳନ କରିବାକୁ ହେବ ।

ଏହା ଶୁଣି ଭୀଷ୍ମ ହସି ହସି କହିଲେ—ଠିକ୍ ଅଛି । ଆପଣ ପୂର୍ବପୁରୁଷଙ୍କ ପରମ୍ପରା ପାଳନ କରନ୍ତୁ । ମୁଁ ଆପଣଙ୍କୁ ଯଥେଷ୍ଟ ଧନ ଦେବି । ଏହା କହି ଭୀଷ୍ମ ବହୁତ ସୁନା, ମଣି, ମାଣିକ୍ୟ, ରତ୍ନ, ସୁନାଅଳଙ୍କାର, ଅଶ୍ୱ, ଗଜ ପ୍ରଭୃତି ମଦ୍ରରାଜଙ୍କୁ ଦେଲେ । ସେ ସବୁ ନେଇ ମଦ୍ରରାଜ ଶଲ୍ୟ ନିଜର ଭଉଣୀ ମାଦ୍ରୀକୁ ବସ୍ତ୍ରାଭୂଷଣରେ ଅଲଙ୍କୃତ କରି ଆଣିଲେ ଏବଂ ଭୀଷ୍ମ ମାଦ୍ରୀକୁ ନେଇ ହସ୍ତିନାପୁର ଆସିଲେ ଓ ପାଣ୍ଡୁଙ୍କ ସହିତ ତା'ର ବିବାହ କରିଦେଲେ । ପାଣ୍ଡୁଙ୍କର କୁନ୍ତୀ ଓ ମାଦ୍ରୀ ନାମରେ ଦୁଇପତ୍ନୀ ଓ ଧୃତରାଷ୍ଟ୍ରଙ୍କର ଗାନ୍ଧାରୀ ନାମରେ ଏକ ପତ୍ନୀ ରହିଲେ । ବିଦୁରଙ୍କର ବିବାହ ହୋଇ ନ ଥିଲା । ଭୀଷ୍ମ ସେଥିପାଇଁ ଚିନ୍ତିତ ଥିଲେ ।

ଦିନେ ମଥୁରାରୁ ଆସିଥିବା କୌଣସି ବ୍ରାହ୍ମଣ ଭୀଷ୍ମଙ୍କୁ କହିଲେ—ମହାରାଜ ଦେବକଙ୍କର ଶୂଦ୍ରା ଗର୍ଭରୁ ଉତ୍ପନ୍ନ ଏକ ଯୁବତୀ କନ୍ୟା ଅଛି । କନ୍ୟାଟି ସୁଶୀଳା ଓ

ଧର୍ମପରାୟଣା । ଏହା ଶୁଣିବା ମାତ୍ରେ ଭୀଷ୍ମ ମହାରାଜ ଆହୁକଙ୍କ ପୁତ୍ର ଉଗ୍ରସେନଙ୍କ ଭାଇ ଦେବକଙ୍କ ପାଖକୁ ଗଲେ ଏବଂ ବିଦୁରଙ୍କ ପାଇଁ ତାଙ୍କ କନ୍ୟାର ପାଣି ପ୍ରାର୍ଥନା କଲେ । ମହାରାଜ ଦେବକ ଖୁସି ହୋଇ ସର୍ବସୁଲକ୍ଷଣା କନ୍ୟାକୁ ବିନା ଦ୍ୱିଧାରେ ଦାନ କଲେ । ଭୀଷ୍ମ କନ୍ୟାକୁ ନେଇ ହସ୍ତିନାପୁର ଆସିଲେ ଓ ବିଦୁରଙ୍କ ସହିତ ତା'ର ବିବାହ କରିଦେଲେ । ମହାରାଜ ଦେବକଙ୍କର ଦେବକୀ ଆଦି ସାତୋଟି କନ୍ୟାଙ୍କ ବିବାହ ବସୁଦେବଙ୍କ ସହିତ ସମ୍ପନ୍ନ ହୋଇଥିଲା । ମାତା ଦେବକୀଙ୍କ ଗର୍ଭରୁ ଭଗବାନ୍ ଶ୍ରୀକୃଷ୍ଣ ଅବତୀର୍ଣ୍ଣ ହୋଇଥିଲେ । ସେହି ସମ୍ବନ୍ଧରୁ ବିଦୁର ଶ୍ରୀକୃଷ୍ଣଙ୍କର ମଉସା ଥିଲେ । ଏହିପରି ତିନି ଭାଇଙ୍କର ବିବାହ ହୋଇଗଲା । ଯଥା ସମୟରେ ଧୃତରାଷ୍ଟ୍ରଙ୍କର ଶହେପୁଅ ଓ ଏକ କନ୍ୟା ଜନ୍ମ ହେଲେ ।

ଏହା ଶୁଣି ଶୌନକ ପଚାରିଲେ—ମହାଭାଗ ! ଧୃତରାଷ୍ଟ୍ରଙ୍କର ଶହେ ପୁଅ କିପରି ଜନ୍ମ ହେଲେ ? ଶହେ ବର୍ଷରେ ଶହେ ଜନ୍ମ ହେଲେ ନା ଦଶ ଦଶ, ପାଞ୍ଚ ପାଞ୍ଚ କରି ଜନ୍ମ ହେଲେ ?

ମହର୍ଷି ସୂତ କହିଲେ—ମହାଶୟ ! ଏକାଥରକେ ଶହେ ପୁଅ ଜନ୍ମ ହୋଇଥିଲେ । କିପରି ଜନ୍ମ ହେଲେ ସେକଥା କହୁଛି ଶୁଣନ୍ତୁ । ଦିନେ ବେଦବ୍ୟାସ ଗାନ୍ଧାରୀଙ୍କର ଅତିଥି ହୋଇଥିଲେ । ଗାନ୍ଧାରୀ ଆଦର ସହକାରେ ତାଙ୍କୁ ସ୍ୱାଗତ କଲେ ଓ ପୂଜା କଲେ । ବ୍ୟାସଦେବ ସନ୍ତୁଷ୍ଟ ହୋଇ କହିଲେ—ଝିଅ ! ମୁଁ ତୋ' ଉପରେ ପ୍ରସନ୍ନ ହୋଇଛି । ତୁ ମୋ'ଠାରୁ କୌଣସି ବର ମାଗିନେ ।

ଗାନ୍ଧାରୀ ହାତ ଯୋଡ଼ି କହିଲେ—ଭଗବାନ୍ ! ମୋର ଶହେପୁତ୍ର ଜନ୍ମ ହୁଅନ୍ତୁ । ବ୍ୟାସଦେବ 'ତଥାସ୍ତୁ' କହି ଚାଲିଗଲେ । ଗାନ୍ଧାରୀ ଯଥାସମୟରେ ଗର୍ଭବତୀ ହେଲେ । ନଅ ମାସ ପୂର୍ଣ୍ଣ ହେଲା । ଦଶ ମାସ କଟିଗଲା । ଶେଷରେ ବର୍ଷଟିଏ ବିତିଗଲେ ମଧ୍ୟ ପ୍ରସବର କୌଣସି ଲକ୍ଷଣ ପ୍ରକାଶ ପାଇଲା ନାହିଁ । ଗାନ୍ଧାରୀ ଚିନ୍ତିତ ହୋଇ ପଡ଼ିଲେ । ପୁଣି ମାସେ ମାସେ କରି ବର୍ଷେ ବିତିଲା । ତଥାପି କିଛି ହେଲା ନାହିଁ । ସେ ଶୁଣିଲେ କୁନ୍ତୀ ବଣରେ ଥାଇ ଏକ ସୁନ୍ଦର ପୁଅ ଜନ୍ମ କରିଛି । ତାଙ୍କ ମନରେ ଈର୍ଷ୍ୟା ଜାତ ହେଲା । ସେ ଭାବିଲେ—ମୋ'ଠାରୁ ସାନ ହୋଇ ସେ ପୁତ୍ରବତୀ ହେଲା ଆଉ ମୁଁ ବଡ଼ ହୋଇ ମୋର କିଛି ହେଲା ନାହିଁ । ଦୁଇବର୍ଷ ହେଲା ଗର୍ଭବତୀ ହେଲିଣି । ତଥାପି ପେଟ ବଢ଼ୁନାହିଁ କି ଗର୍ଭ ବାହାରକୁ ଆସୁନାହିଁ । ମୋ' ପେଟରେ ଭୂତ, ପ୍ରେତ, ରାକ୍ଷସ କିଏ ରହିଲା ? ଏହିପରି ଭାବି ଅତ୍ୟଧିକ କୋଧାନ୍ୱିତ ହୋଇ ସେ ଗର୍ଭକୁ ହାତ ମାରି ମାରି ବାହାର କଲେ । ଏକ ମାଂସପିଣ୍ଡ ଜନ୍ମହେଲା । ତା'ର ହାତ, ପାଦ, ମୁଖ କିଛି ନ ଥିଲା । ସେ ଦାସୀକୁ କହିଲେ—ଏ ମାଂସପିଣ୍ଡକୁ ନେଇ ବାହାରେ ପକାଇଦେ ।

ଦାସୀ ଯେତେବେଳେ ମାଂସପିଣ୍ଡଟି ଫିଙ୍ଗିଦେବାକୁ ଯାଉଛି ଠିକ୍ ସେତିକିବେଳେ ବ୍ୟାସଦେବ ଆବିର୍ଭୂତ ହେଲେ ଓ କହିଲେ—ଅପେକ୍ଷା କର । ଦାସୀ ଅଟକିଗଲା ।

ଭଗବାନ୍ ବ୍ୟାସ ଗାନ୍ଧାରୀଙ୍କ ପାଖକୁ ଯାଇ ପଚାରିଲେ—ପୁତ୍ରି ! କଥା କ'ଣ ?

ଗାନ୍ଧାରୀ କହିଲେ—ପ୍ରଭୋ ! ଆପଣ ଶହେ ପୁତ୍ର ହେବ ବୋଲି ବର ଦେଲେ । ଦୁଇବର୍ଷ ମଧ୍ୟରେ ଗୋଟିଏ ହେଲେ ପୁତ୍ର ଜନ୍ମ ହେଲାନାହିଁ ଶେଷରେ ମାଂସପିଣ୍ଡଟିଏ । ସେ ବି ବାହାରି ନ ଆ'ନ୍ତା ମୁଁ ତାକୁ ବଳପୂର୍ବକ ବାହାର କରିଛି ।

ବ୍ୟାସଦେବ କହିଲେ—ଝିଅ ! ମୁଁ ଅଜ୍ଞାରେ ବି କେବେ ମିଛ କହି ନାହିଁ । ତୋର ଶହେ ପୁତ୍ର ନିଶ୍ଚୟ ହେବେ ; କିନ୍ତୁ ତୁ ଈର୍ଷ୍ୟାବଶତଃ ଚଞ୍ଚଳ ହୋଇପଡ଼ିଲୁ । ଏହି ଗର୍ଭ ଦୁଇ ବର୍ଷରୁ ଅଧିକ କାଳ ରହିଥାନ୍ତା । ଠିକ୍ ଅଛି । କିଛି ଚିନ୍ତା କରନା । ତୁ ଏହି ମାଂସ ପିଣ୍ଡକୁ ଗୋଟିଏ ପାତ୍ରରେ ରଖି ପ୍ରତିଦିନ ଥଣ୍ଡା ପାଣି ସେଚନ କରୁଥା । କିଛି ଦିନ ପରେ ତାହା ଆପେ ଆପେ ଶହେ ଭାଗ ହୋଇଯିବ । ସେଗୁଡ଼ିକୁ ଚୋଟିଏ ଗୋଟିଏ ସ୍ୱତନ୍ତ୍ର ଘୃତଭାଣ୍ଡ ରଖି ତାର ମୁହଁ ବନ୍ଦ କରିଦେବୁ । ଦୁଇବର୍ଷ ପର୍ଯ୍ୟନ୍ତ ଖୋଲିବୁ ନାହିଁ । ଶହେଟି ଭାଣ୍ଡରୁ ଶହେ ପୁତ୍ର ଜନ୍ମ ହେବେ । ଏବେ ମୋର ଆଦେଶ ଅନୁସାରେ କାମ କଲେ ଶହେ ପୁତ୍ରର ଜନନୀ ହେବୁ । ଏହା ଶୁଣି ଗାନ୍ଧାରୀ ସ୍ୱୀକୃତ ଦେବାରୁ ଭଗବାନ ବ୍ୟାସଦେବ ଅନ୍ତର୍ଦ୍ଧାନ ହୋଇଗଲେ । ଗାନ୍ଧାରୀ ବଡ଼ ବଡ଼ ଘୃତ ପାତ୍ର ପୂର୍ଣ୍ଣ କରି ରଖିଲେ । ଦିନେ ଦେଖିଲେ ମାଂସପିଣ୍ଡଟି ବୁଢ଼ା ଅଙ୍ଗୁଳି ପରି ଶ୍ରେଷ୍ଠ ଶ୍ରେଷ୍ଠ ଖଣ୍ଡରେ ବିଭକ୍ତ ହୋଇଛି । ସେ ଖୁବ ସାବଧାନତା ସହକାରେ ସେଥିରୁ ଖଣ୍ଡିଏ ଖଣ୍ଡିଏ ନେଇ ଦାସୀ ସାହାଯ୍ୟରେ ଘୃତ ପାତ୍ରରେ ସ୍ଥାପନ କଲେ । ଏହି ଅବସରରେ ତାଙ୍କ ମନରେ କନ୍ୟାଟିଏ ପାଇଁ ସଂକଳ୍ପ ଉଦୟ ହେଲା । ସେ କନ୍ୟା କଥା ଭାବୁଥିବା ସମୟରେ ଦାସୀ କହିଲା—ମୁଁ ଶହେଟି ପାତ୍ର ପୂର୍ଣ୍ଣ କରି ସାରିଲିଣି । ତଥାପି ଆଉ ଖଣ୍ଡିଏ ଅଛି ।

ଗାନ୍ଧାରୀ କହିଲେ—ତାକୁ ବି ଏକ ସ୍ୱତନ୍ତ୍ର ଘୃତପାତ୍ରରେ ରଖି ଢାଙ୍କିଦେ । ଧାଈ ସେହିପରି କଲା । ଦୁଇବର୍ଷ ପରେ ପ୍ରଥମ ପାତ୍ରଟି ଖୋଲାଯିବାରୁ ତା'ଭିତରୁ ଏକ ବଡ଼ ହୃଷ୍ଟପୁଷ୍ଟ ବାଳକ ବାହାରିଲା । ସେହି ବାଳକ ଦୁର୍ଯ୍ୟୋଧନ ନାମରେ ପରିଚିତ ହେଲା । ତା'ପରେ କ୍ରମରେ ପ୍ରତିଦିନ ଗୋଟିଏ କରି ପାତ୍ର ଖୋଲାଗଲା । ଶହେଟି ପାତ୍ରରୁ ଶହେ ପୁଅ ଉତ୍ପନ୍ନ ହେଲେ । ସର୍ବଶେଷରେ ଶେଷପାତ୍ରଟି ଖୋଲିବାରୁ ସେଥିରୁ କନ୍ୟାଟିଏ ବାହାରିଲା । ସେହି କନ୍ୟା ଦୁଃଶଳା ନାମରେ ନାମିତା ହେଲା । ଜୟଦ୍ରଥ ସହିତ ଦୁଃଶଳାର ବିବାହ ହୋଇ ଥିଲା । ଦୁର୍ଯ୍ୟୋଧନାଦି ଭାଇମାନେ ପରାକ୍ରମଶାଳୀ ଥିଲେ । ସେମାନଙ୍କର ଅନେକ ପୁତ୍ର ଜନ୍ମ ହୋଇଥିଲେ । କିନ୍ତୁ ସମସ୍ତେ ମହାଭାରତ ଯୁଦ୍ଧରେ ନିହତ ହୋଇଥିଲେ । ତେଣୁ ଧୃତରାଷ୍ଟ୍ରଙ୍କ ବଂଶ ଲୋପ ପାଇଲା । ବର୍ତ୍ତମାନ ମୁଁ ପାଣ୍ଡୁଙ୍କ ବଂଶାବଳୀ ବର୍ଣ୍ଣନା କରୁଛି ।

ମହାରାଜ ପାଣ୍ଡୁ ଥିଲେ ମୃଗୟାପ୍ରିୟ । ରାଜକାର୍ଯ୍ୟ ସୁଖଭୋଗରେ ତାଙ୍କର ମନ ଲାଗୁ ନ ଥିଲା । ସେ ରାଜ୍ୟଭାର ନିଜର ବଡ଼ ଭାଇ ଧୃତରାଷ୍ଟ୍ରଙ୍କୁ ଦେଇ ଦୁଇ ପତ୍ନୀଙ୍କ ସହିତ ବଣକୁ ଚାଲିଗଲେ । ବଦ୍ରିକାରଣ୍ୟ ନିକଟବର୍ତ୍ତୀ ପର୍ବତ ଶିଖରରେ ସେ ଆନନ୍ଦରେ ବିହାର କରିବାକୁ ଲାଗିଲେ । ସେ ଏକ ଶିବଲିଙ୍ଗ ସେଠାରେ ପ୍ରତିଷ୍ଠା କରିଥିଲେ । ବଦ୍ରିକାରଣ୍ୟଙ୍କ ନିମ୍ନ

ପ୍ରଦେଶରେ ସେହି ଶିବଲିଙ୍ଗ ଅଦ୍ୟାବଧି ପାଣ୍ଡୁକେଶ୍ୱର ନାମରେ ପରିଚିତ । ତା' ଉପରେ ଥିବା ପର୍ବତରେ ସାତୋଟି ଶୃଙ୍ଗ ଅଛି । ଦେବତାଙ୍କଦ୍ୱାରା ନିର୍ମିତ ଏକ ହେମକୁଣ୍ଡ ଅଛି । ଲୋକପାଳମାନଙ୍କ ଦ୍ୱାରା ନିର୍ମିତ ହୋଇଥିବାରୁ ଏହି ତୀର୍ଥ ଲୋକପାଳ ତୀର୍ଥ ନାମରେ ଅଭିହିତ । ମହାରାଜ ପାଣ୍ଡୁ ଅଭିଶାପ ବଶତଃ ସ୍ୱୟଂ ସନ୍ତାନ ଉତ୍ପାଦନ ପାଇଁ ସମର୍ଥ ନ ଥିଲେ । କିନ୍ତୁ ସେ ଦେବତାମାନଙ୍କ ସାହାଯ୍ୟରେ ଦୁଇ ରାଣୀଙ୍କଠାରୁ ପାଞ୍ଚ ପୁତ୍ର ଉତ୍ପନ୍ନ କରାଇଥିଲେ ।

ଏହା ଶୁଣି ଶୌନକ ପଚାରିଲେ—ମହାଭାଗ ! ମହାରାଜ ପାଣ୍ଡୁଙ୍କୁ କିଏ ଅଭିଶାପ ଦେଇ ସନ୍ତାନ ଉତ୍ପନ୍ନ ପାଇଁ ଅଯୋଗ୍ୟ କରିଦେଇଥିଲେ ? ଦେବତାମାନେ କୁନ୍ତୀ ଓ ମାଦ୍ରୀଙ୍କଦ୍ୱାରା କିପରି ପୁତ୍ର ଉତ୍ପନ୍ନ କରାଇଲେ ।

ମହର୍ଷି ସୂତ କହିଲେ—ମହାଶୟ ! ଶୁଣନ୍ତୁ । ଥରେ ମହାରାଜ ପାଣ୍ଡୁ ମୃଗୟା କରିବାକୁ ଯାଇ ଏକ ମୃଗଦମ୍ପତିଙ୍କୁ ସଙ୍ଗମ କରୁଥିବାର ଦେଖିଲେ । ରାଜା ଲୁଚି ରହି ଦୁଇଟି ଶର ମାରି ସେହି ଦମ୍ପତିଙ୍କୁ କ୍ଷତବିକ୍ଷତ କରିପକାଇଲେ । ବାଣବିଦ୍ଧ ହେବାମାତ୍ରେ ଦୁହେଁ ଭୂମିରେ ପଡ଼ିଗଲେ । ସେତେବେଳେ ମୃଗ ମାନବ ସୁଲଭ ବାଣୀରେ କହିଲା— ରାଜନ୍ ! ଆପଣ ଆମକୁ ମାରି ଘୋର ପାପ ଅର୍ଜନ କଲେ ! ମୁଁ ପ୍ରକୃତରେ ମୃଗ ନୁହେଁ । ମୁଁ ହେଉଛି କିନ୍ଦମ ନାମକ ଋଷି । ଯୋଗବଳରେ ମୃଗୀ ରୂପିଣୀ ନିଜର ପତ୍ନୀଠାରେ ଗର୍ଭାଧାନ କରୁଥିଲି ।

ରାଜା ବିନୀତ ହୋଇ କହିଲେ—ବ୍ରହ୍ମନ୍ ! ମୁଁ ତ ଜାଣେ ନାହିଁ, ଆପଣ ଜଣେ ଋଷି ବୋଲି ।

ମୃଗ କହିଲା—ମୃଗକୁ ମଧ୍ୟ ଏପରି ଲୁଚି ରହି ମାରିବା ଉଚିତ ନୁହେଁ ।

ମହାରାଜ କହିଲେ—ଭଗବନ୍ ! ମୃଗୟା ନିୟମରେ ଏପରି କିଛି ନାହିଁ । ପଶୁ ଅସାବଧାନ ଅବସ୍ଥାରେ ଥାଉ, ଶୋଇଥାଉ ବା ବସିଥାଉ ରାଜା ତାକୁ କଳେ ବଳେ କୌଶଳେ ମାରିପାରିବେ ।

ମୃଗ କହିଲା—ଦେଖନ୍ତୁ, ମୈଥୁନ ସମୟଟି ପ୍ରାଣୀମାନଙ୍କ ପାଇଁ ଅତୀବ ହିତକର, ସୁଖକର ଓ ପ୍ରିୟକର । ସେଥିରେ ଯେ ବିଘ୍ନ କରେ ସେ ପାପଭାଗୀ ହୁଏ । ମୁଁ ସନ୍ତାନ କାମନାରେ ନିଜ ପତ୍ନୀଠାରେ ଗର୍ଭାଧାନ କରୁଥିଲି । ମୋର ଅଭିଳାଷ ପୂର୍ଣ୍ଣ ହୋଇ ନାହିଁ । ଆପଣ ମଝିରେ ଆମର ଆନନ୍ଦକୁ ନଷ୍ଟ କରିଦେଲେ । ଆପଣ ମୃଗରୂପଧାରୀ ଆମକୁ ମାରିଛନ୍ତି । ତେଣୁ ବ୍ରହ୍ମହତ୍ୟା ଦୋଷ ଲାଗିବ ନାହିଁ । କିନ୍ତୁ ମୁଁ ଅଭିଶାପ ଦେଉଛି, ଆପଣ ଯେତେବେଳେ ନିଜ ପତ୍ନୀ ସହିତ ମୈଥୁନରେ ପ୍ରବୃତ୍ତ ହେବେ ସେତେବେଳେ ଆପଣଙ୍କର ଏହି ଦଶା ହେବ ଓ ଆପଣ ତତ୍କାଳ ମୃତ୍ୟୁବରଣ କରିବେ । ଆପଣଙ୍କ ପତ୍ନୀ ମଧ୍ୟ ମୃଗୀ ପରି ଆପଣଙ୍କ ସହିତ ସତୀ ହୋଇଯିବ । ଏହି ଅଭିଶାପ ଦେଇ ମୃଗ ଓ ମୃଗୀ ପରଲୋକ ଗମନ କଲେ । ରାଜା ବହୁତ ଦୁଃଖ କଲେ ଓ ସବୁଦିନ ପାଇଁ ସ୍ତ୍ରୀସଙ୍ଗ ତ୍ୟାଗ କଲେ ।

ମହାରାଜ ପାଣ୍ଡୁ ମୃଗର କଥା ଶୁଣି ବିରାଗଭାବାପନ୍ନ ହୋଇଗଲେ । ସେହି କାରଣରୁ ସେ ରାଜ୍ୟ ତ୍ୟାଗକରି ଦୁଇ ପତ୍ନୀଙ୍କ ସହିତ ଲୋକପାଳ ପର୍ବତକୁ ଚାଲିଗଲେ । ସେଠାରେ ମୁନିମାନଙ୍କଠାରୁ ଶୁଣିଲେ ଯାହାର ପୁତ୍ର ନାହିଁ, ତାକୁ ସ୍ୱର୍ଗପ୍ରାପ୍ତି ହୁଏ ନାହିଁ । ତା'ର ପିତୃଗଣ ଦୁଃଖୀ ହୁଅନ୍ତି । ଏହା ଜାଣିବା ପରେ ରାଜାଙ୍କ ମନରେ ପୁତ୍ର ପ୍ରାପ୍ତି କାମନା ଜାତ ହେଲା । ସେ ନିଜେ ପୁତ୍ର ଉତ୍ପନ୍ନ ପାଇଁ ଅସମର୍ଥ ଥିବାରୁ ଋଷିମାନଙ୍କଦ୍ୱାରା ପୁତ୍ର ଉତ୍ପାଦନ କରିବା ପାଇଁ କୁନ୍ତୀଙ୍କୁ ଅନୁରୋଧ କଲେ । କୁନ୍ତୀ ସେକଥା ସ୍ୱୀକାର କଲେ ନାହିଁ, ମାତ୍ର ବାଲ୍ୟକାଳରେ ଦୁର୍ବାସାଙ୍କଠାରୁ ପ୍ରାପ୍ତ ଦେବଦୂତ ବିଦ୍ୟା କଥା କହିଲେ ।

ଏହା ଶୁଣି ପ୍ରସନ୍ନ ହୋଇ ମହାରାଜ ପାଣ୍ଡୁ ଦେବତାମାନଙ୍କୁ ନିମନ୍ତ୍ରଣ କରିବା ପାଇଁ କୁନ୍ତୀଙ୍କୁ କହିଲେ । ପତିଙ୍କ ଆଦେଶ ପାଇ କୁନ୍ତୀ କ୍ରମଶଃ ଧର୍ମ, ବାୟୁ ଓ ଦେବେନ୍ଦ୍ରଙ୍କୁ ଆବାହନ କଲେ । ସେମାନେ ଯୋଗ ମୂର୍ତ୍ତି ଧାରଣ କରି କୁନ୍ତୀଙ୍କର ଗର୍ଭାଧାନ କଲେ । ଯଥା ସମୟରେ କୁନ୍ତୀ ଯୁଧିଷ୍ଠିର, ଭୀମ ଓ ଅର୍ଜୁନ ଏହି ତିନିପୁତ୍ରଙ୍କୁ ଜନ୍ମ ଦେଲେ ।

ଏହା ପରେ ବି ମହାରାଜ କୁନ୍ତୀଙ୍କୁ ଅନ୍ୟ ଦେବତାଙ୍କୁ ଡାକି ପୁତ୍ର ଉତ୍ପନ୍ନ କରିବାକୁ କହିଲେ । ଏହା ଶୁଣି କୁନ୍ତୀ କହିଲେ –ମହାରାଜ ! ଆପତ୍କାଳରେ ତିନି ପୁତ୍ରରୁ ଅଧିକ ଉତ୍ପନ୍ନ କରିବା ଉଚିତ ନୁହେଁ । ନିଜ ପତିଠାରୁ ଯେତେ ପୁତ୍ର ହେବେ ହୁଅନ୍ତୁ ପଛକେ, ମୁଁ ଅନ୍ୟ କୌଣସି ଦେବତାଙ୍କୁ ଆବାହନ କରିପାରିବି ନାହିଁ ।

ମହାରାଜ କହିଲେ—ଆଚ୍ଛା, ମାଦ୍ରୀ ପାଇଁ କୌଣସି ଦେବତାଙ୍କୁ ଆବାହନ କର । କୁନ୍ତୀ ଏହା ମାଦ୍ରୀଙ୍କୁ କହିଲେ । ମାଦ୍ରୀ ଅଶ୍ୱିନୀ କୁମାରଙ୍କୁ ଆହ୍ୱାନ କଲେ । ତାଙ୍କଠାରୁ ନକୁଳ ଓ ସହଦେବ ଜନ୍ମ ହେଲେ । ଏହିପରି ପଞ୍ଚ ପାଣ୍ଡବଙ୍କର ଜନ୍ମ ହେଲା । ପାଣ୍ଡବମାନଙ୍କ ଜନ୍ମସ୍ଥାନର ବହୁ ପର୍ବତ, ଝରଣା, ଗ୍ରାମ, ପୁଷ୍କରିଣୀ, ଶିଳାଖଣ୍ଡ ଅଦ୍ୟାବଧି ସେମାନଙ୍କ ନାମର ସ୍ୱାକ୍ଷର ବହନ କରୁଛି । ପାଞ୍ଚ ପାଣ୍ଡବଙ୍କୁ ଦେଖି ମହାରାଜ ପାଣ୍ଡୁ ଆନନ୍ଦିତ ହେଲେ । ଧୀରେ ଧୀରେ ପିଲମାନେ ବଢ଼ିବାକୁ ଲାଗିଲେ । ଋଷିମାନଙ୍କ ଆଶ୍ରମରେ ସେମାନେ ଜନ୍ମ ହୋଇଥିଲେ ଓ ସେହିଠାରେହିଁ ସେମାନଙ୍କର ଜାତକର୍ମାଦି ସଂସ୍କାର ଅନୁଷ୍ଠିତ ହୋଇଥିଲା । ସେହି ଦେବକୁମାରମାନେ ଋଷିପୁତ୍ର ପରି ଦେଖା ଯାଉଥିଲେ ।

ଲୋକପାଳ ପର୍ବତ ସଂସାରର ସବୁଠାରୁ ରମଣୀୟ ସ୍ଥାନ । ସେଥିରେ ଶହ ଶହ ପ୍ରକାର ଫୁଲ ମନକୁ ମନ ଉତ୍ପନ୍ନ ହୁଏ । ପ୍ରକୃତି ଦେବୀ ସର୍ବଦା ଏଠାରେ ନଗ୍ନ ଅବସ୍ଥାରେ ଥାଏ, କାରଣ ଏହା ଯେପରି ନିର୍ଜନ ସେହିପରି ଏକାନ୍ତ ସ୍ଥଳ । ଋତୁରାଜ ବସନ୍ତର ଶୋଭା ଏଠାରେ ସର୍ବଦା ବିଚରଣ କରିଥାଏ । ପ୍ରକୃତି ନଗ୍ନ ଅବସ୍ଥାରେ ନୃତ୍ୟ କରେ । ବନଶ୍ରୀ ଆନନ୍ଦରେ ହସୁଥାଏ । ପୁଷ୍ପର ସୁଗନ୍ଧ ଚତୁର୍ଦ୍ଦିଗକୁ ଆମୋଦିତ କରେ । ଶାଳ, ତାଳ, ତମାଲ, ରସାଳ, ପନସ ଆଦି ବୃକ୍ଷ ଏଠାରେ ପ୍ରହରୀଙ୍କ ପରି ପଙ୍କ୍ତି ହୋଇ ଠିଆ ହୋଇଥାନ୍ତି । ଝରଣା ଝଙ୍କାର କରି ସଙ୍ଗୀତ ଗାନ କରେ । ଏ ସ୍ଥାନଟି ଟିକିଏ ପୃଥିବୀର

ସ୍ୱର୍ଗ । ଲୋକପାଳମାନେ ପ୍ରତିଦିନ ଏଠାକୁ ଆସନ୍ତି । ସ୍ଥାନେ ସ୍ଥାନେ ରଙ୍ଗବେରଙ୍ଗର କମଳ ଫୁଟିଥାଏ । ହୋମକୁଣ୍ଡଟି ଦେବତାମାନେ କରିଥିଲେ । ସେଥିପାଇଁ ତାର ଜଳ ଅତ୍ୟନ୍ତ ସ୍ୱଚ୍ଛ, ମଧୁର ଓ ଶାନ୍ତିକର ।

ମହାରାଜ ପାଣ୍ଡୁଙ୍କୁ ଏହି ସ୍ଥାନଟି ଖୁବ୍ ଭଲ ଲାଗୁଥିଲା । ପ୍ରତିବର୍ଷ ପରି ସେଥର ମଧ ବସନ୍ତ ଆସିଲା । ମହାରାଜ ନିଜର କନିଷ୍ଠା ପତ୍ନୀ ମାଦ୍ରୀଙ୍କୁ ନେଇ ବନ ବିହାର ପାଇଁ ବାହାରିଲେ । ସାଧାରଣତଃ କୁନ୍ତୀ ସବୁଦିନ ସାଙ୍ଗରେ ଯାଆନ୍ତି । କିନ୍ତୁ ଦୈବଯୋଗକୁ ସେଦିନ କୁନ୍ତୀ ପିଲାମାନଙ୍କୁ ଦେଖିବା ପାଇଁ ରହିଗଲେ । ମାଦ୍ରୀ ଏକା ମହାରାଜଙ୍କ ସହିତ ଗଲେ । ମାଦ୍ରୀ ଅତିବ ସୁନ୍ଦରୀ ଓ ଯୁବତୀ ଥିଲେ । ସର୍ବଦା ପର୍ବତ ପ୍ରାନ୍ତରେ ରହିବାରୁ ତାଙ୍କର ସୌନ୍ଦର୍ଯ୍ୟ ଅଧିକ ବୃଦ୍ଧି ପାଇଥିଲା । ପର୍ବତ ପ୍ରାନ୍ତରେ ସେ ଜନ୍ମ ହୋଇଥିଲେ । ସେଦିନ ସେ ବିଭିନ୍ନ ପୁଷ୍ପରେ ମଣ୍ଡିତା ହୋଇଥିଲେ । ଶୁଭ୍ର ରେଶମ ଶାଢ଼ୀ ପିନ୍ଧି ସେ ଠିକ୍ ରତି ପରି ଦେଖା ଯାଉଥିଲେ । ମହାରାଜ ମାଦ୍ରୀଙ୍କ ସହିତ ବନର ଶୋଭା ସନ୍ଦର୍ଶନ କରୁଥିଲେ । ସହସା ଏକାନ୍ତରେ ତାଙ୍କର କାମନା ବାସନା ଉଦ୍ଦୀପ୍ତ ହୋଇ ଉଠିଲା । ମାଦ୍ରୀଙ୍କ ରୂପ ସେଥିରେ ଘୃତ ପରି କାର୍ଯ୍ୟ କଲା । ମହାରାଜ ନିଜକୁ ଆଉ ସଂଯତ ରଖି ପାରିଲେ ନାହିଁ । ମାଦ୍ରୀ ଋଷିଙ୍କ ଅଭିଶାପ ସ୍ମରଣ କରାଇଦେବା ସଙ୍ଗେ ସଙ୍ଗେ ବହୁ ଅନୁନୟ ବିନୟ କଲେ ଓ ଧର୍ମର ବିଧାନ କଥା କହିଲେ । କିନ୍ତୁ ସବୁକିଛି ବ୍ୟର୍ଥ ହେଲା । କାମବେଗ ବଶତଃ ବିଚାରବାନ୍ ରାଜାଙ୍କର ବି ବୁଦ୍ଧି ଭ୍ରଷ୍ଟ ହୋଇଗଲା । ପରିଣାମ ଯାହା ହେବାର ଥିଲା ତାହାହିଁ ହେଲା । ମହାରାଜ ସଙ୍ଗେ ସଙ୍ଗେ ମୃତ୍ୟୁବରଣ କଲେ । ମାଦ୍ରୀ ଡଳେ ପଡ଼ି କୁନ୍ତୀଙ୍କୁ ଉଚ୍ଚ ସ୍ୱରରେ ଡାକିଲେ । କୁନ୍ତୀ ଆସି କାନ୍ଦିବାକୁ ଲାଗିଲେ ।

କୁନ୍ତୀ ସ୍ୱୟଂ ସତୀ ହେବା ପାଇଁ ଇଚ୍ଛା ପ୍ରକାଶ କଲେ । କିନ୍ତୁ ମାଦ୍ରୀ କହିଲେ—ତୁମେ ବଡ଼, ମୁଁ ସାନ । ମୋ'ର କାରଣରୁ ରାଜାଙ୍କର ମୃତ୍ୟୁ ହେଲା । ତେଣୁ ମୁଁ ସତୀ ହେବି । କୁନ୍ତୀ ମାଦ୍ରୀଙ୍କ ପ୍ରାର୍ଥନା ସ୍ୱୀକାର କଲେ । ମାଦ୍ରୀ ନିଜର ଦୁଇପୁଅଙ୍କୁ କୁନ୍ତୀଙ୍କୁ ସମର୍ପଣ କରି ପତିଙ୍କ ସହିତ ସତୀ ହେଲେ । ସେହି ଦିନଠାରୁ କୁନ୍ତୀ ନିଜକୁ ପାଞ୍ଚ ପୁତ୍ରର ଜନନୀ ବୋଲି ଭାବିଲେ । ଋଷିମାନେ ପାଞ୍ଚ ପୁତ୍ରଙ୍କ ସହିତ କୁନ୍ତୀଙ୍କୁ ନେଇ ହସ୍ତିନାପୁରରେ ଛାଡ଼ିଲେ । ଦେବବ୍ରତ ଭୀଷ୍ମ ପାଞ୍ଚପାଣ୍ଡବଙ୍କୁ ପୁତ୍ରବତ୍ ପାଳନ କଲେ । ଧୃତରାଷ୍ଟ୍ରଙ୍କ ଶହେ ପୁଅ ଓ ପାଣ୍ଡୁଙ୍କ ପାଞ୍ଚ ପୁଅ ମିଳାମିଶି ଖେଳାବୁଲା କଲେ ଓ ବଢ଼ିବାକୁ ଲାଗିଲେ । ଶେଷରେ ରାଜ୍ୟ ପାଇଁ ପରସ୍ପର ମଧ୍ୟରେ କଳଗୋଳ ହେଲା । ଧୃତରାଷ୍ଟ୍ରଙ୍କ ପୁତ୍ର ଦୁର୍ଯ୍ୟୋଧନାଦି କହିଲେ—ରାଜ୍ୟ ଆମର । ଆମେ ବଡ଼ଭାଇର ପୁତ୍ର । ପାଣ୍ଡବମାନେ କହିଲେ—ତୁମର ପିତା ଅନ୍ଧ ହୋଇଥିବାରୁ ଯେତେବେଳେ ରାଜ୍ୟର ଅଧିକାରୀ ନୁହନ୍ତି ସେତେବେଳେ ତୁମେ ଅବା ରାଜ୍ୟର ଅଧିକାରୀ କିପରି ହେବ । ରାଜପୁତ୍ର ହୋଇଥିବାରୁ ଆମେ ରାଜ୍ୟର ଅଧିକାରୀ । ପରିଶେଷରେ ଏହି ବିଷୟକୁ ନେଇ ମହାଭାରତ ଯୁଦ୍ଧ ହେଲା । ଏହି ମହାସମରରେ ଧୃତରାଷ୍ଟ୍ରଙ୍କ ପୁତ୍ର ଓ ପୌତ୍ରମାନେ ମୃତ୍ୟୁବରଣ କଲେ । ଶ୍ରୀମନ୍ମହାରାଷ୍ଟ୍ରଙ୍କ

ଦସ୍ୟାରୁ ପାଣ୍ଡବମାନେ ନିଜର ରାଜ୍ୟ ଫେରିପାଇଲେ । ପାଣ୍ଡବ ପାଞ୍ଚଭାଇଙ୍କ ଗ୍ରତି ସେମାନଙ୍କର ପୁତ୍ରମାନେ ଯୁଦ୍ଧରେ ମୃତ୍ୟୁବରଣ କଲେ । କେବଳ ଅଭିମନ୍ୟୁ ପୁତ୍ର ପରୀକ୍ଷିତ ଶେଷରେ ରହିଲେ । ତାଙ୍କଠାରୁ ପାଣ୍ଡବମାନଙ୍କ ବଂଶଧାରା ପ୍ରବାହିତ ହେବାକୁ ଲାଗିଲା । ବର୍ତ୍ତମାନ ମୁଁ ପାଣ୍ଡବ ମାନଙ୍କର ପୁତ୍ରଙ୍କ କଥା କହୁଛି, ଆପଣମାନେ ଦତ୍ତଚିତ୍ତ ହୋଇ ଶୁଣନ୍ତୁ ।

## ଛପ୍‌ପଯ୍

ଭଯେ଼ ଧରମ ଠଁ ଧରମରାଜ ଜ୍ଜ ଉପଜ ବାୟୁ ତେଁ ।
ପାର୍ଥ ଇନ୍ଦ୍ର ତେଁ ଜନେ ପୃଥା ନେ ପରମ ସ୍ୱୟଂ ତେଁ ॥
ନକୁଲ ଔର ସହଦେବ ଅଶ୍ୱିନୀକୁମର ଭିଷକ୍‌ବର ।
ମାଦ୍ରୀ ତେଁ ଉତ୍ପନ୍ନ କରେ ଦୋଉ ସୁତ ସୁନ୍ଦର ॥
ପାଞ୍ଚ ହୁଁ କୀ ପତ୍ନୀ ଭଈ ଦ୍ରୁପଦସୁତା ଅତି ସୁନ୍ଦରୀ ।
ପୂର୍ବ ଜନ୍ମ କୋ ବୃତ୍ତ ସୁନି, ଆପତ୍ତି କାହୁ ନହିଁ କରୀ ॥



## ଦ୍ରୌପଦୀଙ୍କ ପାଞ୍ଚ ପୁତ୍ର

## ଛପ୍‌ପଯ୍

ଦ୍ରୌପଦ୍ୟାଂ ପଞ୍ଚ ପଞ୍ଚଭ୍ୟଃ ପୁତ୍ରାସ୍ତେ ପିତରୋଽଭବନ୍ ।
ଯୁଧିଷ୍ଠିରାତ୍ପ୍ରତିବିନ୍ଧ୍ୟଃ ଶ୍ରୁତସେନୋ ବୃକୋଦରାତ୍ ॥
ଅର୍ଜୁନା ଚ୍ଛ୍ରୁତକୀର୍ତ୍ତିସ୍ତୁ ଶତାନୀକସ୍ତୁ ନାକୁଲିଃ ।
ସହଦେବସୁତୋ ରାଜନ୍ ଶ୍ରୁତକର୍ମା ତଥାପରେ ॥

(ଭାଗ-୯ସ୍କ, ୨୨ଅ, ୨୮-୨୯ ଶ୍ଳୋ)

## ଛପ୍ପୟ

ଧର୍ମରାଜ ପ୍ରତିବିନ୍ଧ୍ୟ ପୁତ୍ର ତାମେ ପ୍ରକଟାୟୋ ।
ଭୀମ ପୁତ୍ର ଶ୍ରୁତସେନ ଦ୍ରୌପଦୀ ଦେବୀ ଜାୟୋ ॥
ଅର୍ଜୁନ ତେଁ ଶ୍ରୁତକୀର୍ତ୍ତି ନକୁଳ ତେଁ ସତାନୀକ ସୁତ ।
ଶ୍ରୁତକର୍ମା ସହଦେବ ତନୟ ଅତ ଭୟେ ଧରମଯୁତ ॥
ଅଶ୍ୱତ୍ଥାମା ସବନକେ, କାଟେ ସିର ସୋବତ ଶିବର ।
ଅନବଧ୍ୟାହେ ସବ ହୀ ମରେ, ଚଲେୟା ବଂଶ ଜନକୋ ନ ଫିର ॥

ଧର୍ମତତ୍ତ୍ୱଜ୍ଞ ତ୍ରିକାଳଦର୍ଶୀ ମହାପୁରୁଷ, ଭୂତ ଭବିଷ୍ୟତ୍ କଥା ବିଚାର କରି କୌଣସି ଘଟଣା ବିଷୟରେ ସିଦ୍ଧାନ୍ତ ନଥାନ୍ତି । ଆମେମାନେ ପ୍ରାରବ୍ଧର ଅଧୀନ ହୋଇ ସବୁ କିଛି କରୁଁ । ଆମର କାହା ସହିତ ଯଦି ସମ୍ବନ୍ଧ ସ୍ଥାପିତ ହୁଏ, ତେବେ ଆମେ ଭାବୁ ଏହା ହଠାତ୍ ଘଟିଲା । କିନ୍ତୁ ଏହି ସମ୍ବନ୍ଧ ପୂର୍ବଜନ୍ମର ଘଟଣା ଅନୁସାରେ ସ୍ଥାପିତ ହୋଇଥାଏ ।

ମହର୍ଷି ସୂତ କହିଲେ—ମୁନିଗଣ ! ବର୍ତ୍ତମାନ ମୁଁ ପାଣ୍ଡବମାନଙ୍କ ବଂଶାବଳୀ ବର୍ଣ୍ଣନା କରୁଛି । ହଁ, ପାଣ୍ଡବମାନେ ଯେତେବେଳେ ବଡ଼ ହେଲେ ସେତେବେଳେ ଦୁର୍ଯୋଧନାଦି କୌରବମାନେ ସେମାନଙ୍କ ପ୍ରତି ଶତ୍ରୁତା ଆଚରଣ କରିବାକୁ ଲାଗିଲେ । ଦୁର୍ଯୋଧନ ନିଜର ଦୁଷ୍ଟ ଭାଇ ଓ ମନ୍ତ୍ରିମାନଙ୍କ ସମ୍ମତି ଓ ସାହାଯ୍ୟ ନେଇ ବାରଣାବତରେ ଏକ ଜଉ ଘର ତିଆରି କଲେ । ସେଥିରେ କୁନ୍ତୀ ସହିତ ପାଣ୍ଡବମାନଙ୍କୁ ମାରିଦେବାର ଷଡ଼ଯନ୍ତ୍ର କଲେ । ଯେତେବେଳେ କୁନ୍ତୀ ସହିତ ପାଣ୍ଡବମାନେ ଶୋଇଥିଲେ ସେତେବେଳେ ଦୂତମାନେ ସେହି ଘରେ ନିଆଁ ଲଗାଇଦେଲେ । ବିଦୁରଙ୍କ ଦୟାରୁ ପାଣ୍ଡବମାନେ ସୁଡଙ୍ଗ ମାର୍ଗରେ ବାହାରକୁ ଆସି ଏକ ସୁରକ୍ଷିତ ବନରେ ପ୍ରବେଶ କଲେ ଓ ଭିକ୍ଷାବୃତ୍ତି କରି ଜୀବନ ନିର୍ବାହ କଲେ । ସେହି ସମୟରେ ଦ୍ରୌପଦୀ ସ୍ୱୟମ୍ବର ଅନୁଷ୍ଠିତ ହେଲା । ହେହି ସ୍ୱୟମ୍ବରରେ ଏକ ପଣ ରଖାଯାଇଥିଲା । ଆକାଶରେ ଟଙ୍ଗା ହୋଇଥିବା ଓ ଘୂରୁଥିବା ମାଛର ଆଖିକୁ ଯେ ବାଣରେ ବିଦ୍ଧ କରିବ ତାହାର ସହ ଦ୍ରୌପଦୀଙ୍କର ବିବାହ ହେବ । ଅର୍ଜୁନ ସେହି ଲକ୍ଷ ଭେଦ କଲେ । କୁନ୍ତୀ ସେତେବେଳେ ଏକ କୁମ୍ଭାର ଘରେ ରହିଥିଲେ । ଦ୍ରୌପଦୀଙ୍କୁ ନେଇ ପାଣ୍ଡବମାନେ ଦ୍ୱାରଦେଶରେ ପହଞ୍ଚି କହିଲେ—ମା, ଆଜି ଆମେ ସୁନ୍ଦର ଭିକ୍ଷା ନେଇ ଆସିଛୁ ।

କୁନ୍ତୀ ଘର ଭିତରୁ କହିଲେ—ଠିକ୍ ଅଛି । ତୁମେ ପାଞ୍ଚ ଭାଇ ତାକୁ ବାଣ୍ଟି ନିଅ । କିନ୍ତୁ ସେ ଘର ଭିତରୁ ଆସି ଦ୍ରୌପଦୀଙ୍କୁ ଦେଖି ବହୁତ ଦୁଃଖ କଲେ ଓ କହିଲେ ବାବୁ ! ମୋର ବାକ୍ୟ ତ ଅନ୍ୟଥା ହେବ ନାହିଁ । ତୁମେ ପାଞ୍ଚ ଭାଇ ଏହି ସୁନ୍ଦରୀ କୁମାରୀକୁ ବିବାହ କର । ଧର୍ମରାଜ ଏହା ସମର୍ଥନ କଲେ ମଧ୍ୟ ଦ୍ରୁପଦ, ଧୃଷ୍ଟଦ୍ୟୁମ୍ନ ଆଦି ସମସ୍ତେ ବିରୋଧ କଲେ । ଶେଷରେ ଭଗବାନ୍ ବ୍ୟାସଦେବ ଆସି ଦ୍ରୁପଦଙ୍କୁ ବୁଝାଇ କହିଲେ—ରାଜନ୍ ! ଆପଣ ଇଚ୍ଛା କରନ୍ତୁ କି ନ କରନ୍ତୁ ଭବିତବ୍ୟ ଏପରି ହୁଏ । ଦ୍ରୌପଦୀଙ୍କର ପାଞ୍ଚପତି

ହେବେ । କେତେ ଜନ୍ମ ପୂର୍ବରୁ ସେ ଏପରି ବର ପାଇଛି । ପୂର୍ବ ଜନ୍ମରେ ଦ୍ରୌପଦୀ ଏକ ଋଷିକନ୍ୟା ଥିଲା । ତାକୁ ଯୋଗ୍ୟ ପତି ମିଳିଲେ ନାହିଁ । ସେଥିପାଇଁ ଶିବଙ୍କୁ ସେ ଆରାଧନା କଲା । ଆଶୁତୋଷ ଭଗବାନ୍ ଭୂତନାଥ ପ୍ରସନ୍ନ ହୋଇ ତାକୁ ବର ମାଗିବାକୁ କହିବାରୁ ଦ୍ରୌପଦୀ ବ୍ୟଗ୍ରତାର ସହିତ 'ମୋତେ ବର ଦିଅନ୍ତୁ' ବୋଲି ପାଞ୍ଚଥର କହିଦେଲା ।

ମହାଦେବ କହିଲେ—ଭଦ୍ରେ ! ତୁ ପାଞ୍ଚ ବର ମାଗିଲୁ, ତେଣୁ ତୋ'ର ପାଞ୍ଚ ପତି ହେବେ । ତଥାପି ତୁ ଦୋଷଭାଗିନୀ ହେବୁ ନାହିଁ, ପତିବ୍ରତାମାନଙ୍କ ମଧ୍ୟରେ ତୋର ଗଣନା ହେବ ।

ବ୍ୟାସଦେବ ପୁଣି କହିଲେ—ରାଜନ୍ ! ସେହି କନ୍ୟା ଆପଣଙ୍କ ଯଜ୍ଞ କୁଣ୍ଡରୁ ଜାତ ହୋଇଛି । ସେ ଅଯୋନିଜା । ତେଣୁ ତା'ର ପାଞ୍ଚ ପତି ହେଲେ ବି କୌଣସି ଦୋଷ ତାକୁ ଲାଗିବ ନାହିଁ । ଆଉ ଗୋଟିଏ କଥା କହୁଛି । ଥରେ ଦେବରାଜ ଇନ୍ଦ୍ର ଗଙ୍ଗା-ପ୍ରବାହରେ ଏକ ସୁବର୍ଣ୍ଣ କମଳ ଦେଖିଲେ । ଉତ୍ସୁକତା ବଶତଃ ଇନ୍ଦ୍ର ତା'ର ଉଦ୍‌ଗମ ସ୍ଥାନ ଖୋଜିବାକୁ ଗଲେ । ଯାଉଁ ଯାଉଁ ବହୁ ଦୂର ପର୍ଯ୍ୟନ୍ତ ଉପରକୁ ଉଠିଗଲେ । ଦେଖିଲେ ଜଣେ ସ୍ତ୍ରୀଲୋକ ବସିଛି । ତା' ଆଖିରୁ ଯେଉଁ ଲୁହ ବହୁଛି ସେଗୁଡ଼ିକ ସୁବର୍ଣ୍ଣ କମଳ ପାଲଟି ଯାଉଛି । ଆଶ୍ଚର୍ଯ୍ୟାନ୍ୱିତ ହୋଇ ଦେବେନ୍ଦ୍ର ତାକୁ ପଚାରିଲେ—ଭଦ୍ରେ ! ତୁମେ କାନ୍ଦୁଛ କାହିଁକି ?

ସ୍ତ୍ରୀଲୋକ ଜଣକ କହିଲା—ଆପଣ ମୋ' ପଛେ ପଛେ ଆସନ୍ତୁ, ମୁଁ ତା'ର କାରଣ କହୁଛି । ଏହା କହି ସେ ଆଗେ ଆଗେ ଓ ଇନ୍ଦ୍ର ପଛେ ପଛେ ଚାଲିଲେ । କିଛିଦୂର ଯିବା ପରେ ଏକ ଗୁମ୍ଫାରେ ଜଣେ ବଳବାନ୍ ପୁରୁଷ ବସିଥିବାର ଦେଖିଲେ । ସେ ଅନ୍ୟ ଏକ ସ୍ତ୍ରୀ ସହିତ ଚିତ୍ତବିନୋଦନ ପାଇଁ ଖେଳୁଛି । ଇନ୍ଦ୍ରଙ୍କୁ ଦେଖି ମଧ୍ୟ ନ ଦେଖିଲା ପରି ସେହି ପୁରୁଷ ନିଜର ପ୍ରିୟା ସହିତ ଖେଳିବାକୁ ଲାଗିଲା । ଇନ୍ଦ୍ର ଏହା ଦେଖି ସେହି ପୁରୁଷକୁ ଅପମାନିତ କଲେ । ପୁରୁଷଜଣଙ୍କ ଇନ୍ଦ୍ରଙ୍କୁ ଏକ ଗୁମ୍ଫା ଭିତରେ ପୂରାଇ ଦ୍ୱାର ବନ୍ଦ କରି-ଦେଲେ । ଇନ୍ଦ୍ର ଭୟଭୀତ ହୋଇପଡ଼ିଲେ । ସେ ଜାଣିଗଲେ ଏ ହେଉଛନ୍ତି ଦେବଦେବ ଭଗବାନ୍ ବୃଷଭଧ୍ୱଜ । ତେଣୁ ସେ ପାଟିକରି ଚିତ୍କାର କରିବାକୁ ଲାଗିଲେ ଓ ବିନତି କଲେ । ଇନ୍ଦ୍ରଙ୍କ ବିନତି ଶୁଣି ପାର୍ବତୀପତି କହିଲେ—ଦେଖ, ଏଠାରେ ଚ ଚାରିଜଣ ଇନ୍ଦ୍ର ଅଛନ୍ତି । ତୁମେ ମୋତେ ଅପମାନିତ କଲ । ତେଣୁ ତୁମେ ପାଞ୍ଚଜଣ ପୃଥିବୀରେ ମଣିଷ ହୋଇ ଜନ୍ମ ଗ୍ରହଣ କରିବ । ଏହି ନାରୀ ଜଣଙ୍କ ତୁମ ପାଞ୍ଚ ଜଣଙ୍କର ପତ୍ନୀ ହେବ ।

ଏହା ଶୁଣି ସେହି ପାଞ୍ଚଜଣ କହିଲେ—ପ୍ରଭୋ ! ଆମେ ଯଦି ପୃଥିବୀରେ ଜନ୍ମ ଗ୍ରହଣ କରିବୁ, ତେବେ ଧର୍ମ, ବାୟୁ, ଇନ୍ଦ୍ର, ଓ ଅଶ୍ୱିନୀକୁମାରଙ୍କ ଔରସରୁ ଜନ୍ମ ହେବୁ । ରାଜନ୍ ! ସେହି ପାଞ୍ଚଜଣ ଇନ୍ଦ୍ର ପଞ୍ଚ ପାଣ୍ଡବ ରୂପେ ଜନ୍ମ ହୋଇଛନ୍ତି । ଦ୍ରୌପଦୀ ହେଉଛନ୍ତି ସେହି ଦେବୀ । ତେଣୁ ତାଙ୍କର ପାଞ୍ଚପତି ହେବେ ।

ଭଗବାନ୍ ବ୍ୟାସଦେବ ଏହିପରି ଦିବ୍ୟ ଦୃଷ୍ଟିରେ ପାଣ୍ଡବମାନଙ୍କର ଇନ୍ଦ୍ରରୂପ ଦେଖାଇଦେଇଥିଲେ । ତା’ ପରେ ଦ୍ରୁପଦ ପଞ୍ଚ ପାଣ୍ଡବଙ୍କ ସହିତ ଦ୍ରୌପଦୀଙ୍କର ବିବାହ କରିଦେଲେ । ଏହି ବିବାହ ପରେ ବହୁତ ଚିନ୍ତାବୃଦ୍ଧି କରିବାରୁ ଧୃତରାଷ୍ଟ୍ର ପାଣ୍ଡବମାନଙ୍କୁ ଅଧାରାଜ୍ୟ ଦେଇଦେଲେ ଏବଂ ପାଣ୍ଡବମାନେ ଇନ୍ଦ୍ରପ୍ରସ୍ଥରେ ନିଜର ରାଜଧାନୀ ପ୍ରତିଷ୍ଠା କରି ଦ୍ରୌପଦୀ ଓ ଜନନୀ କୁନ୍ତୀଙ୍କ ସହିତ ରହିବାକୁ ଲାଗିଲେ ।

ଥରେ ଧର୍ମଧ୍ୱଜ ଯୁଧିଷ୍ଠିରଙ୍କ ରାଜସଭାରେ ଉପସ୍ଥିତ ହୋଇ ଦେବର୍ଷି ନାରଦ କହିଲେ—ରାଜନ୍ ! ଆପଣ ପାଞ୍ଚ ଭାଇଙ୍କର ପତ୍ନୀ ଏକ । ତେଣୁ ପ୍ରତ୍ୟେକ ଭାଇଙ୍କ ପାଇଁ ସମୟ ନିର୍ଦ୍ଧାରିତ ହେବା ଆବଶ୍ୟକ । କାରଣ, ଏକା ତିଲୋତ୍ତମା ପାଇଁ ସୁନ୍ଦ ଓ ଉପସୁନ୍ଦ ପରସ୍ପର ମଧ୍ୟରେ କଳି କରି ଶେଷରେ ମୃତ୍ୟୁବରଣ କରିଥିଲେ ।

ନାରଦଙ୍କ ଉପଦେଶ ମାନି ପାଞ୍ଚଭାଇ ସିଦ୍ଧାନ୍ତ କଲେ ଯେ ପ୍ରତ୍ୟେକ ଭାଇ ନିସ୍ଥିତ ସମୟ ପାଇଁ ଦ୍ରୌପଦୀଙ୍କ ପାଖରେ ରହିବେ । ଯଦି କୌଣସି ଭାଇ ଦ୍ରୌପଦୀଙ୍କ ସହିତ ଏକାନ୍ତରେ ଥିବାବେଳେ ଅନ୍ୟ ଭାଇ ପ୍ରବେଶ କରିବ ତେବେ ତାକୁ ବାରବର୍ଷ ବନବାସ କରିବାକୁ ପଡ଼ିବ । ଥରେ ଯୁଧିଷ୍ଠିର ଦ୍ରୌପଦୀଙ୍କ ସହିତ ଏକାନ୍ତରେ ଥିବା ସମୟରେ ଅର୍ଜୁନ ଜଣେକ ବ୍ରାହ୍ମଣର ଗୋ’ସମ୍ପଦ ରକ୍ଷା ପାଇଁ ନିଜର ଧନୁଶର ଆଣିବା ପାଇଁ ସେହି ଘର ଭିତରକୁ ଗଲେ । ସେହି ଅପରାଧର ପ୍ରାୟଶ୍ଚିତ ପାଇଁ ଅର୍ଜୁନ ବାରବର୍ଷ ବନବାସରେ ରହିଲେ । ସେହି ସମୟ ମଧ୍ୟରେ ସେ ଅନେକ ବିବାହ କରିଥିଲେ ।

କିଛିକାଳ ପରେ ପାଞ୍ଚଭାଇଙ୍କ ଔରସରୁ ଦ୍ରୌପଦୀ ପାଞ୍ଚ ପୁତ୍ର ଜନ୍ମ କରିଥିଲେ । ମହାରାଜ ଯୁଧିଷ୍ଠିରଙ୍କଠାରୁ ପ୍ରତିବିନ୍ଧ୍ୟ, ଭୀମସେନଙ୍କଠାରୁ କୁମାର ଶ୍ରୁତସେନ, ଅର୍ଜୁନଙ୍କ-ଠାରୁ ପରାକ୍ରମଶାଳୀ ଶ୍ରୁତକୀର୍ତ୍ତି ଓ ନକୁଳ ତଥା ସହଦେବଙ୍କଠାରୁ ଶତାନୀକ ଓ ଶ୍ରୁତକର୍ମା ଜନ୍ମ ଗ୍ରହଣ କରିଥିଲେ । ସେମାନେ ଦ୍ୱାରକାରେ ରହି ଅସ୍ତ୍ରଶସ୍ତ୍ର ବିଦ୍ୟା ଶିକ୍ଷା କରିଥିଲେ । ସେମାନଙ୍କର ବିବାହ ବୟସ ହେଲାବେଳକୁ ମହାଭାରତ ଯୁଦ୍ଧ ଆରମ୍ଭ ହୋଇଯାଇଥିଲା । ସେହି ଯୁଦ୍ଧରେ ସେମାନେ ବୀରଗତି ଲାଭ କରିଥିଲେ । ସେମାନେ ନିଦରେ ଶୋଇଥିବା-ବେଳେ ଅଶ୍ୱତ୍ଥାମା ପଶିଯାଇ ସେମାନଙ୍କୁ ବଧ କରିଥିଲେ । ଏହା ଫଳରେ କୌରବଙ୍କ ପରି ପାଣ୍ଡବ ବଂଶ ମଧ୍ୟ ସର୍ବନାଶ ହେବାକୁ ବସିଲା । ଭଗବାନ୍ ପାଣ୍ଡବ ବଂଶକୁ ରକ୍ଷା କରିବା ପାଇଁ ଇଚ୍ଛା କଲେ । ତେଣୁ ଅର୍ଜୁନଙ୍କ ଦ୍ୱିତୀୟା ପତ୍ନୀ ଗର୍ଭରୁ ଜନ୍ମ ହୋଇଥିବା ଅଭିମନ୍ୟୁର ପତ୍ନୀ ଗର୍ଭବତୀ ଥିଲା । ସେହି ଗର୍ଭରୁ ପାଣ୍ଡବ ବଂଶାବଳୀ ପ୍ରଚଳିତ ହେଲା ।

ଶୌନକ ପଚାରିଲେ—ମହାଶୟ ! ଦ୍ରୌପଦୀ ବ୍ୟତୀତ ପାଣ୍ଡବଙ୍କର ଆଉ କେତେ ପତ୍ନୀ ଥିଲେ ? ସେମାନଙ୍କର କେତେ ପୁଅ ହେଲେ, ସେକଥା ଆମକୁ କୁହନ୍ତୁ ।

ମହର୍ଷି କହିଲେ—ମହାତ୍ମାଗଣ ! ବର୍ତ୍ତମାନ ମୁଁ ପାଣ୍ଡବମାନଙ୍କର ଅନ୍ୟ ପୁତ୍ରମାନଙ୍କ କଥା କହୁଛି, ଆପଣମାନେ ମନ ଦେଇ ଶୁଣନ୍ତୁ ।

### ଛପ୍‌ପୟ

ଧର୍ମରାଜ କୀ ପତ୍ନୀ ପୌରବୀ ତିଂ ସୁତ ଦେବକ ।
ଭୀମ ଘଟୋତ୍କଚ କରୁୟୋ ହିଡ଼ିମ୍ବା ମହଁ ସୁତ ସେବକ ॥
ଦୂସର କାଲୀ ମାହିଂ ସର୍ବଗତ ସୁତ ପ୍ରକଟାୟୋ ।
ଶ୍ରୀ ସହଦେବ ସୁହୋତ୍ର ବିଜୟା ନେ ଜାୟୋ ॥
ନକୁଲ କରେଣୁମତୀ ଉଦର, ତେଂ କୀନ୍ହେଂ ନର ମିତ୍ର ସୁତ ।
ଅର୍ଜ୍ଜୁନ ରାନୀ ତୀନ ତିଂ, ଭୟେ ତୀନ ସୁତ ବିନୟଯୁତ ॥



## ପାଣ୍ଡବମାନଙ୍କର ଅନ୍ୟ ପୁତ୍ର

ଯୁଧିଷ୍ଠିରାତ୍ ପୌରବ୍ୟାଂ ଦେବକୋଽଥ ଘଟୋତ୍କଚଃ ।
ଭୀମସେନାଦ୍ଧିଡ଼ିମ୍ବାୟାଂ କାଲ୍ୟାଂ ସର୍ବଗତ ସୁତଃ ।
(ଭାଗ-୯ସ୍କ-୨୨ଅ ୩୦ଶ୍ଳୋ)

### ଛପ୍‌ପୟ

ଲାକ୍ଷା ଗୃହ ତେଂ ଭାଗି ଗହନ ବନ ଆୟେ ପାଣ୍ଡବ ।
ଲଖି ହିଡ଼ମ୍ବ ନେ ବହନ ହିଡମ୍ବା ତହାଁ ପଠଇ ତବ ।
ମାରନ ଆଇ ସ୍ୱୟଂ ଭୀମ ଲଖି ଭଈ ବିମୋହିତ ।
ଜାନେଂ୍ୟା ସବ ହିଡ଼ମ୍ବ ଭୀମ ତେଂ ଭିଡ଼େଂ୍ୟା କ୍ରୁରଅତ ॥
ଦ୍ୱନ୍ଦ୍ୱ ଯୁଦ୍ଧ ଭୀଷଣ ଭୟୋ, ଭିଡ଼େ, ଭୟୁ ନହିଁ କରୁୟୋ ।
ଯାତୁଧାନ କୋ ବଳ ଘଟ୍ୟୋ, ମର ଧରନୀ ପୈ ଗିର ପରୁୟୋ ॥

ଭାରତରେ ଜଣେ ପୁରୁଷ ବହୁ ବିବାହ କରିବାର ପ୍ରଥା ପ୍ରାଚୀନ କାଳରୁ ପ୍ରଚଳିତ ଥିଲା । ରାଜାମାନଙ୍କ ଅନ୍ତଃପୁରରେ ହଜାର ହଜାର ରାଣୀ ରହୁଥିଲେ । ବିବାହ

ସାମର୍ଥ୍ୟକୁ ସେତେବେଳେ ଧର୍ମକାର୍ଯ୍ୟ ରୂପେ ଗ୍ରହଣ କରାଯାଉଥିଲା । ଧର୍ମ ପୂର୍ବକ କାମୋ-ପଭୋଗ କରିବା ପାଇଁ ଅନୁମତି ଦିଆଯାଇଥିଲା । କାମବଶତଃ ଯେଉଁ ରାଜା ବା ବ୍ୟକ୍ତି ବିଶେଷ ଏକାଧିକ ବିବାହ କରୁଥିଲେ, ପଣ୍ଡିତମାନଙ୍କ ଦ୍ୱାରା ସେମାନେ ନିନ୍ଦିତ ହେଉଥିଲେ । ଧର୍ମ ପୂର୍ବକ ବିବାହିତା ପତ୍ନୀଠାରୁ ଉତ୍ପନ୍ନ ପୁତ୍ର ପିତୃ ସମ୍ପତ୍ତିର ଉତ୍ତରାଧିକାରୀ ହେଉଥିଲେ । ଧର୍ମହୀନ କାମକୁ ବ୍ୟଭିଚାର କୁହାଯାଏ ।

ମହର୍ଷି ସୂତ କହିଲେ—ମୁନିଗଣ ! ଦ୍ରୌପଦୀ ପାଞ୍ଚ ପାଣ୍ଡବଙ୍କର ପତ୍ନୀ ଥିଲେ । ଦ୍ରୌପଦୀଙ୍କ ବ୍ୟତୀତ ପାଞ୍ଚ ଭାଇଙ୍କର ଅନ୍ୟ ପତ୍ନୀ ମଧ୍ୟ ଥିଲେ । ମହାରାଜା ଯୁଧିଷ୍ଠିରଙ୍କର ପୌରବୀ ନାମ୍ନୀ ପତ୍ନୀଠାରୁ ଦେବକ ଜନ୍ମ ହୋଇଥିଲେ । ଭୀମସେନଙ୍କର କାଳୀ ନାମ୍ନୀ ପତ୍ନୀଠାରୁ ସର୍ବଗତ ନାମକ ପୁତ୍ର ଜନ୍ମ ଗ୍ରହଣ କରିଥିଲେ । ପର୍ବତ କନ୍ୟା ବିଜୟା ଥିଲେ ସହଦେବଙ୍କ ପତ୍ନୀ । ତାଙ୍କଠାରୁ ସୁହୋତ୍ର ନାମକ ପୁତ୍ର ଜନ୍ମ ହୋଇଥିଲେ । ନକୁଳଙ୍କର କରେଣୁମତୀ ନାମ୍ନୀ ପତ୍ନୀଠାରୁ ନରମିତ୍ର ନାମକ ପୁତ୍ର ଜନ୍ମ ଗ୍ରହଣ କରିଥିଲେ । ଭୀମସେନଙ୍କର ହିଡ଼ିମ୍ବା ନାମ୍ନୀ ଏକ ରାକ୍ଷସୀ ପତ୍ନୀ ଥିଲା । ଅର୍ଜୁନଙ୍କ ଉଲୂପୀ, ମଣିପୁରୀ ଓ ସୁଭଦ୍ରା ନାମରେ ତିନି ପତ୍ନୀ ଥିଲେ । ବାରବର୍ଷ ବନବାସ କାଳରେ ଅର୍ଜୁନ ଏହି ତିନି ପତ୍ନୀଙ୍କର ପାଣି ଗ୍ରହଣ କରିଥିଲେ । ହିଡ଼ିମ୍ବାଠାରୁ ଭୀମସେନଙ୍କ ଔରସରେ ଘଟୋତ୍କଚ ଜନ୍ମ ହୋଇଥିଲା ।

ଏହା ଶୁଣି ଶୌନକ ପଚାରିଲେ—ମହାଶୟ ! ଏକ ରାକ୍ଷସୀ ସହିତ ଭୀମସେନଙ୍କର ବିବାହ କିପରି ହେଲା ?

ମହର୍ଷି ସୂତ କହିଲେ ! ନିଜ ମା'ଙ୍କର ଆଦେଶରେ ଭୀମସେନ ରାକ୍ଷସୀକୁ ବିବାହ କରିଥିଲେ । ସେହି ବିବାହ କିପରି ହେଲା କହୁଛି ।

ଭୀମସେନ ନିଜ ଭାଇମାନଙ୍କ ମଧ୍ୟରେ ସବୁଠୁ ବଳୁଆ ଥିଲେ । ସେ ଖୁବ୍ ହୃଷ୍ଟପୁଷ୍ଟ ଥିଲେ । ତାଙ୍କର ସ୍କନ୍ଧଦେଶ ଠିକ ସିଂହ ପରି ଥିଲା । ଦଶହଜାର ହାତୀର ବଳ ତାଙ୍କର ଥିଲା । ଜତୁ ଗୃହରୁ ପଳାଇ ଆସିବା ପରେ ସେ ନିଜର ମା' ଓ ଭାଇମାନଙ୍କୁ ପିଠିରେ ବସାଇ ଚାଲିଲେ । ପ୍ରଥମ ଦିନ ଗଲା । ଦ୍ୱିତୀୟ ଦିନ ଚାଲି ଚାଲି ସେ ଥକି ପଡ଼ିଲେ । ସମସ୍ତେ ଏକ ଗଛ ମୂଳରେ ବିଶ୍ରାମ ନେଲେ ଓ ଅଳ୍ପ ସମୟ ମଧ୍ୟରେ ଶୋଇ ପଡ଼ିଲେ । କେବଳ ଭୀମସେନ ଅନିଦ୍ରା ରହି ପହରା ଦେଉଥିଲେ ।

ସେହି ବଣରେ ହିଡ଼ିମ୍ବ ନାମରେ ନରମାଂସଭୋଜୀ ଏକ ରାକ୍ଷସ ଥିଲା । ସେଥିପାଇଁ ବଣଟି ତା' ନାମରେ ପରିଚିତ ହେଉଥିଲା । ଯେ ସେହି ବଣକୁ ଆସୁଥିଲା ହିଡ଼ିମ୍ବ ତାକୁ ମାରି ଖାଇ ଦେଉଥିଲା । ନରମାଂସର ଗନ୍ଧ ଆସିବାମାତ୍ରେ ସେ ବ୍ୟାକୁଳ ହୋଇପଡ଼ୁଥିଲା । ମାତା ସହିତ ପାଣ୍ଡବମାନଙ୍କୁ ଦେଖି ଲୋଭରେ ଓଠ ଚାଟି ଚାଟି ହିଡ଼ିମ୍ବ ଏକ ବଡ଼ ଗଛ ଉପରକୁ ଚଢ଼ିଗଲା । ସେଠାରେ ନିଜର ଯୁବତୀ ଭଉଣୀ ହିଡ଼ିମ୍ବାକୁ ଯାଇ କହିଲା —ହିଡ଼ିମ୍ବେ ! ମୁଁ ଅନେକ ଦିନ ହେଲା ନରମାଂସ ଖାଇବାକୁ ପାଇ ନାହିଁ । ପ୍ରାରବ୍ଧ

ବଣରେ ଆଜି ପାଞ୍ଚ ଛଅ ଜଣ ମଣିଷ ଆସି ଏଠାରେ ପହଞ୍ଚିଛନ୍ତି । ସେମାନେ ଖୁବ୍ ହୃଷ୍ଟପୁଷ୍ଟ ହୋଇଛନ୍ତି । ତାଙ୍କର ଚମଡ଼ା ଖୁବ୍ ଚକ୍‌ଚକ ଓ କୋମଳ ଦେଖାଯାଉଛି । ମୁଁ ସେମାନଙ୍କ ରକ୍ତ ପାନ କରି ପେଟ ପୂରାଇବା ପାଇଁ ଚାହୁଁଛି । ସେମାନେ ରାଜକୁମାର ପରି ମନେ ହେଉଛନ୍ତି । ତାଙ୍କ ସହିତ ସ୍ତ୍ରୀଟିଏ ଅଛି । ତୁ ଯାଇ ଦେଖି ଆ, ସେମାନେ କିଏ ? ସମସ୍ତେ ଶୋଇଛନ୍ତି, କେବଳ ଜଣେ ବଳୁଆ ଚାହିଁଛି । ଯା' ସମସ୍ତଙ୍କୁ ମାରି ନେଇ ଆ । ଯଦି ଦରକାର ପଡ଼ିବ ତେବେ ମୋତେ ଡାକିବୁ ।

ହିଡ଼ମ୍ବା ଯଥାଶୀଘ୍ର ପାଣ୍ଡବମାନେ ଶୋଇଥିବା ସ୍ଥାନରେ ଯାଇ ପହଞ୍ଚିଲା । କେବଳ ଭୀମସେନ ପହରା ଦେଉଥିଲେ । ବର୍ଣ୍ଣରେ କଳା ହେଲେ ବି ଖୁବ୍ ସୁନ୍ଦର ଦେଖାଯାଉଥିଲେ । ହିଡ଼ମ୍ବା କ୍ରୂରକର୍ମକାରିଣୀ ରାକ୍ଷସୀ ହୋଇଥିଲେ ବି କାମଭାବ ତା'ର କ୍ରୋଧ ଓ କ୍ରୂରତା ଉଭୟଙ୍କୁ ନଷ୍ଟ କରିଦେଲା । ବୃଷଭ ସମାନ ଭୀମଙ୍କୁ ଦେଖି ସେ ଚିରମତା ଧେନୁ ପାଲଟିଗଲା । କାମଦେବ ତାର ସାରାଦେହରେ ମାଦକତା ଉତ୍ପନ୍ନ କରିବା ସଙ୍ଗେ ସଙ୍ଗେ ଅବଶ କରି-ଦେଲେ । ସେ ନିଜ ଭାଇର କଥା ଭୁଲି ଇଚ୍ଛାପୂର୍ତ୍ତି ପାଇଁ ଘୂରି ବୁଲିଲା । କାମରୂପିଣୀ ରାକ୍ଷସୀ ଇଚ୍ଛା ଅନୁସାରେ ରୂପ ପରିବର୍ତ୍ତନ କରିଥାନ୍ତି । ମନରେ ସଂକଳ୍ପ କରିବାମାତ୍ରେ ହିଡ଼ମ୍ବା ଏକ ଅପୂର୍ବ ସୁନ୍ଦରୀ ନାରୀ ରୂପ ଧାରଣ କଲା । ବସ୍ତ୍ରାଭୂଷଣରେ ସୁମଣ୍ଡିତା ହୋଇ ସେ ଧୀରେ ଧୀରେ ଭୀମସେନଙ୍କ ପାଖକୁ ଗଲା ଓ ଅତି ନମ୍ର ଭାବରେ କହିଲା—ହେ ଦେବ ! ଆପଣଙ୍କ ଦ୍ୱାରରେ ଏକ ଭିକାରୁଣୀ ଅପେକ୍ଷା କରିଛି । ଆପଣ ତାକୁ କାମଭିକ୍ଷା ଦେଇ ପାରିବେ କି ?

ଭୀମସେନ ଚମକି ପଡ଼ି ପଚାରିଲେ—ସୁନ୍ଦରି ! ତୁମେ କିଏ ? ଏହି ଅଧରାତିରେ ନିର୍ଜନ ବନଭୂମିରେ କାହିଁକି ବୁଲୁଛ ? ତୁମେ ମୋ'ଠାରୁ କ'ଣ ଆଶା କରୁଛ ?

ହିଡ଼ମ୍ବା କହିଲା—ହେ ନରଦେବ ! ମୁଁ ଏକ ରାକ୍ଷସୀ । ଏହି ବଣ ମୋର ଭାଇ ହିଡ଼ମ୍ବର । ଏଠାକୁ ଯେ ଆସେ ମୋର ଭାଇ ତାକୁ ମାରି ଖାଇଯାଏ । ତୁମକୁ ଖାଇବା ପାଇଁ ସେ ମୋତେ ପଠାଇଛି ।

ଭୀମସେନ ଗର୍ଜନ କରି କହିଲେ—ହଉ ଆ, ମୋତେ ଧରି ଖା, ତୋର ରାକ୍ଷସୀ ପଣିଆ କେତେ ଅଛି ମୁଁ ଦେଖେଁ ।

ହିଡ଼ମ୍ବା ନମ୍ରଭାବରେ କହିଲା—ପ୍ରାଣନାଥ ! ଆପଣ ମୋତେ କାମବଶ କରି-ଦେଇଛନ୍ତି । ମୁଁ ଆପଣଙ୍କୁ ଧରିନେବା ପାଇଁ ଆସିଥିଲି; କିନ୍ତୁ ନିଜେ ମୁଁ ଧରାପଡ଼ିଗଲି । ଆପଣ ମୋତେ ପତ୍ନୀ ରୂପେ ଗ୍ରହଣ କରନ୍ତୁ ।

ଭୀମ କହିଲେ—ମୁଁ ଏପରି ପତ୍ନୀ ନେଇ କଣ କରିବି ? ଏହା ଶୁଣି ହିଡ଼ମ୍ବା କହିଲା—ଆପଣ ଯେପରି କହିବେ ମୁଁ ସେହିପରି ହୋଇଯିବି ।

ଭୀମସେନ ହସି ହସି କହିଲେ—ଯଦି ତୁ ସର୍ପିଣୀ ହୋଇଯିବୁ ?

ହିଡ଼ିମ୍ବା କହିଲା—ନରନାଥ ! ଆପଣ ମୋ' ପ୍ରତି ସଦୟ ହୁଅନ୍ତୁ । ମୋ ଭାଇ ଏବେ ଆସିଯିବ ଓ ସମସ୍ତଙ୍କୁ ମାରି ଖାଇଯିବ । ସେ ଆସିବା ପୂର୍ବରୁ ଆପଣମାନେ ମୋ' ପିଠିରେ ବସି ଏଠାରୁ ପଳାଇ ଚାଲନ୍ତୁ । ମୁଁ ଇଚ୍ଛା ଅନୁସାରେ ରୂପ ଧାରଣ କରିପାରିବି । ଆକାଶରେ ଉଡ଼ିପାରିବି ଓ ଯେତେ ଇଚ୍ଛା ସେତେ ଭାର ବହନ କରି ନେଇଯିବି । ଆପଣ ବିଳମ୍ବ କରନ୍ତୁ ନାହିଁ । ଆପଣ ଭାଇ ଓ ମା'ଙ୍କ ସହିତ ଶୀଘ୍ର ମୋ' ପିଠିରେ ବସନ୍ତୁ ।

ଭୀମସେନ କହିଲେ—ସୁନ୍ଦରି ! ଡରିବା ଓ ପଳେଇଯିବା କ'ଣ ତାହା ମୁଁ ଜାଣେନା । ତୋତେ ବା ତୋ' ଭାଇକୁ ମୋର ଟିକିଏ ହେଲେ ଭୟ ନାହିଁ । ତୁ ଯା, ତୋ' ଭାଇକୁ ଡାକି ଆଣ ।

ହିଡ଼ିମ୍ବା କହିଲା—ପ୍ରାଣନାଥ ! ମୁଁ ମୋର ତନୁମନ, ସର୍ବସ୍ୱ ଆପଣଙ୍କ ଚରଣ ତଳେ ଅର୍ପଣ କରିଦେଇଛି । ଆପଣ ନଜର କରିନେଲେ ମୁଁ ଆପଣଙ୍କ ଚରଣ ସେବା କରିବି ଓ ଗ୍ରହଣ ନ କଲେ ଏଇଠି ଆତ୍ମହତ୍ୟା କରିବି । ହିଡ଼ିମ୍ବା ଏହିପରି କହୁଥିବା ସମୟରେ ନରମାଂସ ଲୋଭୀ ହିଡ଼ିମ୍ବ ବିଳମ୍ବ ହେବା ଦେଖି ନିଜେ ଚାଲିଆସିଲା । ସେ ହିଡ଼ିମ୍ବାର ଶେଷ କେତେ ପଦ କଥା ଶୁଣି ପାରିଲା ଓ ତା'ର ଅତି ସୁନ୍ଦର ମାନବୀ ରୂପ ଦେଖି ଖୁବ୍ ରାଗିଗଲା । ସେ ଗର୍ଜନ କରି କହିଲା—ଦୁଷ୍ଟେ ! ତୁ ରାକ୍ଷସମାନଙ୍କ ସଦାଚାର ବିରୁଦ୍ଧ କାର୍ଯ୍ୟ କରୁଛୁ । ରାକ୍ଷସମାନେ ଉପଦେବ । ସେମାନେ ମାନବୀ ସ୍ତ୍ରୀ ସହିତ ସଙ୍ଗମ କରିପାରନ୍ତି, କିନ୍ତୁ ନିଜ କନ୍ୟାକୁ ମଣିଷକୁ ବିବାହ ଦିଅନ୍ତି ନାହିଁ । ତୁ ରାକ୍ଷସୀ ହୋଇ ପରପୁରୁଷ ପ୍ରତି ଆସକ୍ତ ହୋଇଛୁ । ଠିକ୍ ଅଛି, ତୋର ଏହି ପ୍ରେମିକ ସହିତ ତୋତେ ବି ଯମପୁରକୁ ପଠାଇ ଦେବି । ଏହା କହି ଭୀମସେନ ଉପରେ ପ୍ରହାର କରିବା ପାଇଁ ଦୌଡ଼ିଲା ।

ଭୀମସେନ ସେଥିପାଇଁ ଆଗରୁ ପ୍ରସ୍ତୁତ ହୋଇ ରହିଥିଲେ । ଦୁହେଁ ପରସ୍ପରକୁ ଆକ୍ରମଣ କଲେ । ବିଧା, ଗୋଇଠା, ଚାପୁଡ଼ା, ହାତାହାତି ଶବ୍ଦରେ ଅନ୍ୟ ପାଣ୍ଡବମାନେ ଉଠିପଡ଼ିଲେ । ସେମାନେ ଆଗରେ ଏକ ସୁନ୍ଦରୀ ନାରୀକୁ ଦେଖିଲେ । କୁନ୍ତୀ ପଚାରିଲେ—ଝିଅ ! ତୁ କିଏ ?

ସେ କହିଲା—ମା, ମୁଁ ତୁମର ପୁତ୍ରବଧୂ ।

କୁନ୍ତୀ ପଚାରିଲେ—ଝିଅ ! ତୁ ହଠାତ୍ ମୋ ବୋହୂ କିପରି ହେଲୁ ? ମୋର କେଉଁ ପୁଅର ତୁ ବୋହୂ ହେଲୁ ?

ସେ କହିଲା—ମା, ମୁଁ ତୁମ ମଝିଆ ପୁଅର ବୋହୂ । କୁନ୍ତୀ ପଚାରିଲେ—ମୋ' ପୁଅ କୁଆଡ଼େ ଗଲା ?

ସେ କହିଲା—ମା, ମୋର ଭାଇ ହେଉଛି ହିଡ଼ିମ୍ବ ରାକ୍ଷସ । ତାହାର ସହିତ ଆପଣଙ୍କ ପୁଅ ଯୁଦ୍ଧ କରୁଛନ୍ତି ।

ଏହା ଶୁଣିବାମାତ୍ରେ ମା' କୁନ୍ତୀ କାନ୍ଦିବାକୁ ଲାଗିଲେ ।

ଅର୍ଜୁନ କହିଲେ—ମା ! ତୁ କାନ୍ଦୁଛୁ କାହିଁକି ? ତୋ' ପୁଅକୁ ରାକ୍ଷସ କ'ଣ ଯମରାଜା ବି ମାରିପାରିବେ ନାହିଁ । ମୁଁ ଯାଇ ଦେଖୁଛି ରାକ୍ଷସ କିପରି ? ଏହା କହି ଅର୍ଜୁନ ଦୌଡ଼ିଲେ । ଧର୍ମରାଜ, ନକୁଳ ଓ ସହଦେବ ମଧ୍ୟ ପଛେ ପଛେ ଗଲେ । ମା' ବି ଯାଇ ପହଞ୍ଚିଲେ । ସମସ୍ତେ ଦେଖିଲେ ଦୁଇଜଣ ଘୋର ଯୁଦ୍ଧ କରୁଛନ୍ତି । ବଡ଼ ବଡ଼ ଗଛ ସବୁ ଭାଙ୍ଗି ଚୂନା ହୋଇ ପଡ଼ିଲାଣି । ଦୁଇଜଣଯାକ ଦୀର୍ଘଶ୍ୱାସ ଛାଡ଼ୁଛନ୍ତି । ଭୀମସେନ ରାକ୍ଷସକୁ ତଳେ ପକାଇ ମାଡ଼ିବସିଛନ୍ତି । ଅର୍ଜୁନ ହସି ହସି କହିଲେ—ଭାଇ ! ମୁଁ କଣ ସାହାଯ୍ୟ କରିବି କି ?

ଭୀମ କହିଲେ—ତୁ ଠିଆ ହୋଇ ତାମସା ଦେଖ୍ । ମୁଁ ଏହାକୁ କିପରି ଦଳି ଦେଉଛି ଦେଖ ।

ଏହା ଶୁଣି ଅର୍ଜୁନ କହିଲେ—ଭାଇ ! ମୁଁ ହୋଇଥିଲେ ଏତେବେଳକୁ ତାକୁ ଚଟଣି କରିଦେଇ ସାରିଥାନ୍ତି ।

ଭୀମ କହିଲେ—ରହ, ତୁ ମୋ ପାଖକୁ ଆସନା । ମୁଁ କ'ଣ କରୁଛି ଦେଖ ।

ଅର୍ଜୁନ କହିଲେ—ନା, ଭାଇ ! ମୁଁ ତୁମକୁ ସାହାଯ୍ୟ କରୁଛି ।

ଭୀମସେନ ଏହା ଶୁଣି ହସି ହସି କହିଲେ—ଆଚ୍ଛା, ଦେଖ ମୁଁ ତାକୁ ଏବେ ଯମପୁର ପଠାଇ ଦେଉଛି । ଏହା କହି ସେ ରାକ୍ଷସର କମର ପାଖରୁ ଭାଙ୍ଗିଦେଲେ । ରାକ୍ଷସ କଚ୍ଛଡ଼ ହୋଇ ତଳେ ପଡ଼ିଗଲା । ସେତେବେଳକୁ ସୂର୍ଯ୍ୟୋଦୟ ସମୟ ହୋଇଯାଇ-ଥିଲା । ଅର୍ଜୁନ ବ୍ୟସ୍ତ ହୋଇ କହିଲେ—ଭାଇ ! ଶୀଘ୍ର କାମ ଶେଷ କର । ଆମକୁ ଯଦି କେହି ଦେଖି ପକାଇବ ତେବେ ବଡ଼ ଅନର୍ଥ ହେବ । ଆମକୁ ଏବେ ଲୁଚି ଲୁଚି ଜୀବନ କଟାଇବାକୁ ହେବ । ଏହା ଶୁଣିବା ମାତ୍ରେ ଭୀମ ମା ଓ ଭାଇମାନଙ୍କୁ ପିଠିରେ ବସେଇ ଚାଲିଲେ । ହିଡ଼ମ୍ବା ମଧ୍ୟ ତାଙ୍କ ପଛେ ପଛେ ଚାଲିବାକୁ ଲାଗିଲା ।

ଭୀମସେନ ପଚାରିଲେ—ଆରେ ତୁ କୁଆଡ଼େ ଆସୁଛୁ ? ତୋର ଭାଇ ଯାଇଥିବା ବାଟରେ କଣ ଯିବା ପାଇଁ ଚାହୁଁଛୁ ?

ଏହା ଶୁଣି ହିଡ଼ମ୍ବା କାନ୍ଦିବାକୁ ଲାଗିଲା । କିନ୍ତୁ ତାଙ୍କ ପଛରେ ଯିବା ବନ୍ଦ କଲା ନାହିଁ । ଏହା ଦେଖି ଧର୍ମରାଜ କହିଲେ—ଭୀମ ! ତୁ ଏ ଅବଳା ଦେହରେ ହାତ ଦେବୁ ନାହିଁ । ଧାର୍ମିକ ପୁରୁଷ ସ୍ତ୍ରୀକୁ କେବେହେଲେ ମାରେନାହିଁ । ସେ ଆମର କଣ କ୍ଷତି କରି ପାରିବ । ଭୀମସେନ ସମସ୍ତଙ୍କୁ ନେଇ ସୂର୍ଯ୍ୟାସ୍ତ ହେବା ବେଳକୁ ବହୁତ ଦୂର ଚାଲି-ଯାଇଥିଲେ । ସମସ୍ତେ ଯେତେବେଳେ ବିଶ୍ରାମ ନେବାପାଇଁ ବସିଗଲେ, ସେତେବେଳେ ହିଡ଼ମ୍ବା ମଧ୍ୟ ଯାଇ କୁନ୍ତୀଙ୍କ ପାଖରେ ବସିପଡ଼ିଲା ଓ କାନ୍ଦି କାନ୍ଦି କହିଲା—ମା, ପୁରୁଷର ହୃଦୟ ଏିନା କଠୋର । ଆପଣ ତ ନାରୀଭାବେ ନାରୀର ହୃଦୟ ବ୍ୟଥା ଜାଣନ୍ତି । ନିଜର ପ୍ରିୟତମ ନ ପାଇ ନାରୀ କି ଯନ୍ତ୍ରଣା ଭୋଗ କରେ ତାହା ନାରୀ ହିଁ ଅନୁଭବ କରିପାରେ ।

ଆପଣ ପୁଅକୁ ଆଦେଶ ଦିଅନ୍ତୁ ସେ ମୋତେ ଗ୍ରହଣ କରନ୍ତୁ । ନୋହିଲେ ମୁଁ ଆପଣମାନଙ୍କ ଆଗରେ ଏଇଠି ଆତ୍ମହତ୍ୟା କରିବି ।

ହିଡ଼ିମ୍ବାର କଥା ଶୁଣି କୁନ୍ତୀଙ୍କର ଦୟା ହେଲା । ସେ ଭୀମକୁ କହିଲେ—ବାବୁ ! ତୁ ଏହାକୁ ବିବାହ କର ।

ଭୀମ କହିଲେ—ମା, ଯେ ପର୍ଯ୍ୟନ୍ତ ଧର୍ମରାଜଙ୍କ ବିବାହ ହୋଇନାହିଁ ସେ ପର୍ଯ୍ୟନ୍ତ ମୁଁ କିପରି ବିବାହ କରିବି ?।

ଏହା ଶୁଣି ଧର୍ମରାଜ କହିଲେ—ଭାଇ ! ଏ ସେପରି ବିବାହ ନୁହେଁ । ଏବେ ଆମକୁ ଆପଦ୍‌ଧର୍ମ ପାଳନ କରିବାକୁ ପଡ଼ିବ । ହିଡ଼ିମ୍ବା ଜୀବନ ହରେଇଦେବ । କିଛି ଭାବିବା ଦରକାର ନାହିଁ । ତୁ ତାକୁ ବିବାହ କର, ମୁଁ ଏହି ଆଦେଶ ଦେଉଛି ।

ଆପଣମାନେ ସମସ୍ତେ ଆଦେଶ ଦେଉଛନ୍ତି ତ ମୁଁ ବିବାହ କରିବି । କିନ୍ତୁ ମୁଁ ସନ୍ତାନ ନ ହେବା ପର୍ଯ୍ୟନ୍ତ ଏହା ପାଖରେ ରହିବି । ଏହି କଥା ହିଡ଼ିମ୍ବା ସ୍ୱୀକାର କଲା । କୁନ୍ତୀ କହିଲେ—ଝିଅ ! ତୁ ସାରାଦିନ ଭୀମକୁ ନେଇ ଯୁଆଡ଼େ ଯାଉଛୁ ଯା; କିନ୍ତୁ ସନ୍ଧ୍ୟା-ବେଳକୁ ତାକୁ ଆଣି ଏଠାରେ ଛାଡ଼ିବୁ । ଏହା ଶୁଣି ହିଡ଼ିମ୍ବା ଖୁସି ହେଲା । ଦିନରେ ସେ ଭୀମକୁ ପିଠିରେ ବସେଇ ଆକାଶରେ ଉଡ଼ିଯାଏ ଓ ସୁନ୍ଦରୀ ମାନବୀ ସ୍ତ୍ରୀରୂପ ଧାରଣ କରି ବନ, ଉପବନ ପର୍ବତ, ଗିରିଗୁହାରେ ବୁଲି ବୁଲି ଭୀମଙ୍କ ସହିତ ଆନନ୍ଦ ବିହାର କରେ । ସନ୍ଧ୍ୟାବେଳକୁ ପୁଣି ଭୀମଙ୍କୁ ଆଣି ତାଙ୍କ ବାସସ୍ଥାନରେ ଛାଡ଼ିଦିଏ । ଏହିପରି ବହୁଦିନ ପର୍ଯ୍ୟନ୍ତ ପାଣ୍ଡୁନନ୍ଦନ ଭୀମଙ୍କ ସହ ଦାମ୍ପତ୍ୟ ସୁଖ ଅନୁଭବ କରିବା ପରେ ହିଡ଼ିମ୍ବା ଗର୍ଭବତୀ ହେଲା ଏବଂ ଯଥାଶୀଘ୍ର ଏକ ସୁନ୍ଦର ପୁଅ ଜନ୍ମ କଲା ।

ଶୌନକ ପଚାରିଲେ—ମହାଶୟ ! ହିଡ଼ିମ୍ବା ଯଥାଶୀଘ୍ର କିପରି ପୁତ୍ର ଜନ୍ମ କଲା ? ବାଳକ ତ ବର୍ଷେ ଦୁଇବର୍ଷ ଗର୍ଭରେ ରହିଥିବ ।

ମହର୍ଷି ସୂତ କହିଲେ—ନା, ମହାଭାଗ ! ରାକ୍ଷସୀମାନେ ଗର୍ଭଧାରଣ କରିବା-ମାତ୍ରେ ସନ୍ତାନ ଜନ୍ମ କରିଥାନ୍ତି । ସେମାନଙ୍କ ପିଲାମାନେ ମଧ୍ୟ ବଡ଼ ହେବା ପାଇଁ ବେଶୀ ସମୟ ନିଅନ୍ତି ନାହିଁ । ଜନ୍ମ ହେବାମାତ୍ରେ ସେମାନେ ଯୁବକ ହୋଇଯାନ୍ତି । ତେଣୁ ହିଡ଼ିମ୍ବା ଗର୍ଭଧାରଣ କରିବା ସଙ୍ଗେ ସଙ୍ଗେ ପର୍ବତ ପ୍ରାନ୍ତରେ ପୁଅକୁ ଜନ୍ମ ଦେଇଥିଲା । ସେହି ପୁଅଟି ପୁରୁଷ ବୀର୍ଯ୍ୟରୁ ଓ ରାକ୍ଷସୀ ଗର୍ଭରୁ ଜନ୍ମ ହୋଇଥିଲେ ବି ତା'ଠାରେ ପୁରୁଷର କୌଣସି ଚିହ୍ନ ନ ଥିଲା । ସେ ଦେଖିବାକୁ ଅତି ଭୟଙ୍କର ହୋଇଥିଲା । ଆକାର ତା'ର କୃଷ୍ଣ ପର୍ବତ ପରି ଦେଖାଯାଉଥିଲା । ବାପ ମା' ତାର ନାମ ଦେଲେ ଘଟୋତ୍କଚ । ସେ ଜନ୍ମ ହେବା ମାତ୍ରେ ହିଁ ଯୁବକ ପାଲଟିଗଲା । ହାତ ଯୋଡ଼ି ବାପମା'ଙ୍କୁ ପ୍ରଣାମ କରି କହିଲା—ମା, ବାପା ! ମୁଁ ଆପଣଙ୍କର କି ପ୍ରିୟ କାର୍ଯ୍ୟ କରିବି ଆଦେଶ ଦିଅନ୍ତୁ ।

ଭୀମସେନ କହିଲେ—ପୁଅ, ତୁ ମା'କୁ ଭଲଭାବରେ ପାଳନ ପୋଷଣ କରିବୁ ଓ ମଣିଷକୁ କଷ୍ଟ ଦେବୁ ନାହିଁ । ମୁଁ ଯେତେବେଳେ ତୋତେ ସ୍ମରଣ କରିବି ତୁ ମୋ' ପାଖକୁ ଆସିବୁ ।

ଘଟୋତ୍କଚ ପିତାଙ୍କ ଆଦେଶ ସ୍ୱୀକାର କଲା ଓ ଗୋଟେଇମା କୁନ୍ତୀଙ୍କ ପାଖକୁ ଯାଇ ତାଙ୍କୁ ଓ ଅନ୍ୟ ଚାରି ପାଣ୍ଡବଙ୍କୁ ପ୍ରଣାମ କଲା । ସମସ୍ତେ ଆନନ୍ଦରେ ଘଟୋତ୍କଚକୁ ଆଲିଙ୍ଗନ କଲେ ଓ ଆଶୀର୍ବାଦ ଦେଲେ । ଏହିପରି ପ୍ରତିଜ୍ଞା ପୂର୍ଣ୍ଣ ହେବା ପରେ ଭୀମସେନ ହିଡ଼ିମ୍ବା ଓ ଘଟୋତ୍କଚକୁ ବିଦାୟ ଦେଲେ । ସମସ୍ତେ ସେଠାରୁ ଏକଚକ୍ରା ନଗରୀକୁ ଯାଇ ରହିଲେ ।

ଶୌନକ ପଚାରିଲେ—ମହାଶୟ ! ମୋର ଏକ ସନ୍ଦେହ ହେଉଛି । ରାକ୍ଷସମାନେ ଯଦି ଇଚ୍ଛା ଅନୁସାରେ ରୂପ ଧାରଣ କରିପାରନ୍ତି, ତେବେ ସେମାନେ ମଣିଷ ରୂପରେ ରହନ୍ତି ନାହାନ୍ତି କାହିଁକି ? ହିଡ଼ିମ୍ବା ସର୍ବଦା ସୁନ୍ଦରୀ ସ୍ତ୍ରୀ ହୋଇ କାହିଁକି ରହିଲା ନାହିଁ ? ସେ ଭୀମକୁ ପ୍ରସନ୍ନ କରିବା ପରେ କାହିଁକି ବିକରାଳ ରାକ୍ଷସୀ ରୂପ ଧରୁଥିଲା ?

ମହର୍ଷିସୂତ କହିଲେ—ମହାଭାଗ ! ସୌନ୍ଦର୍ଯ୍ୟର କୌଣସି ନିର୍ଦ୍ଦିଷ୍ଟ ପରିଭାଷା ନାହିଁ । ନିଜ ରୂପଟି ସମସ୍ତଙ୍କୁ ଭଲଲାଗେ । ଲଙ୍କା ଜୟ କରିବା ପରେ ପ୍ରଭୁ ଶ୍ରୀରାମଚନ୍ଦ୍ର ପୁଷ୍ପକ ବିମାନରେ ଯେତେବେଳେ ଅଯୋଧ୍ୟା ଫେରୁଥିଲେ ସେତେବେଳେ ବାଟରେ କିଷ୍କିନ୍ଧ୍ୟା ନଗରୀ ପଡ଼ିଲା । ସୀତାଦେବୀ ସୁଗ୍ରୀବଙ୍କର ସ୍ତ୍ରୀମାନଙ୍କୁ ଦେଖିବା ପାଇଁ ଇଚ୍ଛା କଲେ । ପୁଷ୍ପକ ତଳକୁ ଆସିଲା, ବାନରୀମାନେ ଯେତେବେଳେ ଶୁଣିଲେ ଯେଉଁ ସୀତା ପାଇଁ ଏଡ଼େ ବଡ଼ ଯୁଦ୍ଧ ହେଲା, କେତେ କେତେ ଋକ୍ଷ ଓ ବାନର ମଲେ, ସେହି ସୀତା ଆସିଛନ୍ତି, ସେତେବେଳେ ବଡ଼ ଉତ୍ସୁକ ହୋଇ ସେମାନେ ସୀତାଙ୍କୁ ଦର୍ଶନ କରିବା ପାଇଁ ଆସିଲେ । ଜାନକୀଙ୍କ ରୂପ ଦେଖି ସମସ୍ତେ ଖୁସି ହୋଇ ପରସ୍ପର ମଧ୍ୟରେ କଥାବାର୍ତ୍ତା ହେଲେ— ଜାନକୀ ଦେଖିବାକୁ ଖୁବ୍ ସୁନ୍ଦର । କିନ୍ତୁ ଗୋଟିଏ ଅଭାବ ଅଛି । ଯଦି ଲାଙ୍ଗୁଡ଼ଟିଏ ଥାଆନ୍ତା ତେବେ ଆହୁରି ସୁନ୍ଦର ହୋଇଥାନ୍ତେ । ଲାଙ୍ଗୁଡ଼ ନଥିଲେ ସେ କି ସୁନ୍ଦର ? ତେଣୁ ସୁନ୍ଦରପଣ ନିଜ ମନରେ ଥାଏ । ସେହିପରି ରାକ୍ଷସମାନଙ୍କୁ ତାଙ୍କର ନିଜ ରୂପ ଭଲ ଲାଗେ । ହିଡ଼ିମ୍ବା ନିଜ ପାଇଁ ନୁହେଁ କେବଳ ଭୀମଙ୍କୁ ଖୁସି କରିବା ପାଇଁ ମାନବୀରୂପ ଧାରଣ କରୁଥିଲା । ଦ୍ୱିତୀୟ କଥା ସେମାନେ ମୂଳତଃ ରାକ୍ଷସ । ମାୟାରେ ମାନବ ମାନବୀ ରୂପ ଧରୁଥିଲେ । ମାୟା ନିର୍ମିତ ରୂପ ବେଶୀ ସମୟ ରହିପାରେ ନାହିଁ । ଶ୍ରୀକୃଷ୍ଣଙ୍କ ଆଗରେ ଶାଲ୍ୱ ମାୟାଦ୍ୱାରା ବସୁଦେବଙ୍କ କଟାମୁଣ୍ଡ ଦେଖାଇଥିଲା । କିନ୍ତୁ ଅଳ୍ପ ସମୟ ପରେ ତାହା ଅପସରି ଗଲା । ତେଣୁ ମାୟାବୀ ରୂପ ବେଶୀ ଦିନ ରହିବା ସମ୍ଭବ ନୁହେଁ । ରାକ୍ଷସ ସମାଜରେ ମଣିଷ ରୂପକୁ ନିନ୍ଦା କରାଯାଏ ।

ଶୌନକ କହିଲେ—ହଁ ମହାଶୟ ! ଆପଣଙ୍କ କଥା ସତ । ଯେଉଁ ବସ୍ତୁଟି ନିଜର ହୁଏ ସେଥିପ୍ରତି ସ୍ୱାଭାବିକ ଆସକ୍ତି ଆସିଯାଏ । ଶୂକରକୁ ଯଦି କୁହାଯିବ ତୁ ମଲେ ମଣିଷ ହେବୁ, ସୁନ୍ଦର ସ୍ୱାଦିଷ୍ଟ ଖାଦ୍ୟ ଖାଇବୁ ତେବେ ସେ ନିଜର ଶୂକରଦେହ ଓ ନିଜର ପ୍ରିୟ ଖାଦ୍ୟ ତ୍ୟାଗ କରିବାକୁ କେବେହେଲେ ସମ୍ମତ ହେବ ନାହିଁ । ନିଜର କବିତା ଯେପରି ସମସ୍ତଙ୍କୁ ଭଲଲାଗେ ସେହିପରି ସମସ୍ତଙ୍କୁ ନିଜର ବର୍ଣ୍ଣ ଓ ଦେହ ଭଲ ଲାଗେ । ହଉ, ଆପଣ କୁହନ୍ତୁ ପାଣ୍ଡବମାନେ ଘଟୋତ୍କଚ ଦ୍ୱାରା କିଛି କାମ କରାଇଲେ କି ନାହିଁ ?

ମହର୍ଷି ସୂତ କହିଲେ —ହଁ ମହାଭାଗ ! ଯେତେବେଳେ କୌଣସି ବୋଝ ବୋହିବା ବା ଯୁଦ୍ଧ କରିବା କାମ ପଡ଼େ ସେତେବେଳେ ପାଣ୍ଡବମାନେ ଘଟୋତ୍କଚକୁ ସ୍ମରଣ କରୁଥିଲେ । ପାଣ୍ଡବମାନେ ବଦରୀବନକୁ ଯିବାବେଳେ ସୁକୁମାରୀ ଦ୍ରୌପଦୀ ବରଫ ପର୍ବତର ଶିଖରକୁ ଚଢ଼ିବା ପାଇଁ ଅସମର୍ଥ ହୋଇ ମୂର୍ଚ୍ଛିତ ହୋଇପଡ଼ିବାରୁ ନକୁଳ, ସହଦେବ, ଧର୍ମରାଜ ପ୍ରଭୃତି କାନ୍ଦିବାକୁ ଲାଗିଲେ । ଭୀମସେନ କହିଲେ—ଆପଣମାନେ ଏପରି ଅଧୀର କାହିଁକି ହେଉଛନ୍ତି ? ମୁଁ ସମସ୍ତଙ୍କୁ କାନ୍ଧରେ ବସାଇ ନେଇଯିବି । ଯଦି ଆପଣମାନେ କହିବେ ତେବେ ଘଟୋତ୍କଚକୁ ଡାକିବି ସେ ସମସ୍ତଙ୍କୁ ପିଠିରେ ବସାଇ ନେଇଯିବ ।

ଧର୍ମରାଜ କହିଲେ —ହଁ ଭାଇ ! ଘଟୋତ୍କଚକୁ ଡାକ । ସେ ଏହି ସମୟରେ ଆମକୁ ସାହାଯ୍ୟ କରିବ । ଧର୍ମରାଜଙ୍କ ଆଦେଶ ପାଇବାମାତ୍ରେ ଭୀମସେନ ହିଡ଼ିମ୍ବାନନ୍ଦନ ଘଟୋତ୍କଚକୁ ସ୍ମରଣ କଲେ । କାମରୂପୀ ରାକ୍ଷସ ଘଟୋତ୍କଚ ନିଜର କେତେକ ସାଙ୍ଗଙ୍କୁ ଧରି ଆସି ପହଞ୍ଚିଗଲା ଓ ସମସ୍ତଙ୍କୁ ପ୍ରଣାମ କଲା । ହାତଯୋଡ଼ି ପଚାରିଲା—ବାପା ! ମୋତେ କାହିଁକି ସ୍ମରଣ କଲେ ?

ଭୀମ କହିଲେ—ପୁଅ ! ତୋ'ର ଏଇ ମା' ବହୁତ ଥକି ପଡ଼ିଛନ୍ତି, ତାଙ୍କୁ କାନ୍ଧରେ ବସାଇ ନେଇଚାଲ । ଆମେ ସବୁ ଚାଲି ଚାଲି ଯିବୁ । କିନ୍ତୁ ବରଫ ହେତୁ ସେ ଚାଲିପାରୁ ନାହାନ୍ତି ।

ଏହା ଶୁଣି ଘଟୋତ୍କଚ କହିଲା—ବାପା ! ମୁଁ ଏକା ଆପଣମାନଙ୍କୁ ସମସ୍ତଙ୍କୁ ପିଠିରେ ବସେଇ ନେଇଯାଇପାରିବି । ମୋ'ସାଙ୍ଗରେ ଆହୁରି ଅନେକ ରାକ୍ଷସବନ୍ଧୁ ଅଛନ୍ତି । ମୁଁ ମା'ଙ୍କୁ କାନ୍ଧରେ ବସାଉଛି । ଆପଣମାନେ ଏମାନଙ୍କ କାନ୍ଧରେ ବସିଯାଆନ୍ତୁ । ଘଟୋତ୍କଚର କଥା ଶୁଣି ସମସ୍ତେ ଖୁସି ହେଲେ ଓ ରାକ୍ଷସମାନଙ୍କ କାନ୍ଧରେ ବସି ଗନ୍ଧମାଦନ ପର୍ବତର ଶୋଭା ଦେଖି ଦେଖି ବଦରୀବନରେ ପହଞ୍ଚିଲେ । ସେଠାରେ ଭଗବାନ୍ ନାରାୟଣଙ୍କୁ ଦେଖି ସମସ୍ତେ ଖୁସି ହେଲେ । ଘଟୋତ୍କଚ ସହିତ ରାକ୍ଷସମାନଙ୍କୁ ଆଶୀର୍ବାଦ ଦେଇ ବିଦାୟ କଲେ । ଆଜିକାଲି ଲୋକଙ୍କୁ ପିଠିରେ, କାନ୍ଧରେ ବୋହିନେଉଥିବା ଲୋକେ ଘଟୋତ୍କଚର ବଂଶଧର ବୋଲି ମନେହୁଏ । ଏହିପରିଭାବେ ଘଟୋତ୍କଚ ପାଣ୍ଡବମାନଙ୍କୁ ମୃତ୍ୟୁ ମୁଖରୁ ଉଦ୍ଧାର କରିଥିଲେ ।

ଆଉ ଥରେ ଘଟୋତ୍କଚ ନିଜର ଶରୀରକୁ ବଳିଦେଇ ଅର୍ଜୁନଙ୍କୁ ରକ୍ଷା କରିଥିଲେ । କର୍ଣ୍ଣ ଦେବରାଜ ଇନ୍ଦ୍ରଙ୍କୁ ପ୍ରସନ୍ନ କରି ଏପରି ଏକ 'ଶକ୍ତି' ଅସ୍ତ୍ର ପାଇଥିଲେ ଯାହା କେବେହେଲେ ବ୍ୟର୍ଥ ହେବାର ନ ଥିଲା । ସେହି ଅସ୍ତ୍ରକୁ କର୍ଣ୍ଣ ଅର୍ଜୁନଙ୍କୁ ମାରିବା ପାଇଁ ପ୍ରେରଣ କଲେ । ଭଗବାନ୍ ଶ୍ରୀକୃଷ୍ଣ ତାହାକୁ ଘଟୋତ୍କଚ ଉପରକୁ ଛାଡ଼ିଦେଇ ବ୍ୟର୍ଥ କରିଥିଲେ । ସେହି ଅସ୍ତ୍ରରେ ବୀର ଘଟୋତ୍କଚ ମୃତ୍ୟୁବରଣ କଲା, କିନ୍ତୁ ଅର୍ଜୁନ ରକ୍ଷା ପାଇଗଲେ । ସେହି ଅସ୍ତ୍ର ବାଜିଥିଲେ ଅର୍ଜୁନଙ୍କର ମୃତ୍ୟୁ ନିଶ୍ଚିତଭାବେ ହୋଇଥାନ୍ତା । ଏହି ଘଟଣାରେ ମହାଭାରତ

ଯୁଦ୍ଧର ପରିଣତି ବଦଳିଗଲା । ବଦଳି ନ ଥା'ନ୍ତା କିପରି ? କାରଣ, ଭଗବାନ୍ ତ' ଆଗରୁ ସବୁ ପ୍ରବନ୍ଧ କରିପାରିଥିଲେ ।

ମୁନିଗଣ ! ଭୀମନନ୍ଦନ ହିଡ଼ିମ୍ବା ପୁତ୍ର ଘଟୋତ୍କଚ କଥା ଆପଣମାନେ ଶୁଣିଲେ । ବର୍ତ୍ତମାନ ମୁଁ ଅର୍ଜୁନଙ୍କର ପୁତ୍ରମାନଙ୍କ କଥା କହୁଛି ।

**ଛପ୍ପୟ**

**କରି ହିଡମ୍ବା ବନସ୍ତୁ ଦୟା କୁନ୍ତୀ କୁଁ ଆଣି ।**
**ଆୟୁଷୁ ଦୀହ୍ନୀ ଭୀମ ରାକ୍ଷସୀ ବହୁ ଜନାଣି ॥**
**ତାହୀ ତେଁ ସୁତ ଭୟୋ ଘଟୋତ୍କଚ ଅତି ବଲଶାଲୀ ।**
**ଇନ୍ଦ୍ରଦତ୍ତ ଯୋ ଶକ୍ତି କର୍ଣ୍ଣକୀ କୀହ୍ନୀ ଖାଲୀ ॥**
**ଅର୍ଜୁନ ବଧ ହିତ ସୁରକ୍ଷିତ, ରଖୀ କର୍ଣ୍ଣନେ ଯତ୍ନ କରି ।**
**ବୀର ଘଟୋତ୍କଚ କେଁ ଲଗୀ, ଲଗତ ଭୂମି ପେ ପର୍ୟୋ ମରି ॥**



## ଅର୍ଜୁନଙ୍କର ଅନ୍ୟ ପୁତ୍ର

**ଛପ୍ପୟ**

**କରେଣୁମତ୍ୟାଂ ନକୁଲୋ ନରମିତ୍ରଂ ତଥାର୍ଜୁନଃ ।**
**ଇରାବନ୍ତମୁଲୂପ୍ୟାଂ ବୈ ସୁତାୟାଂ ବଭ୍ରୁବାହନମ୍ ॥**
**ମଣିପୁରପତେଃ ସୋଽପି ତତ୍ପୁତ୍ରଃ ପୁତ୍ରିକାସୁତଃ ॥**

(ଭାଗ—୯ସ୍କ-୨୨ଅ-୩୨ ଶ୍ଳୋ)

ଇରବାନ୍ ସୁତ ଜନ୍ୟୋ ଉଲୂପୀ ତେଁ ଅରଜୁନନେ ।
ଦଈ ପୁତ୍ରିକା ଧର୍ମ ସହିତ ମଣିପୁର ନରେଶନେ ॥
ସୁତା ବ୍ୟାହି ପ୍ରଣ କରୟୋ ପୁତ୍ର ଜୋ ପୁତ୍ରୀ ଜାବୈ ।
ସୋ ହୋୱୈ ଯୁବରାଜ ହମାରେ ପୁତ୍ର କହାବୈ ॥
ତାସୁ ଗରଭ ତେଁ ଅତୀ ବଲୀ, ପୁତ୍ର ବଭ୍ରୁବାହାନ ଭୟୋ ।
ଲଖି ରଣ କୌଶଲ ତାସୁ କୋଂ, ବିସ୍ମିତ ଅର୍ଜୁନ ହୈ ଗୟୋ ॥

ପୁତ୍ର ପିତା ଅନୁରୂପ ହୁଏ । ବାଳକ ଉପରେ କାର୍ଯ୍ୟ, କୁଳ ଓ ସଂସ୍କାରର ପ୍ରଭାବ ପଡ଼ିଥାଏ । ଧର୍ମତତ୍ତ୍ୱବିତ୍ ମନୀଷୀଗଣ ପୁତ୍ରକୁ ପିତାର ଆତ୍ମା ବୋଲି କହିଛନ୍ତି । ଯଦି ପୁତ୍ରଠାରେ ପିତାର ଅନୁରୂପ ଗୁଣ ନାହିଁ ତେବେ ସେଥିରେ ସଂସ୍କାର, ଅଦୃଷ୍ଟ ତଥା ମାତୃଦୋଷ ଥିବା ବିଶ୍ୱାସ କରାଯାଏ । କୁଳାଗତ ସଦାଚାର ପାଳନ ସହିତ ଧର୍ମପୂର୍ବକ ଯେଉଁ ପୁତ୍ର ଜାତ ହୁଏ ତାକୁ ଔରସଜ ଶ୍ରେଷ୍ଠ ପୁତ୍ର କୁହାଯାଏ ଓ ସେହି ପୁତ୍ର ପିତାଙ୍କ ଅନୁରୂପ ହୁଏ ।

ମହର୍ଷି ସୂତ କହିଲେ—ମୁନିଗଣ ! ମୁଁ ଆପଣଙ୍କୁ ବର୍ତ୍ତମାନ ଅତି ସଂକ୍ଷେପରେ ଅର୍ଜୁନଙ୍କର ପୁତ୍ରମାନଙ୍କ କଥା କହୁଛି, ଶୁଣନ୍ତୁ । ବନବାସର ଅର୍ଥ ବିଦେଶରେ ବାସ କରିବା ବା ନିଜ ନଗର ଛାଡ଼ି ପୃଥିବୀ ପର୍ଯ୍ୟଟନ କରିବାକୁ ବୁଝାଇଥାଏ । ଦିନେ ଦ୍ରୌପଦୀଙ୍କ କକ୍ଷରେ ଯୁଧିଷ୍ଠିର ଥିବାବେଳେ ଅର୍ଜୁନ ସେହି ଘର ଭିତରକୁ ଧନୁଶର ଆଣିବା ପାଇଁ ପଶି ଯାଇଥିଲେ । ଦସ୍ୟୁମାନଙ୍କ କବଳରୁ ବ୍ରାହ୍ମଣଙ୍କ ଗାଈ ଉଦ୍ଧାର କରି ଆଣିବା ପରେ ଅର୍ଜୁନ ଧର୍ମରାଜଙ୍କୁ କହିଲେ—ଭାଇ ! ନିୟମ ଅନୁସାରେ ମୋତେ ବାରବର୍ଷ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ ପୂର୍ବକ ତୀର୍ଥ ଭ୍ରମଣରେ ଯିବାକୁ ପଡ଼ିବ ।

ଏହା ଶୁଣି ଧର୍ମରାଜ କହିଲେ—ଆରେ ଭାଇ ! ଏଥିରେ ସେପରି କିଛି କଥା ନାହିଁ । ତୁ ତ ଆବଶ୍ୟକ କାର୍ଯ୍ୟ ପାଇଁ ଯାଇଥିଲୁ । ବିପଦ ଆପଦ ସମୟରେ ମର୍ଯ୍ୟାଦା ଲଙ୍ଘନ କରାଯାଇଥାଏ । ତେଣୁ ଏଥିରେ ସେପରି କିଛି ଅପରାଧ ଘଟିନି । ଯଦି ବା କିଛି ଦୋଷ ହୋଇଛି ତାହାକୁ ମୁଁ କ୍ଷମା କରୁଛି । ତୁ ବନବାସ କରିବା ବିଚାର ତ୍ୟାଗ କର ।

ଅର୍ଜୁନ କହିଲେ—ଦେବ ! ଧର୍ମ ପାଳନରେ ଦମ୍ଭ ପ୍ରକାଶ କରିବା ଦୋଷାବହ । ଆମେ ସ୍ୱାର୍ଥପାଇଁ ନିଜ ପ୍ରତିଜ୍ଞାକୁ ଅର୍ଥ ଅର୍ଥାନ୍ତର କରିବା କାର୍ଯ୍ୟ ଛଳନା ଓ ପ୍ରବଞ୍ଚନା ବ୍ୟତୀତ ଅନ୍ୟ କିଛି ନୁହେଁ । ତେଣୁ ନିୟମରେ ଶିଥିଳତା ପ୍ରକାଶ କରିବା ଉଚିତ ନୁହେଁ । ଶିଥିଳତା ଆସିବା ମାତ୍ରେ ନିୟମ, ନିୟମ ହୋଇ ରହେ ନାହିଁ । ନିୟମ ଅନୁସାରେ ବାରବର୍ଷ ଇନ୍ଦ୍ରପ୍ରସ୍ଥ ତ୍ୟାଗ କରିବା ମୋ' ପକ୍ଷରେ ଉଚିତ ହେବ ।

ଅର୍ଜୁନଙ୍କର ଅତ୍ୟଧିକ ଆଗ୍ରହ ଦେଖି ଧର୍ମରାଜ ଅନୁମତି ଦେଇ ଦେଲେ । କିଛି ସେବକ ଓ ବ୍ରାହ୍ମଣମାନଙ୍କୁ ସାଙ୍ଗରେ ନେଇ ଅର୍ଜୁନ ପ୍ରଥମେ ଉତ୍ତରାଖଣ୍ଡ ଆଡ଼କୁ ଯାତ୍ରା କଲେ । ଗଙ୍ଗାନଦୀ କୂଳେ କୂଳେ ଥିବା ନଗର, ଗ୍ରାମ, ଦେଖି ଦେଖି ସେ କୁଶାବର୍ତ୍ତ ତୀର୍ଥରେ ପହଞ୍ଚିଲେ । ଭାଗୀରଥୀ ଗଙ୍ଗା ସେହି ସ୍ଥାନରେ ପିତା ହିମାଳୟଙ୍କ କୋଳ ତ୍ୟାଗ କରି ପୃଥିବୀରେ ଅବତୀର୍ଣ୍ଣ ହୋଇଛନ୍ତି । ଏହାକୁ ଗଙ୍ଗାଦ୍ୱାର, ହରଦ୍ୱାର, ହରିଦ୍ୱାର ଓ କୁଶାବର୍ତ୍ତ କ୍ଷେତ୍ର ନାମରେ ନାମିତ କରାଯାଇଛି । ସେହି ସ୍ଥାନର ରମଣୀୟ ପ୍ରାକୃତିକ ଶୋଭା ଦେଖି ଅର୍ଜୁନ ଆନନ୍ଦିତ ହେଲେ ଓ ସେଠାରେ କିଛିଦିନ ରହିଲେ । ଦିନେ ସେ ଗଙ୍ଗାରେ ସ୍ନାନ କରୁଥିବା ସମୟରେ କୌରବ୍ୟ ନାମକ ନାଗର କନ୍ୟା ଉଲୂପୀ ଆସି

ସେଠାରେ ରହୁଥିଲା । ସେ ଦେବକନ୍ୟା ଥିଲା । ଉଲୂପୀ ସୁନ୍ଦରୀ ଯୁବତୀ ଓ କୁମାରୀ ଥିଲା । ଇନ୍ଦ୍ର ପୁତ୍ର ଅର୍ଜୁନଙ୍କୁ ଦେଖି ସେ ତାଙ୍କ ପ୍ରତି ଆସକ୍ତ ହୋଇ ପଡ଼ିଲା । ସେ ପାତାଳରେ ରହୁଥିଲା । ଜଳମାର୍ଗରେ ସେ ପାତାଳରୁ ଯିବା ଆସିବା କରୁଥିଲା । ଅର୍ଜୁନ ଯେତେବେଳେ ଜଳରେ ବୁଡ଼ ପକାଇଲେ ଠିକ୍ ସେତିକିବେଳେ ସେ ଅର୍ଜୁନଙ୍କୁ ଧରି ପାତାଳପୁରକୁ ନେଇଗଲା । ଏଣେ ଅର୍ଜୁନ କୌଣସି ପ୍ରକାର ଭୟ ନକରି ସେଠାରେ ଥିବା ମଣିମୟ ଭବନ, ଆଲୋକ ପ୍ରଦାନ କରୁଥିବା ବହୁମୂଲ୍ୟ ମଣିକୁ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇ ଚାରିଆଡ଼େ ବୁଲିବାକୁ ଲାଗିଲେ । ସେ ଉଲୂପୀକୁ ପଚାରିଲେ—ଦେବି ! ତୁମେ ମୋତେ ଏଠାକୁ କାହିଁକି ଆଣିଛ ?

ଉଲୂପୀ କହିଲା—ନରନାଥ ! ଐରାବତ ନାଗକୁଳରେ ଜାତ କୌରବ୍ୟ ନାମକ ନାଗଙ୍କର ମୁଁ ହେଉଛି କନ୍ୟା । ମୋର ନାମ ଉଲୂପୀ । ଆପଣଙ୍କୁ ମୁଁ ବିବାହ କରିବା ପାଇଁ ଚାହୁଁଛି ।

ଅର୍ଜୁନ ପଚାରିଲେ—ଦେବି ! ନାଗମାନେ ଉପଦେବ ଶ୍ରେଣୀସ୍ଥ । ମନୁଷ୍ୟ ସହିତ ସେମାନଙ୍କର ସମ୍ବନ୍ଧ କପରି ହେବ ?

ଉଲୂପୀ କହିଲା—ଦେବ ! ଆପଣଙ୍କୁ ମଣିଷ ବୋଲି କିଏ କହୁଛି ? ଆପଣ ତ ସାକ୍ଷାତ୍ ନରାବତାର । ଦେବରାଜ ଇନ୍ଦ୍ରଙ୍କ ଔରସରୁ ମାତା କୁନ୍ତୀଙ୍କ ଗର୍ଭରୁ ଆପଣ ଜନ୍ମ ଗ୍ରହଣ କରିଛନ୍ତି । ଆପଣ ଦେବକନ୍ୟାଙ୍କ ପତି ହୋଇପାରିବେ ।

ଅର୍ଜୁନ କହିଲେ—ଦେଖ, ମୁଁ ମୋର ଭାଇମାନଙ୍କ ପାଖରେ ବାରବର୍ଷ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ ପାଇଁ ପ୍ରତିଜ୍ଞା କରି ଆସିଛି ।

ଉଲୂପୀ କହିଲା—ମହାଭାଗ ! ପରପତ୍ନୀ ସହିତ ସଙ୍ଗମ କଲେ ବ୍ରହ୍ମଚର୍ଯ୍ୟ ବ୍ରତ ଲୋପ ହୁଏ । ଆପଣ ମୋତେ ପତ୍ନୀ ରୂପେ ଗ୍ରହଣ କରନ୍ତୁ ଓ ଶାସ୍ତ୍ରୀୟ ବିଧାନ ଅନୁଯାୟୀ ମୋର ପାଣି ଗ୍ରହଣ କରନ୍ତୁ । ଏହାଦ୍ୱାରା ଆପଣଙ୍କର ବ୍ରତ ଭଙ୍ଗ ହେବ ନାହିଁ, ଅଧିକନ୍ତୁ ମୋର ଜୀବନ ରକ୍ଷା ହୋଇପାରିବ । ମୁଁ ଶପଥ କରି କହୁଛି, ଯଦି ଆପଣ ମୋତେ ପତ୍ନୀ ରୂପେ ଗ୍ରହଣ ନ କରିବେ ତେବେ ଏ ଜୀବନ ତ୍ୟାଗ କରିବି, ଆତ୍ମହତ୍ୟା କରିବି । ଆପଣଙ୍କ ପ୍ରତିଜ୍ଞା କେବଳ ପତ୍ନୀ ଦ୍ରୌପଦୀ ସମ୍ବନ୍ଧିତ ।

ଅର୍ଜୁନଙ୍କର ସମ୍ମତି ପାଇବାମାତ୍ରେ ବିବାହର ଆଡ଼ମ୍ବର ପୂର୍ଣ୍ଣ ଆୟୋଜନ ହେଲା । ନାଗମାନେ ଅର୍ଜୁନଙ୍କ ସହିତ ଉଲୂପୀର ବିବାହ କରିଦେଲେ । ଦିନଟିଏ ସେଠାରେ କଟାଇ ଅର୍ଜୁନ ନବବିବାହିତା ପତ୍ନୀକୁ ନେଇ ହରିଦ୍ୱାର ଫେରିଆସିଲେ । ସେଠାରେ ଉଲୂପୀ ସହିତ ଅର୍ଜୁନ ବହୁଦିନ ଆନନ୍ଦରେ କଟାଇଲେ । ଉଲୂପୀର ପୁଅଟିଏ ହେବା ପରେ ଅର୍ଜୁନ ମା' ଓ ପୁଅକୁ ନାଗଲୋକରେ ଛାଡ଼ି ପୁଣି ତୀର୍ଥ ଭ୍ରମଣରେ ବାହାରିଲେ । ହିମାଞ୍ଚଳର ତୀର୍ଥ ଦେଖିସାରି ସେ ପୂର୍ବଦିଗକୁ ଗଲେ । ନୈମିଷାରଣ୍ୟ, ବ୍ରହ୍ମାବର୍ତ୍ତ,

ପ୍ରୟାଗ, କାଶୀ ତଥା ଅଙ୍ଗ, ବଙ୍ଗ, ଉତ୍କଳ, କଳିଙ୍ଗ ଦେଶର ତୀର୍ଥସବୁ ଦେଖିସାରି ମଣି-ପୁରରେ ପହଞ୍ଚିଲେ । ସେଠାରେ ଚିତ୍ରବାହନ ନାମରେ ରାଜା ରାଜତ୍ୱ କରୁଥିଲେ । ଅର୍ଜୁନ ସେଠାରେ ବନ, ପର୍ବତ ଓ ସରୋବରତୀରରେ ବିହାର କରିବାକୁ ଲାଗିଲେ । ଦିନେ ସେ ଏକ ପୁଷ୍କରିଣୀ କୂଳରେ ବସିଥିଲେ । ହଠାତ୍ ସେ ନୂପୁର୍ ଧ୍ୱନି ଶୁଣିବାକୁ ପାଇଲେ । ପଛକୁ ଫେରି ଚାହିଁ ଦେଖିଲେ ବହୁ ଯୁବତୀ ଆସୁଛନ୍ତି । ସେମାନଙ୍କ ଆଗରେ ଏକ ସବୁଠୁ ସୁନ୍ଦରୀ ରୂପବତୀ ଯୁବତୀ ଆସୁଛି । ସେହି ଯୁବତୀ ମଣିପୁରର ରାଜା ଚିତ୍ରବାହନଙ୍କର ଏକମାତ୍ର ସୁକୁମାରୀ କନ୍ୟା । ସେ ଅଦ୍ୟାବଧି ଅବିବାହିତା ଅଛି ।

ଅର୍ଜୁନ ଥିଲେ ରାଜପୁତ୍ର । ସେ କୁଳୀନ, ସୁନ୍ଦର, ବୀର ଓ ନିର୍ଭୀକ ଥିଲେ । ସେହି କୁମାରୀ ପ୍ରତି ସେ ଆସକ୍ତ ହୋଇ ପଡ଼ିଲେ । ସେ ନିର୍ଭୟ ହୋଇ ମହାରାଜ ଚିତ୍ରବାହନଙ୍କ ପାଖକୁ ଯାଇ କହିଲେ—ରାଜନ୍ ! ମୁଁ ରାଜପୁତ୍ର ଓ କ୍ଷତ୍ରିୟ ।

ରାଜା ଚିତ୍ରବାହନ ପୁଣି ପରିଚୟ ପଚାରିବାରୁ ଅର୍ଜୁନ ପୁଣି କହିଲେ—ମହାରାଜ ! ମୁଁ ହସ୍ତିନାପୁର ରାଜା ମହାରାଜ ଶାନ୍ତନୁଙ୍କ ପ୍ରପୌତ୍ର, ବିଚିତ୍ରବୀର୍ଯ୍ୟଙ୍କ ପୌତ୍ର ଓ ମହାରାଜ ପାଣ୍ଡୁଙ୍କ ତୃତୀୟ ପୁତ୍ର । ଧର୍ମରାଜ ଯୁଧିଷ୍ଠିର ଓ ଭୀମସେନ ମୋର ବଡ଼ଭାଇ ଓ ନକୁଳ, ସହଦେବ ମୋର ସାନଭାଇ, ଆପଣଙ୍କୁ କିଛି ମାଗିବା ପାଇଁ ଆସିଛି ।

ରାଜା କହିଲେ—କୁମାର । ଏ ରାଜ୍ୟ ପୁରାପୁରି ତୁମର । ତୁମେ ପାଣ୍ଡୁଙ୍କ ପୁତ୍ର ଓ ସେହି ଦୃଷ୍ଟିରୁ ମୋର ପୁତ୍ର ସ୍ଥାନୀୟ । କୁହ, ତୁମେ କଣ ଚାହୁଁଛ ?

ଅର୍ଜୁନ ନମ୍ରଭାବରେ କହିଲେ—ମହାରାଜ ! ମୁଁ ଆପଣଙ୍କ କନ୍ୟାଙ୍କୁ ବିବାହ କରିବା ପାଇଁ ଚାହୁଁଛି ।

ଆନନ୍ଦିତ ହୋଇ ରାଜା କହିଲେ—ଏହା ମୋ'ର ପରମ ସୌଭାଗ୍ୟ । ତୁମ ପରି କୁଳୀନ, ସଦାଚାରୀ, ବିଶ୍ୱବିଜୟୀ ବୀର ମୋ'ର ଝିଅ ପାଇଁ ଆଉ କେଉଁଠୁ ମିଳିବେ ? କିନ୍ତୁ ମୋର ଏକ କୁଳକ୍ରମାଗତ ପ୍ରତିଜ୍ଞା, ତାହା ତୁମକୁ ପାଳନ କରିବାକୁ ପଡ଼ିବ ।

ଅର୍ଜୁନ ପ୍ରତିଜ୍ଞା କ'ଣ ବୋଲି ପଚାରିବାରୁ ରାଜା କହିଲେ—ଏ ବିଷୟରେ ଏକ ଇତିହାସ ଅଛି । ମୋ'ର ପୂର୍ବପୁରୁଷ ପ୍ରଭଞ୍ଜନ ନାମରେ ଜଣେ ଧାର୍ମିକ ରାଜା ଥିଲେ । ତାଙ୍କର କୌଣସି ସନ୍ତାନ ସନ୍ତତି ନ ଥିଲେ । ପୁତ୍ରପ୍ରାପ୍ତି ପାଇଁ ସେ ଶିବଙ୍କୁ ଆରାଧନା କଲେ । ଆଶୁତୋଷ ଭୂତନାଥ ପ୍ରସନ୍ନ ହୋଇ କହିଲେ—ରାଜନ୍ ! ତୁମେ କେବଳ ନୁହେଁ, ତୁମ ବଂଶରେ ଯେତେ ରାଜା ହେବେ ସମସ୍ତଙ୍କର ଗୋଟିଏ ଲେଖାଏଁ ସନ୍ତାନ ହେବ । ସେହି-ଦିନଠାରୁ ଆମ ବଂଶରେ ଗୋଟିଏ ଲେଖାଏଁ ପୁଅ ଜନ୍ମ ହୋଇ ଆସୁଛନ୍ତି । କିନ୍ତୁ ମୋର ପୁତ୍ର ନ ହୋଇ ପୁତ୍ରୀଟିଏ ଜନ୍ମ ହୋଇଛି, ତେଣୁ ପୁତ୍ରିକା ଧର୍ମରେ ମୁଁ ତା'ର ବିବାହ କରିବା ପାଇଁ ଇଚ୍ଛୁକ ।

ଅର୍ଜୁନ ପଚାରିଲେ—ପୁତ୍ରିକା ଧର୍ମ କ'ଣ ?

ରାଜା କହିଲେ—ଯେଉଁ କନ୍ୟାର ଭାଇ ନାହିଁ ତାକୁ ବସ୍ତ୍ର ଆଭୂଷଣରେ ମଣ୍ଡିତ କରି ବରକୁ ଦେବାବେଳେ ପିତା କହନ୍ତି—ମୁଁ ଭ୍ରାତୃହୀନା ଏହି କନ୍ୟାକୁ ତୁମକୁ ଦେଉଛି । ତା'ର ଯେଉଁ ପୁତ୍ର ହେବ ସେ ମୋର ପୁତ୍ର ରୂପେ ବିବେଚିତ ହେବ ! ଏହିପରି ଶପଥ କରି ଯେଉଁ କନ୍ୟା ଦାନ କରାଯାଏ, ତାହାକୁ ପୁତ୍ରିକାଧର୍ମ କହନ୍ତି । ମୋ' କନ୍ୟାର ଯେଉଁ ପୁତ୍ର ହେବ ତାକୁ ମୁଁ ନେବି, ତାହାହିଁ କନ୍ୟାର ଶୁଳ୍କ । ଯଦି ତୁମେ ଏହି ପ୍ରତିଜ୍ଞା ପାଳନ କରିବ ତେବେ ମୋ' କନ୍ୟା ତୁମକୁ ଦାନ କରିବି ।

ଅର୍ଜୁନଙ୍କର କୌଣସି ଆପତ୍ତି ରହିଲା ନାହିଁ ସେ ଆନନ୍ଦରେ ଏହା ସ୍ୱୀକାର କଲେ । ରାଜାଙ୍କ ଆଦେଶରେ ରାଜ୍ୟବାସୀ ଆନନ୍ଦ ଉତ୍ସବ ପାଳନ କଲେ । ଅର୍ଜୁନଙ୍କ ସହିତ ଚିତ୍ରାଙ୍ଗଦାର ବିଧିବତ୍ ପାଣିଗ୍ରହଣ ସଂସ୍କାର ଅନୁଷ୍ଠିତ ହେଲା । ଅର୍ଜୁନ ରାଜ୍ୟ ଛାଡ଼ି ବଣକୁ ଆସିଥିଲେ । କିନ୍ତୁ ତାଙ୍କୁ ଆଉ ଏକ ରାଜ୍ୟ ମିଳିଗଲା । ଚିତ୍ରାଙ୍ଗଦା ଦେବତୁଲ୍ୟ ପରମ ତେଜସ୍ୱୀ ଓ ପରାକ୍ରମଶାଳୀ ପତିଙ୍କୁ ପାଇ ଅତ୍ୟନ୍ତ ପ୍ରମୁଦିତ ହେଲେ । ସେ ସର୍ବାନ୍ତଃକରଣରେ ଅର୍ଜୁନଙ୍କର ସେବା କରିବାକୁ ଲାଗିଲେ । ଅର୍ଜୁନ ଏହି ନୂତନ ଶ୍ୱଶୁରାଳୟରେ ତିନିବର୍ଷ କଟାଇଲେ । ଚିତ୍ରାଙ୍ଗଦାଙ୍କଠାରୁ ପୁତ୍ରଟିଏ ଜନ୍ମ ହେବା ପରେ ସେ ମା' ପୁଅଙ୍କୁ ଛାଡ଼ି ଦକ୍ଷିଣ ଦିଗକୁ ଯାତ୍ରା କଲେ । ଅର୍ଜୁନଙ୍କ ସେହି ପୁଅର ନାମ ଥିଲା ବଭ୍ରୁବାହନ । ମହାରାଜ ଚିତ୍ରସେନ ତାକୁ ଯୁବରାଜ ପଦରେ ଅଭିଷିକ୍ତ କଲେ । ବଭ୍ରୁବାହନ ଧୀରେ ଧୀରେ ବଢ଼ିବାକୁ ଲାଗିଲା । ଯୁଦ୍ଧ ପରେ ପାଣ୍ଡବମାନେ ଯେତେବେଳେ ଦିଗ୍‌ବିଜୟ କଲେ ସେତେବେଳେ ବଭ୍ରୁବାହନ ନିଜର ପିତାଙ୍କ ସହିତ ଯୁଦ୍ଧ କରିଥିଲେ ।

ଏହା ଶୁଣି ଶୌନକ ପଚାରିଲେ—ମହାଭାଗ ! ଅର୍ଜୁନଙ୍କ ସହିତ ବଭ୍ରୁବାହନ କାହିଁକି ଯୁଦ୍ଧ କରିଥିଲେ ? ଦୟାକରି ସେହି କଥା ଆମକୁ କହନ୍ତୁ ।

ମହର୍ଷି ସୂତ କହିଲେ—ମହାଶୟ ! ମୋର ଗୁରୁଙ୍କ ଗୁରୁ ଭଗବାନ୍ ବ୍ୟାସଦେବ ଏକଥା ମହାଭାରତରେ ବର୍ଣ୍ଣନା କରିଛନ୍ତି । ମହର୍ଷି ଜୈମିନି ମଧ୍ୟ ଅଶ୍ୱମେଧ ଯଜ୍ଞ ପ୍ରସଙ୍ଗରେ ଏହି ଘଟଣାକୁ ବିସ୍ତୃତଭାବେ କହିଛନ୍ତି । କିନ୍ତୁ ମୁଁ ଖୁବ୍ ସଂକ୍ଷେପରେ ସେକଥା ଆପଣମାନଙ୍କୁ କହୁଛି ।

ମହାଭାରତ ଯୁଦ୍ଧ ପରେ ଧର୍ମରାଜ ଯୁଧିଷ୍ଠିର ଅଶ୍ୱମେଧ ଯଜ୍ଞ କଲେ । ସେଥିରେ ଯଜ୍ଞ ଅଶ୍ୱ ଛଡ଼ାଯାଇଥିଲା । ଦେଶ ବିଦେଶ ବୁଲି ବୁଲି ଯଜ୍ଞ ଅଶ୍ୱ ମଣିପୁର ରାଜ୍ୟରେ ପହଞ୍ଚିଲା । ସେଠାରେ ଅର୍ଜୁନଙ୍କ ନନ୍ଦନ ବଭ୍ରୁବାହନ ଯେତେବେଳେ ମା'ଙ୍କ ପାଖରୁ ଶୁଣିଲେ ତାଙ୍କ ପିତା ଦିଗ୍‌ବିଜୟ କରିବା ପାଇଁ ଯଜ୍ଞଅଶ୍ୱ ନେଇ ତାଙ୍କରି ରାଜ୍ୟରେ ଓ ରାଜଧାନୀର ଅତି ନିକଟରେ ଅଛନ୍ତି ସେତେବେଳେ ବହୁ ଉପହାର ସାମଗ୍ରୀ ଧରି ସେ ପିତାଙ୍କ ନିକଟକୁ ଗଲେ । ବଭ୍ରୁବାହନ ବହୁ ଧନ, ରତ୍ନ, ଅଳଙ୍କାର, ବସ୍ତ୍ର, ବାହନ ଉପହାର ସ୍ୱରୂପ ସାଙ୍ଗରେ ଆଣିଥିଲେ । ପିତାଙ୍କ ପାଖରେ ପହଞ୍ଚି ସେ ପ୍ରଣାମ କଲେ ଓ ଉପହାର ସାମଗ୍ରୀ ସମର୍ପଣ କରି କହିଲେ—ବାପା ! ମୁଁ ଆପଣଙ୍କର ଅନୁଗତ । ମୁଁ ଆପଣଙ୍କର କି କାର୍ଯ୍ୟ କରିବି ଆଦେଶ ଦିଅନ୍ତୁ ।

ନିଜ ପୁଅର ଏପରି ବ୍ୟବହାରରେ ଅର୍ଜୁନ ଖୁସି ହେଲେ ନାହିଁ । ସେ ରାଗିଯାଇ କହିଲେ—ପୁତ୍ର ! ତୁ ମୋ' ସହିତ ଯେପରି ବ୍ୟବହାର କଲୁ ସେଥିରୁ ତୁ' ମୋ' ଔରସରୁ ଜନ୍ମ ହୋଇଛୁ ବୋଲି ପ୍ରତୀତ ହେଉନାହିଁ ।

ଏହା ଶୁଣି ବଭ୍ରୁବାହନ କ୍ରୋଧାନ୍ୱିତ ହୋଇ ପଡ଼ିଲେ । ନିଜର କ୍ରୋଧକୁ ଗୋପନ ରଖି ସେ କହିଲେ—ପିତାଙ୍କର ସତ୍କାର କରିବା କ'ଣ ପୁଅର କର୍ତ୍ତବ୍ୟ ନୁହେଁ ।

ଧୀର ଗମ୍ଭୀର ସ୍ୱରରେ ଅର୍ଜୁନ କହିଲେ—ଅବଶ୍ୟ କରିବା ଉଚିତ । ପିତାଙ୍କୁ ଆଦର କରିବା ପୁଅର ପରମ ଧର୍ମ, ପରମ କର୍ତ୍ତବ୍ୟ । କିନ୍ତୁ ମୁଁ ଯେତେବେଳେ ନିଃଶସ୍ତ୍ର ହୋଇ ତୋ' ପାଖକୁ ଆସିଥାନ୍ତି ସେତେବେଳେ ତୋ'ର ଏପରି ବ୍ୟବହାର ଶୋଭନୀୟ ହୋଇଥାନ୍ତା । ବର୍ତ୍ତମାନ ମୁଁ ଧର୍ମରାଜଙ୍କ ପ୍ରତିନିଧିରୂପେ ସମସ୍ତ ରାଜାଙ୍କ ସହିତ ଯୁଦ୍ଧ କରିବା ଇଚ୍ଛାରେ ଆସିଛି । ଯେ ଦୁର୍ବଳ ସେ ଆସି ଏହିପରି ଉପହାର ଦେଇ ମୋ'ର ଅଧୀନତା ସ୍ୱୀକାର କରୁଛନ୍ତି । ଯେ ବୀରାଭିମାନୀ ସେ ମୋ' ସହିତ ଯୁଦ୍ଧ କରୁଛନ୍ତି । ତୁ' କ୍ଷତ୍ରିୟ ବୀର୍ଯ୍ୟରୁ ଜାତ ହୋଇ ମଧ୍ୟ ଏକ ଦିଗ୍‌ବିଜୟୀ ରାଜାଙ୍କ ସେନାପତି ଆଗରେ ବିନା ଯୁଦ୍ଧରେ ଆତ୍ମସମର୍ପଣ କଲୁ । ଏହା କ୍ଷତ୍ରିୟୋଚିତ ବ୍ୟବହାର ହେଲା ନାହିଁ ।

ବଭ୍ରୁବାହନ ନିଜର ଭୁଲ୍ ବୁଝିପାରିଲେ । ସେ ଶୀଘ୍ର ଆସି ମା'ଙ୍କୁ କହିଲେ—ମା' ମୁଁ ଯଜ୍ଞ ଅଶ୍ୱକୁ ଧରିବି ଓ ତାଙ୍କ ସହିତ ଯୁଦ୍ଧ କରିବି ।

ଚିତ୍ରାଙ୍ଗଦା କହିଲେ—ପୁଅ ! ସେ ତୋ'ର ବାପା । ତାଙ୍କ ସହିତ ଯୁଦ୍ଧ କରିବା ଠିକ୍ ନୁହେଁ ।

ବଭ୍ରୁବାହନ କହିଲେ—ମା ! ସେ ମୋତେ ତିରସ୍କାର କଲେ । ତେଣୁ ମୁଁ ଆଉ ତୋ' କଥା ମାନିବି ନାହିଁ ।

ମା' ଓ ପୁଅ ଏହିପରି କଥାବାର୍ତ୍ତା ହେଉଥିବାବେଳେ ନାଗ ରାଜକନ୍ୟା ଉଲୂପୀ ଆସି ସେଠାରେ ପହଞ୍ଚିଲେ । ସେହି ସୁନ୍ଦରୀଙ୍କୁ ଦେଖି ବଭ୍ରୁବାହନ ଚମକିତ ହୋଇଗଲେ । ସେ ପଚାରିଲେ—ଦେବି ! ଆପଣ କିଏ, କାହିଁକି ଏଠାକୁ ଆସିଛନ୍ତି ?

ଉଲୂପୀ କହିଲା—ପୁଅ ମୁଁ ତୋ'ର ମା' ! ତୁ ତୋ'ର ଅଭିମାନୀ ପିତା ସହିତ ଯୁଦ୍ଧ କର । ଭଗବାନ୍ ତୋ'ର ମଙ୍ଗଳ କରିବେ । ବୀରାଭିମାନୀ ତୋ'ର ଜନକର ଗର୍ବକୁ ତୁ ଖର୍ବ କର ।

ଏହାଶୁଣି ବଭ୍ରୁବାହନ ଆନନ୍ଦିତ ହୋଇ କହିଲେ—ମା' ! ମୁଁ ଆପଣଙ୍କ ଆଦେଶ ନିଶ୍ଚୟ ପାଳନ କରିବି । ଯଦି ପିତା ଯୁଦ୍ଧରେ ଖୁସି ହେବେ ତେବେ ମୁଁ ନିଶ୍ଚୟ ଯୁଦ୍ଧ କରିବି ଓ ଯୁଦ୍ଧରେ ତାଙ୍କୁ ପରାଜିତ କରିବି । ଏହିପରି କହି ବଭ୍ରୁବାହନ କବଚ, ମୁକୁଟ ପିନ୍ଧି ଯୁଦ୍ଧ ଭୂମିରେ ପହଞ୍ଚିଲେ । ସେ ସେବକମାନଙ୍କୁ ଆଦେଶ ଦେଲେ—ଏହି ଅଶ୍ୱ ଓ ସୈନ୍ୟମାନଙ୍କୁ ମାରିପକାଅ । ସେବକମାନେ ଯଜ୍ଞ ଅଶ୍ୱକୁ ଧରିନେଲେ ।

ଅର୍ଜୁନ ଏହି ଖବର ପାଇ ଖୁସି ହେଲେ ଓ ଯୁଦ୍ଧ କରିବାକୁ ଆସିଲେ । ପିତା ପୁତ୍ରଙ୍କ ମଧ୍ୟରେ ଘୋର ଯୁଦ୍ଧ ଆରମ୍ଭ ହୋଇଗଲା । ଦୁହେଁ ଅସ୍ତ୍ରଶସ୍ତ୍ରରେ ପ୍ରବୀଣ ଓ ରଣ କୌଶଳୀ ଥିଲେ । କେହି କାହାକୁ ପାଦେ ହେଲେ ହଟେଇ ପାରିଲେ ନାହିଁ । ଦୁହେଁ ପ୍ରାଣକୁ ପଣ କରି ଯୁଦ୍ଧ କରିବାକୁ ଲାଗିଲେ । ଅର୍ଜୁନ ଶରଟିଏ ମାରି ବଭ୍ରୁବାହନଙ୍କୁ ଆହତ କରିଦେଲେ । ଏଥିରେ କ୍ରୋଧାନ୍ୱିତ ହୋଇ ବଭ୍ରୁବାହନ ଏକ ଶର ନିକ୍ଷେପ କଲେ । ସେହି ଶରଟି ଅର୍ଜୁନଙ୍କ ଗ୍ରୀବାରେ ବାଜିବାରୁ ଅର୍ଜୁନ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ ଓ ତାଙ୍କର ପ୍ରାଣ-ବାୟୁ ଉଡ଼ିଗଲା ।

ପିତାଙ୍କ ବାଣରେ ପୁତ୍ର ବି ଜର୍ଜରିତ ହୋଇପଡ଼ିଥିଲା । ସେ ଶେଷ ଶରଟି ନିକ୍ଷେପ କରିବା ସଙ୍ଗେ ସଙ୍ଗେ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । ନିଜ ପତି ଓ ପୁତ୍ରର ନିଧନ ଖବର ଶୁଣି ଚିତ୍ରାଙ୍ଗଦା ସମର କ୍ଷେତ୍ରରେ ଆସି ପହଞ୍ଚି ପତିଙ୍କର ମୃତ ଦେହକୁ ଧରି କାନ୍ଦି-ବାକୁ ଲାଗିଲେ ! ଉଲୂପୀ ମଧ୍ୟ ସେଠାରେ ଆସି ପହଞ୍ଚିଲେ । ତାଙ୍କୁ ଶୁଣେଇ ଶୁଣେଇ ଚିତ୍ରାଙ୍ଗଦା କହିଲେ—ଭଉଣୀ ! ତୁ ହିଁ ମୋର ପୁଅକୁ ଉତ୍ତେଜିତ କରି ମୋର ପତି ସହିତ ପୁତ୍ରର ଯୁଦ୍ଧ କରାଇଲୁ । ମୋର ପୁତ୍ରଶୋକଠାରୁ ପତିଶୋକ ବଳିଯାଇଛି । ମୁଁ ଏହି କୁରୁକୁଳ ତିଳକଙ୍କ ବ୍ୟତୀତ ମୁହୂର୍ତ୍ତେ ବି ଜୀବନ ଧାରଣ କରିପାରିବି ନାହିଁ । ମୁଁ ପ୍ରାଣତ୍ୟାଗ କରୁଛି । ଏହା କହି ଚିତ୍ରାଙ୍ଗଦା ପ୍ରାଣତ୍ୟାଗ ପାଇଁ ଉଦ୍ୟତ ହେଲେ । ଏହି ସମୟରେ ବଭ୍ରୁବାହନଙ୍କ ମୂର୍ଚ୍ଛାଭଙ୍ଗ ହେଲା । ସେ ଯେତେବେଳେ ପିତାଙ୍କୁ ମୃତ ଓ ମାତାଙ୍କୁ କାନ୍ଦୁଥିବାର ଦେଖିଲେ ସେତେବେଳେ ଦୁଃଖ କରିବାକୁ ଲାଗିଲେ । ଉଲୂପୀ ସମସ୍ତଙ୍କୁ ଧୈର୍ଯ୍ୟ ଧରିବା ପାଇଁ ଅନୁରୋଧ କରି କହିଲେ—କେହି ଚିନ୍ତା କରନ୍ତୁ ନାହିଁ । ଏସବୁ ଘଟଣା ମୁଁ ପତିଙ୍କର ମଙ୍ଗଳ ପାଇଁ କରିଛି । ଏହା କହି ସେ ସଂଜୀବନୀ ମନ୍ତ୍ର ପଢ଼ି ମଣିଟିଏ ଅର୍ଜୁନଙ୍କ ଗ୍ରୀବା ଉପରେ ରଖିଦେଲେ । ସେହି ମଣିଟି ରଖିବା ମାତ୍ରେ ଶୋଇଥିବା ଲୋକ ନିଦରୁ ଉଠିଲା ପରି ଅର୍ଜୁନ ଆଖି ମଳି ଉଠି ଠିଆ ହୋଇଗଲେ । ଚିତ୍ରାଙ୍ଗଦା ଓ ଉଲୂପୀ ଦୁଇ ସ୍ତ୍ରୀଙ୍କୁ ଯୁଦ୍ଧଭୂମିରେ ଦେଖି ଓ ସମସ୍ତଙ୍କର ବ୍ୟାକୁଳ ମୁଖକୁ ଚାହିଁ ଏ ସବୁର କାରଣ ପଚାରିବାରୁ ଚିତ୍ରାଙ୍ଗଦା କହିଲେ—ପ୍ରାଣନାଥ ! ଆପଣ ଉଲୂପୀକୁ ଏହାର କାରଣ ପଚାରନ୍ତୁ ।

ଅର୍ଜୁନ ପଚାରିବାରୁ ଉଲୂପୀ କହିଲେ – ଦେବ ! ଆପଣ ଯେତେବେଳେ ଅନ୍ୟାୟ ଭାବରେ ଶିଖଣ୍ଡୀକୁ ଆଗରେ ରଖି ଅଧର୍ମ ପୂର୍ବକ ଭୀଷ୍ମଙ୍କୁ ମାରିଲେ ସେତେବେଳେ ବସୁମାନଙ୍କ ଦୁଃଖିତ ହେବା ଗଙ୍ଗା ଆପଣଙ୍କୁ ଅଭିଶାପ ଦେଲେ— ପୁତ୍ରଦ୍ୱାରା ତୁମର ବି ମୃତ୍ୟୁ ହେବ ।

ଏହି ଅଭିଶାପ ଅନ୍ୟ କେହି ନୁହେଁ କେବଳ ମୁଁ ଶୁଣିଥିଲି । ମୋର ବଡ଼ ଭୟ ହେଲା । ମୁଁ ପିତାଙ୍କୁ ସବୁ କଥା କହିଲି । ସେ ବସୁମାନଙ୍କ ପାଖକୁ ଗଲେ ଓ ଅନୁନୟ ବିନୟ କରି କହିଲେ । ମୋର ପିତାଙ୍କ ଅକୁଳ ନିବେଦନ ଶୁଣି ସେମାନେ କହିଲେ— ଅର୍ଜୁନଙ୍କ ମୃତ୍ୟୁ ପୁତ୍ରଦ୍ୱାରା ନିଶ୍ଚୟ ହେବ । କିନ୍ତୁ ସଞ୍ଜୀବନୀ ମଣିଦ୍ୱାରା ସେ ପୁନର୍ଜୀବିତ ହେବେ । ସେହି ମୃତ୍ୟୁଦ୍ୱାରା ତାଙ୍କର ପାପ ଦୂରହେବ । ସେହି ପାପର ପ୍ରାୟଶ୍ଚିତ୍ତ ପାଇଁ ମୁଁ

ବଭ୍ରୁବାହନଙ୍କୁ ଯୁଦ୍ଧ ପାଇଁ ଉତ୍ସାହିତ କରିଥିଲି । ପ୍ରାଣନାଥ ! ପୁତ୍ରଦ୍ୱାରା ପରାଜିତ ହେବା ଦୋଷାବହ ନୁହେଁ, କାରଣ ପୁତ୍ର ହେଉଛି ଆତ୍ମା । ଏହାଦ୍ୱାରା ଆପଣଙ୍କ ପାପର ପ୍ରାୟଶ୍ଚିତ୍ତ ହୋଇଗଲା । ନୋହିଲେ ଆପଣଙ୍କୁ ନରକକୁ ଯିବାପାଇଁ ପଡ଼ିଥାନ୍ତା । ବସୁଗଣଙ୍କ ଶାପ ହେତୁ ବଭ୍ରୁବାହନ ଆପଣଙ୍କୁ ମାରିପାରିଲା । ନୋହିଲେ ଆପଣଙ୍କୁ ଦେବଗଣ ସମସ୍ତେ ମିଶିଲେ ବି ପରାଜିତ କରିପାରନ୍ତେ ନାହିଁ । ମୁଁ ଯାହା କିଛି କରିଛି ଆପଣଙ୍କ ମଙ୍ଗଳ ପାଇଁ ପ୍ରେମ-ବଶତଃ କରିଛି ।

ଏହାଶୁଣି ଅର୍ଜୁନ ଆନନ୍ଦିତ ହେଲେ । ସେ ପୁତ୍ରକୁ ପ୍ରେମାଲିଙ୍ଗନ କଲେ ଓ ଶିର ଆଘ୍ରାଣ କଲେ । ବଭ୍ରୁବାହନ ହାତ ଯୋଡ଼ି କହିଲେ—ବାପା ! ଆପଣ ଯଦି ମୋ' ପ୍ରତି ପ୍ରସନ୍ନ ହୋଇଛନ୍ତି, ତେବେ ଦିନଟିଏ ମାତ୍ର ମୋ' ଘରେ ବିଶ୍ରାମ ନେଇ କାଲି ସକାଳେ ଚାଲିଯିବେ ।

ପୁତ୍ରର ଅନୁରୋଧ ଶୁଣି ଅର୍ଜୁନ କହିଲେ—ପୁତ୍ର ! ମୁଁ ସ୍ୱାଧୀନ ନୁହେଁ । ଏହି ଯଜ୍ଞ ଅଶ୍ୱ ପାଇଁ ମୁଁ ପରାଧୀନ । ଘୋଡ଼ାର ଗତି ସ୍ୱତନ୍ତ୍ର । ତାକୁ ଅଟକାଇ ରଖିବା ଉଚିତ ନୁହେଁ । ତୁ ଏବେ ଦୁଇ ମା'ଙ୍କୁ ନେଇ ଧର୍ମରାଜଙ୍କ ଅଶ୍ୱମେଧ ଯଜ୍ଞକୁ ଆସିବୁ ।

ଏହା ଶୁଣି ବଭ୍ରୁବାହନ ଆଉ ଅଧିକ ଆଗ୍ରହ କଲେ ନାହିଁ । ମୁଣ୍ଡ ନୁଆଁଇ କହିଲେ—ହଁ ବାପା ! ଯଜ୍ଞ ଦେଖିବାକୁ ନିଶ୍ଚୟ ଯିବି । ଏହାପରେ ଅର୍ଜୁନ ଖୁସି ହୋଇ ଅଶ୍ୱ ପଛେ ପଛେ ଅନୁଗମନ କଲେ ।

ମହର୍ଷି ସୂତ କହିଲେ—ମୁନିଗଣ ! ବଭ୍ରୁବାହନ ଦୁଇ ମା'ଙ୍କୁ ନେଇ ଯୁଦ୍ଧକ୍ଷେତ୍ରରୁ ରାଜଭବନକୁ ଫେରିଆସିଲେ । ଯଜ୍ଞ ସମୟରେ ଦୁଇ ମା'ଙ୍କୁ ନେଇ ହସ୍ତିନାପୁର ଗଲେ । ସମସ୍ତେ ବଭ୍ରୁବାହନଙ୍କୁ ଭବ୍ୟ ସ୍ୱାଗତ ଜଣାଇଲେ ଓ ସତ୍କାର କଲେ । ବଭ୍ରୁବାହନ ଗୁରୁଜନମାନଙ୍କ ପାଦ ଛୁଇଁ ଆଶୀର୍ବାଦ ଗ୍ରହଣ କଲେ ଓ ଯଜ୍ଞର ସମସ୍ତ କାର୍ଯ୍ୟ ପରିଚାଳନା କଲେ । ଏହିପରି ଭଗବାନ୍ ଓ ବଭ୍ରୁବାହନଙ୍କ କଥା କହିଲି । ବର୍ତ୍ତମାନ ଅର୍ଜୁନଙ୍କ ତୃତୀୟ ପୁତ୍ର ଅଭିମନ୍ୟୁ ଓ ତାଙ୍କ ବଂଶାବଳୀ ବର୍ଣ୍ଣନା କରୁଛି ।

### ଛପ୍ପୟ

ଅଶ୍ୱମେଧ କୋ ଅଶ୍ୱ ବଭ୍ରୁବାହନ ନେ ପକର୍‌ୟୋ ।<br>
ରନ ତ୍ରକୋ ବାନୋ ପହିନ ପିତା ତେଁ ଲଡ଼ିବେ ନକର୍‌ୟୋ ।<br>
ଅତି ଇ ଭୀଷଣ ଯୁଦ୍ଧ ଭୟୋ ପିତୁ ସୁତ ତୈ ହାର୍‌ୟୋ ॥<br>
ସୁନୀ ମାତ କିନ୍ନ ବାତ ପୁତ୍ର ନେ ମନ ପତି ମାର୍‌ୟୋ ॥<br>
ଅତି ବଲାପ ପତି ହିତ କର୍‌ୟୋ, ଆଇ ଉଲୂପୀ ତମଇ ମହଁ ।<br>
ମଣି ତେଁ ପତି ଜୀବିତ କରେ, ଗୟେ ପାର୍ଥ ନିଜ ନଗର ମହଁ ॥



# ଅର୍ଜୁନ ପୁତ୍ର ଅଭିମନ୍ୟୁଙ୍କ ବଂଶାବଳୀ

ପରୀକ୍ଷିତେଽଥ କୁରୁଷୁ ଦ୍ରୋଣବ୍ରହ୍ମାସ୍ତ୍ରତେଜସା ।
ତ୍ୱଂ ଚ କୃଷ୍ଣାନୁଭାବେନ ସଜୀବୋ ମୋଚିତୋଽନ୍ତକାତ୍ ॥
ତ୍ତମେବ ତନୟାସ୍ତାତ ଜନମେଜୟପୂର୍ବକାଃ ।
ଶ୍ରୁତସେନୋ ଭୀମସେନ ଉଗ୍ରସେନଶ୍ଚ ବୀର୍ଯ୍ୟବାନ୍ ॥

(ଭାଗ-୯ସ୍କ-୨୨ଅ, ୩୫-୩୬ଶ୍ଳୋ)

## ଛପ୍ପୟ

ରଚୟିତ୍ୟୋ ଅତ ସ୍ୱାଙ୍ଗ ସୂତ୍ରଧାର ସଖା କୃଷ୍ଣନେ ।
ହରୀ ସୁଭଦ୍ରା ଜାୟ ଦ୍ୱାରକା ମହୁଁ ଅର୍ଜୁନ ନେ ॥
ତିନ କେ ସୁତ ଅଭିମନ୍ୟୁ ବୀରଗତି ଖରତ ପାଈ ।
ନାରୀ ଉତ୍ତରା ଗର୍ଭବତୀ ହୁଈ ଚରନନ୍ଦ ଆଈ ॥
ତାତେଁ ଜନମେ ଭଗବତ, ଦେବବ୍ରତ ନୃପ ପରୀକ୍ଷିତ ।
ସୁରତରୁ ସମ ପୂରନ କରହିଁ, ପ୍ରଜା ମନୋରଥ ଘରମବ୍ରତ ॥

ଶାସ୍ତ୍ରକାରମାନେ ବହୁ ପୁତ୍ର ଉତ୍ପନ୍ନ କରିବା ପାଇଁ ପରାମର୍ଶ ଦେଇଛନ୍ତି । କାରଣ, ସେମାନଙ୍କ ମଧ୍ୟରୁ କିଏ ଭଗବଦ୍‌ଭକ୍ତ, କିଏ ବୀର, କିଏ ବଂଶଧର ହୋଇପାରନ୍ତି । କ୍ଷତ୍ରିୟ ଯୁଦ୍ଧକୁ ଯିବାବେଳେ ଜୀବନ ନେଇ ଫେରିବାର ଆଶା ରଖନ୍ତି ନାହିଁ । ସେଥିପାଇଁ କ୍ଷତ୍ରିୟ ନିଜର ବୀରପୁତ୍ରର ସର୍ବଦା ମଙ୍ଗଳ କାମନା କରନ୍ତି ଏବଂ ପୁତ୍ର ଜନ୍ମ ହେଲେ ଅତୀବ ପ୍ରସନ୍ନ ହୁଅନ୍ତି ।

ମହର୍ଷି ସୂତ କହିଲେ—ମୁନିଗଣ ! ଦ୍ରୌପଦୀ, ଉଲୁପୀ, ଚିତ୍ରାଙ୍ଗଦାଙ୍କ ଛଡ଼ା ଭଗବାନ୍ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ଭଉଣୀ ସୁଭଦ୍ରାଙ୍କୁ ମଧ୍ୟ ଅର୍ଜୁନ ବିବାହ କରିଥିଲେ । ବନବାସ ସମୟରେ ତାଙ୍କର ଦୃଷ୍ଟି ସୁଭଦ୍ରାଙ୍କ ଉପରେ ପଡ଼ିଥିଲା । ବଳରାମ ଓ ଅନ୍ୟ ଯାଦବମାନେ ବିରୋଧ କରିଥିଲେ ବି ଶ୍ରୀକୃଷ୍ଣଙ୍କ ସମ୍ମତି ଅନୁସାରେ ଅର୍ଜୁନ ସୁଭଦ୍ରାଙ୍କୁ ହରଣ କରି ନେଇଥିଲେ । ଏ କାମରେ ଭଗବାନ୍ ତାଙ୍କୁ ସାହାଯ୍ୟ କରିଥିଲେ ଓ ନିଜର ରଥ ବି ଦେଇଥିଲେ । ଅର୍ଜୁନ ସୁଭଦ୍ରାଙ୍କୁ ହରଣ କଲେ । ତାଙ୍କରି ଗର୍ଭରୁ ମହାବୀର ଅଭିମନ୍ୟୁ ଜନ୍ମ ଗ୍ରହଣ କରିଥିଲେ ।

ଏହା ଶୁଣି ଶୌନକ ପଗ୍ଭରିଲେ—ମହାଭାଗ ! ଆପଣ ଏବେ ଯାହା କାହିଁକିପରି କହୁଛନ୍ତି । ସୁଭଦ୍ରା ହରଣ ଓ ଅଭିମନ୍ୟୁ ଜନ୍ମ କେତେ ସୁନ୍ଦର କଥା । ତାକୁ ଆପଣ ଦୁଇ ପଦରେ ଶେଷ କରିଦେଲେ । କହନ୍ତୁ, ଭଗବଦ୍‌ଭକ୍ତଙ୍କ କଥାରେ ଏତେ ଚଞ୍ଚଳ ହେବାର କୌଣସି କାରଣ ନାହିଁ ।

ମହର୍ଷି ସୂତ କହିଲେ—ମହାଶୟ ! ଶ୍ରୀକୃଷ୍ଣ ଚରିତ ପ୍ରସଙ୍ଗରେ ମୁଁ ସୁଭଦ୍ରା ହରଣ ଲୀଳା ବିସ୍ତୃତଭାବେ କହିବ । ସୁଭଦ୍ରାହରଣ ଲୀଳାରେ ଅର୍ଜ୍ଜୁନଙ୍କ ଖାତିରର ପ୍ରାଧାନ୍ୟ ନାହିଁ । ସେଥିରେ ଭଗବାନଙ୍କ ଭକ୍ତବାତ୍ସଲ୍ୟ ମହିମା ପ୍ରକଟିତ ହୋଇଛି । ଭଗବାନ୍ ଏପରି ଭକ୍ତ-ବତ୍ସଳ ଯେ ଅନୁଚରମାନଙ୍କର ଶ୍ରେଷ୍ଠ ଶ୍ରେଷ୍ଠ ଇଚ୍ଛାକୁ ଖାଲି ସେ ପୂରଣ କରନ୍ତି ନାହିଁ ବରଂ ସେ ସବୁ କାର୍ଯ୍ୟରେ ସେ ନିଜେ ସହଯୋଗ କରନ୍ତି । ଯଦି ଏ ବିଷୟ ଏଇଠି ଶୁଣିବା ପାଇଁ ଚାହୁଁଛନ୍ତି ତେବେ କୁହନ୍ତୁ, ମୁଁ ସେହି କାହାଣୀ ଏବେ କହିବ ।

ଏହାଶୁଣି ଶୌନକ କହିଲେ---ମହାଶୟ ! ତାହା ଆପଣଙ୍କ ଇଚ୍ଛାଧୀନ ।

ମହର୍ଷି ସୂତ କହିଲେ—ମହାଭାଗ ! ତାହାହିଁ ଠିକ୍ ହେବ । ଏଠାରେ କଥା ପ୍ରସଙ୍ଗରେ କରବର୍ଦ୍ଧିତ୍ଵତା ରକ୍ଷା ପାଇଁ କେବଳ ପରମ୍ପରା କଥା କହୁଛି । ହଁ ସୁଭଦ୍ରାଙ୍କ ଗର୍ଭରୁ ବୀର ଶ୍ରେଷ୍ଠ ଅଭିମନ୍ୟୁ ଜନ୍ମହେଲେ । ସେ ଯେତେବେଳେ ଗର୍ଭରେ ଥିଲେ ସେତେବେଳେ ଅର୍ଜ୍ଜୁନ ତାଙ୍କ ମା'ଙ୍କୁ ଅସ୍ତ୍ରଶସ୍ତ୍ର ବିଷୟରେ ନାନା କଥା କହୁଥିଲେ । ସେହି କଥା ଶୁଣି ଗର୍ଭରେ ଥାଇ ମଧ୍ୟ ଅଭିମନ୍ୟୁ ସମସ୍ତ ଅସ୍ତ୍ରଶସ୍ତ୍ର ବିଦ୍ୟା ଶିକ୍ଷା କରିଥିଲେ । ପାଣ୍ଡବମାନେ ଯେତେବେଳେ ବାରବର୍ଷ ବନବାସ ଓ ମହାରାଜ ବିରାଟଙ୍କ ରାଜ୍ୟରେ ଏକବର୍ଷ ଅଜ୍ଞାତବାସ କରୁଥିଲେ ସେତେବେଳେ ଅର୍ଜ୍ଜୁନ ରାଜକନ୍ୟା ଉତ୍ତରାକୁ ନାଚଗୀତ ଶିକ୍ଷା ଦେଉଥିଲେ । ଶେଷରେ ସେହି ଝିଅର ବିବାହ ଅର୍ଜ୍ଜୁନଙ୍କ ପୁଅ ଅଭିମନ୍ୟୁଙ୍କ ସହିତ ହୋଇଥିଲା । ଉତ୍ତରା ଯେତେବେଳେ ଗର୍ଭବତୀ ଥିଲେ ସେତେବେଳେ ମହାଭାରତ ଯୁଦ୍ଧରେ ସାତ ମହାରଥୀ ମିଳିତ ଭାବେ ଅନ୍ୟାୟରେ ବୀର ଅଭିମନ୍ୟୁଙ୍କୁ ମାରିପକାଇ-ଥିଲେ । ଦୁର୍ଯ୍ୟୋଧନର ଜୟଦ୍ରଥ ନାମରେ ଯେଉଁ ଭିଣୋଇ ବାଳକ ଅଭିମନ୍ୟୁଙ୍କୁ ବଧ କଲା ତାକୁ ସବ୍ୟସାଚୀ ଅର୍ଜ୍ଜୁନ ଶ୍ରୀକୃଷ୍ଣଙ୍କ ସାହାଯ୍ୟରେ ସୂର୍ଯ୍ୟାସ୍ତ ପୂର୍ବରୁ ବଧ କଲେ ।

ମହାଭାରତ ଶେଷ ହେବା ପରେ ପାଣ୍ଡବ କୁଳର ସମୂଳ ବିନାଶ ପାଇଁ ଅଶ୍ବତ୍ଥାମା ଦ୍ରୌପଦୀଙ୍କର ପାଞ୍ଚପୁତ୍ରଙ୍କ ମୁଣ୍ଡ କାଟି ପକାଇଲେ ଓ ପଞ୍ଚ ପାଣ୍ଡବଙ୍କୁ ମାରିବା ପାଇଁ ପାଞ୍ଚଟି ଶର ନିକ୍ଷେପ କଲେ । ଉତ୍ତରାର ଗର୍ଭ ନଷ୍ଟ କରିବା ପାଇଁ ବ୍ରହ୍ମାସ୍ତ୍ର କ୍ଷେପଣ କଲେ । କିନ୍ତୁ ଭଗବାନ୍ ଶ୍ରୀକୃଷ୍ଣଙ୍କ କୃପାରୁ ପଞ୍ଚପାଣ୍ଡବ ଓ ଉତ୍ତରା ଗର୍ଭସ୍ଥ ବାଳକର କୌଣସି କ୍ଷତି ହେଲା ନାହିଁ । ଉତ୍ତରାଙ୍କ ଗର୍ଭରୁ ବାଳକ ମହାରାଜ ପରୀକ୍ଷିତ ଜନ୍ମ ହେଲେ । ସେହି ପରୀକ୍ଷିତଙ୍କୁ ମୋର ଗୁରୁ ଭଗବାନ୍ ଶୁକଦେବ ଗଙ୍ଗାକୂଳରେ ଶ୍ରୀମଦ୍ ଭାଗବତ କଥା ଶୁଣାଇଥିଲେ । ସେହି ମହାରାଜ ପରୀକ୍ଷିତଙ୍କ ଗୁଣଗାରିମା କିଏ ଗାନ କରିପାରିବ ?

ମହାରାଜ ପରୀକ୍ଷିତଙ୍କର ଜନମେଜୟ, ଶ୍ରୁତସେନ, ଭୀମସେନ ଓ ଉଗ୍ରସେନ ନାମରେ ଚାରି ପୁତ୍ର ଜନ୍ମ ହେଲେ । ମହାରାଜ ଜନମେଜୟ ଥିଲେ ପରମ ଧାର୍ମିକ । ସେ ସମସ୍ତ ପୁରାଣ ଓ ମହାଭାରତ ଶୁଣି ସେଗୁଡ଼ିକୁ ସମଗ୍ର ପୃଥିବୀରେ ପ୍ରଚାର ପ୍ରସାର କରିଥିଲେ । ପୁଣ୍ୟ ଶ୍ଳୋକ ମହାରାଜ ଜନମେଜୟଙ୍କ କୀର୍ତ୍ତି ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ଅକ୍ଷୁଣ୍ଣ ରହିବ । ସେ ବଡ଼ ବଡ଼ ଅଶ୍ୱମେଧ ଯଜ୍ଞ କରିଥିଲେ । ଋଷିବର ଭୃଗୁଙ୍କୁ ପୁରୋହିତ ରୂପେ ବରଣ କରି ସେ ଯଜ୍ଞଦ୍ୱାରା ଭଗବାନଙ୍କୁ ଆରାଧନା କରିଥିଲେ ଏବଂ ସମଗ୍ର ପୃଥିବୀର ସାର୍ବଭୌମ ସମ୍ରାଟ ହୋଇଥିଲେ । ତାଙ୍କ ପୁତ୍ର ଶତାନୀକଙ୍କ କଥା ଆପଣମାନେ ଜାଣନ୍ତି । ଆପଣଙ୍କୁ ସେ ଆତ୍ମଜ୍ଞାନ ଶିକ୍ଷା ଦେଇଥିଲେ । ସେ ଥିଲେ ଧନୁର୍ବେଦ ବିଦ୍ୟାବିଶାରଦ । ଭଗବାନ କୃପାଚାର୍ଯ୍ୟଙ୍କଠାରୁ ସେ ଅସ୍ତ୍ରବିଦ୍ୟା ଶିକ୍ଷା କରିଥିଲେ ଓ ଯାଜ୍ଞବଲ୍କ୍ୟ ଋଷିଙ୍କଠାରୁ ବେଦତ୍ରୟୀ, କ୍ରିୟାଜ୍ଞାନ ଅର୍ଥାତ୍ ଭକ୍ତିଶାସ୍ତ୍ର ଅଧ୍ୟୟନ କରିଥିଲେ । ତାଙ୍କପୁତ୍ର ସହସ୍ରାନୀକ ତାଙ୍କଠାରୁ ଅଶ୍ୱମେଧଜ, ତାଙ୍କଠାରୁ ଅସୀମ କୃଷ୍ଣ ଓ ତାଙ୍କଠାରୁ ନେମିଚକ୍ର, ପୁତ୍ର ଜନ୍ମ ହୋଇଥିଲେ । ନେମିଚକ୍ର ଥିଲେ ହସ୍ତିନାପୁରର ଶେଷ ରାଜା । ପୂର୍ବରୁ ଗଙ୍ଗାର ଧାରା ହସ୍ତିନାପୁରଠାରୁ କିଛି ଦୂରରେ ପ୍ରବାହିତ ଥିଲା । କିନ୍ତୁ ନେମିଚକ୍ରଙ୍କ ରାଜତ୍ୱ ସମୟରେ ସେହି ଧାରା ହସ୍ତିନାପୁର ନିକଟରେ ପ୍ରବାହିତ ହୋଇଥିଲା । ଫଳରେ ବନ୍ୟାରେ ସମସ୍ତ ହସ୍ତିନାପୁର ଧ୍ୱସ୍ତ ବିଧ୍ୱସ୍ତ ହୋଇଗଲା । ତେଣୁ ନେମିଚକ୍ର ହସ୍ତିନାପୁର ତ୍ୟାଗ କରି ପ୍ରୟାଗ ନିକଟବର୍ତ୍ତୀ କୌଶାମ୍ବୀ ନଗରରେ ଅବସ୍ଥାନ କଲେ । ସେହି କୌଶାମ୍ବୀକୁ ସେ ନିଜର ରାଜଧାନୀ ରୂପେ ପ୍ରତିଷ୍ଠା କଲେ । ତାଙ୍କର ପୁତ୍ର ହେଲେ ଚିତ୍ରରଥ । ତାଙ୍କଠାରୁ କବିରଥ, ତାଙ୍କଠାରୁ ବୃଷ୍ଟିମାନ୍, ତାଙ୍କଠାରୁ ସୁଷେଣ, ତାଙ୍କଠାରୁ ସୁନୀଥ, ତାଙ୍କଠାରୁ ନୃଚକ୍ଷୁ ଓ ତାଙ୍କଠାରୁ ସୁଖୀନଳ ପୁତ୍ର ଜନ୍ମ ଗ୍ରହଣ କଲେ ।

ଏହା ଶୁଣି ଶୌନକ କହିଲେ—ମହାଭାଗ ! ଆପଣ ଖାଲି ଅମୁକର ପୁତ୍ର ସମୁକ ଓ ସମୁକର ପୁତ୍ର ଅମୁକ ହେଲେ ବୋଲି କହିବେ ନା କୌଣସି କଥା ଶୁଣାଇବେ ?

ମହର୍ଷି ସୂତ କହିଲେ—ମହାଶୟ ! କଟୁ ଔଷଧକୁ ଆଖିବୁଜି ବିଶ୍ୱାସ କରି ଯେପରି ପାନ କରାଯାଏ ସେହିପରି ଆପଣମାନେ ମୌନ ରହି ଏହି ବଂଶାନୁଚରିତ ଶୁଣନ୍ତୁ ।

ଚିକିତ୍ସକ ଯେତେବେଳେ କହନ୍ତି ଏହି ଔଷଧ ଅତି ଉତ୍କୃଷ୍ଟ ସେତେବେଳେ ଆମେ ତାଙ୍କର କଥା ମାନି ଇଚ୍ଛା ଥାଉ ବା ନ ଥାଉ ଅତ୍ୟଧିକ କଟୁ ଔଷଧକୁ ମଧ୍ୟ ନିଃଶ୍ୱାସ ବନ୍ଦକରି ପାନ କରୁ । ସେହିପରି ଚନ୍ଦ୍ରବଂଶର ବଂଶାବଳୀକୁ ଆପଣମାନେ ଶାସ୍ତ୍ରାଦେଶ ମନେକରି ଶୁଣିଯାଆନ୍ତୁ । ଆଉ ବେଶୀ ନାହିଁ । ଆମର ଉଦ୍ଦେଶ୍ୟ ହେଉଛି ଯଦୁକୁଳ ବଂଶ ବର୍ଣ୍ଣନା । ଯଦୁକୁଳ ଭୂଷଣ ଯାଦବେନ୍ଦ୍ର ଶ୍ରୀକୃଷ୍ଣଚନ୍ଦ୍ରଙ୍କ ଚରିତ ବର୍ଣ୍ଣନ ଓ ଶ୍ରବଣ ଆମର ଲକ୍ଷ୍ୟ । ସେଥିପାଇଁ ମୁଁ ଏବେ ପୁରୁବଂଶକୁ ସଂକ୍ଷେପରେ କହି ଓ ଅନୁଦ୍ରୁହ୍ୟୁ ତଥା ତୁର୍ବସୁଙ୍କ ବଂଶଜ ରାଜାଙ୍କ ନାମ ବର୍ଣ୍ଣନା ପରେ ଯଦୁବଂଶ କଥା କହିବି ।

ଶୌନକ କହିଲେ—ହେଉ ମହାଶୟ ! ଆପଣ ବଂଶାବଳୀ କହି ଯାଆନ୍ତୁ । ହଁ, ସୁଖୀନଳ ପୁତ୍ର କିଏ ହେଲେ ?

ମହର୍ଷି ସୂତ କହିଲେ— ମହାଭାଗ ! ସୁଖୀନଳଙ୍କ ପୁଅ ହେଲେ ପରିପ୍ଲବ । ତାଙ୍କଠାରୁ ସୁନୟ ଓ ତାଙ୍କଠାରୁ ମେଧାବୀ ଜନ୍ମ ହେଲେ । ମେଧାବୀଙ୍କଠାରୁ ନୃପଞ୍ଜୟ, ତାଙ୍କଠାରୁ ଦୂର୍ବ, ତାଙ୍କଠାରୁ ତିମି, ତାଙ୍କଠାରୁ ବୃହଦ୍ରଥ, ତାଙ୍କଠାରୁ ସୁଦାସ, ତାଙ୍କଠାରୁ ଶତାନୀକ, ତାଙ୍କଠାରୁ ଦୁର୍ଦଶନ, ତାଙ୍କଠାରୁ ବହୀନର, ତାଙ୍କଠାରୁ ଦଣ୍ଡପାଣି, ତାଙ୍କଠାରୁ ନିମି, ତାଙ୍କଠାରୁ କ୍ଷେମକ ନାମରେ ପୁତ୍ର ଜନ୍ମ ଗ୍ରହଣ କରିଥିଲେ । ସେହି କ୍ଷେମକ ଚନ୍ଦ୍ରବଂଶୀୟ ମହାରାଜ ବୃହତ୍‌କ୍ଷେତ୍ରଙ୍କ ବଂଶର ଅନ୍ତିମ ରାଜା ଥିଲେ । କଳିଯୁଗରେ ତାଙ୍କଠାରୁ ସେ ବଂଶର ସମାପ୍ତି ଘଟିଲା । ମହାରାଜ ପୁରୁଙ୍କ ଏହି ବଂଶ ଦେବତା ଓ ଋଷିମାନଙ୍କ ଦ୍ୱାରା ପ୍ରଶଂସିତ ହୋଇଛି ।

ଏହା ଶୁଣି ଶୌନକ ପଚାରିଲେ—ମହାଶୟ ! ଚନ୍ଦ୍ରବଂଶୀୟ ରାଜା ଏବେ ବି ଅନେକ ଅଛନ୍ତି । କିନ୍ତୁ ଆପଣ କହୁଛନ୍ତି କ୍ଷେମକଙ୍କଠାରୁ ସେ ବଂଶ ଶେଷହେଲା ବୋଲି । ଏ କିପରି କଥା ?

ମହର୍ଷି ସୂତ କହିଲେ—ମହାଭାଗ ! କୌଣସି ବସ୍ତୁର ବୀଜ କେବେହେଲେ ନଷ୍ଟ ହୁଏ ନାହିଁ । ସୂର୍ଯ୍ୟବଂଶର ମହାରାଜ ମରୁ ଓ ଚନ୍ଦ୍ରବଂଶର ମହାରାଜ ଦେବାପି ଅଦ୍ୟାବଧି ବଦ୍ରିନାଥର ଉପରିଭାଗରେ ସମାଧିସ୍ଥ ହୋଇ ଅଲକ୍ଷିତ ଭାବରେ ତପସ୍ୟା କରୁଛନ୍ତି । କଳିଯୁଗ ଶେଷହେଲେ ସେମାନେ ପୁଣି ସୂର୍ଯ୍ୟ ଓ ଚନ୍ଦ୍ରବଂଶ ସ୍ଥାପନ କରିବେ । ଆଗାମୀ ଯୁଗରେ ଯେଉଁ ସୂର୍ଯ୍ୟଚନ୍ଦ୍ରବଂଶାବଳୀ ହେବ ତାହା ମରୁ ଓ ଦେବାପିଙ୍କ ସନ୍ତାନଙ୍କୁ ନେଇ ପ୍ରତିଷ୍ଠିତ ହେବ । ବଂଶାବଳୀ ପ୍ରବାହରେ ପୂର୍ଣ୍ଣ ବିଶୁଦ୍ଧତା ରକ୍ଷା ସମ୍ଭବ ନୁହେଁ । ତେଣୁ କଳିଯୁଗରେ ସୂର୍ଯ୍ୟବଂଶର ମହାରାଜ ସୁମିତ୍ର ଓ ଚନ୍ଦ୍ରବଂଶର ମହାରାଜ କ୍ଷେମକଙ୍କ ବଂଶପରମ୍ପରା ବିଶୁଦ୍ଧ ରହିଲା ନାହିଁ । ମ୍ଲେଚ୍ଛମାନେ ଆସିବା ପର୍ଯ୍ୟନ୍ତ ଯେଉଁ କ୍ଷତ୍ରିୟକୁଳ ଥିଲେ ସେମାନେ ବି ଧୀରେ ଧୀରେ କ୍ଷତ୍ରିୟଧର୍ମଚ୍ୟୁତ ହୋଇପଡ଼ିଲେ । ସେମାନେ ଧର୍ମଯୁଦ୍ଧ ଓ ପ୍ରଜାପାଳନ କର୍ତ୍ତବ୍ୟ ଭୁଲିଗଲେ । ବର୍ତ୍ତମାନ ନାମକୁ ମାତ୍ର କ୍ଷତ୍ରିୟ ରାଜା ଅଛନ୍ତି । ଆଜିକାଲି ଜୋର୍ ଯା'ର ମୁଲକ ତା'ର । ବଂଶପରମ୍ପରା ଲୋପ ପାଇଗଲା । ଯୁଗ ପ୍ରଭାବରେ ଲୋକେ ଧର୍ମ ପ୍ରତି ବିମୁଖ ହୋଇଗଲେ । ବର୍ଣ୍ଣାଶ୍ରମଧର୍ମ ଲୁପ୍ତପ୍ରାୟ ହୋଇଗଲା । କୁଳମର୍ଯ୍ୟାଦା ନଷ୍ଟ ହୋଇଗଲା । ଭଗବାନ ଯାହା କରନ୍ତି ଭଲ ପାଇଁ କରନ୍ତି । ତାଙ୍କ ପାଖରେ ମନ୍ଦ ବୋଲି କିଛି ନାହିଁ । ଧର୍ମ ଓ ଅଧର୍ମ ତାଙ୍କର ସୃଷ୍ଟି । ସତ୍ୟଯୁଗରେ ଧର୍ମ ଚାରିପାଦ, ତ୍ରେତାରେ ତିନିପାଦ ଓ ଦ୍ୱାପରରେ ଅଧେ ଧର୍ମ ଅଧେ ଅଧର୍ମ ପ୍ରଭାବ ବିସ୍ତାର କରେ । କଳିଯୁଗରେ ଧର୍ମ ଦୁର୍ବଳ ଓ ଅଧର୍ମ ସବଳ ହୋଇଯାଏ । କଳିଯୁଗରେ ଧର୍ମର ଚାରିପାଦରୁ ତିନିପାଦ ନଷ୍ଟ ହୋଇଥାଏ । କିଛିକାଳ ଏହି ଅବସ୍ଥାରେ ଚାଲିବା ପରେ ଧର୍ମର ଶେଷ ପାଦଟି ବି ନଷ୍ଟ ହୁଏ । ସତ୍ୟଯୁଗରେ ଧର୍ମପରି କଳିଯୁଗରେ ଅଧର୍ମ ପୁରା ଆଧିପତ୍ୟ ବିସ୍ତାର କରିଥାଏ ।

ତେଣୁ ବିଶ୍ୱଜ ବଂଶ ପରିବର୍ତ୍ତେ କଳିଯୁଗରେ ବର୍ଣ୍ଣଶଙ୍କର, ଦସ୍ୟୁଧର୍ମୀଙ୍କ ବଂଶ ବଢ଼େ । କାଳରୂପୀ ଭଗବାନ୍ ଏ ସବୁ କରନ୍ତି । ବର୍ତ୍ତମାନ ପୃଥିବୀକୁ କଳିଯୁଗ ଆସିଯାଇଛି । ସ୍ତ୍ରୀଲୋକମାନଙ୍କ ଗର୍ଭରୁ ବ୍ରହ୍ମରାକ୍ଷସମାନେ ଜନ୍ମ ହୋଇ କଳିର ପ୍ରବୃତ୍ତି ପ୍ରସାର କରୁଛନ୍ତି । ଏହାପରେ ମହାରାଜ ହସ୍ତୀଙ୍କ ପିତା ବୃହତ୍କ୍ଷତ୍ରଙ୍କ ବଂଶାବଳୀ ବର୍ଣ୍ଣନା କଲି । ବର୍ତ୍ତମାନ ସଂକ୍ଷେପରେ ବୃହଦ୍ରଥଙ୍କ ବଂଶର ଅବଶିଷ୍ଟ ରାଜାମାନଙ୍କ ନାମ ଶୁଣନ୍ତୁ ।

ପୂର୍ବରୁ ମୁଁ ବୃହଦ୍ରଥ ସୁତ ଜରାସନ୍ଧ ଜନ୍ମ କଥା କହିଛି । ଭୀମସେନ ଶ୍ରୀକୃଷ୍ଣଙ୍କ ପରାମର୍ଶ ଅନୁସାରେ ଜରାସନ୍ଧକୁ ଦୁଇଫାଳ କରି ଚିରି ବଧ କଲେ । ସେ କଥା ମୁଁ ପରେ କହିବି । ଜରାସନ୍ଧର ପୁତ୍ର ସହଦେବ ଶ୍ରୀକୃଷ୍ଣଙ୍କ ଆଦେଶରେ ବନ୍ଦୀଥିବା ରାଜାମାନଙ୍କୁ ମୁକ୍ତ କଲେ ଓ ସେମାନେ ବିଦାୟ ନେଲେ । ସହଦେବଙ୍କଠାରୁ ମାର୍ଜାରି, ତାଙ୍କଠାରୁ ଶ୍ରୁତଶ୍ରବା ତାଙ୍କଠାରୁ ଯୁତାୟୁ ଓ ତାଙ୍କଠାରୁ ନିରମିତ୍ର ନାମରେ ସୁପ୍ରସିଦ୍ଧ ରାଜା ଜନ୍ମ ହେଲେ । ତାଙ୍କ ପୁଅ ସୁନକ୍ଷତ୍ରଙ୍କଠାରୁ ବୃହତ୍ସେନ, ତାଙ୍କଠାରୁ କର୍ମଜିତ, ତାଙ୍କଠାରୁ ଶୃଞ୍ଜୟ, ତାଙ୍କଠାରୁ ବିପ୍ର ଓ ତାଙ୍କଠାରୁ ଶୁଚି ନାମରେ ପୁତ୍ର ଜନ୍ମ ଗ୍ରହଣ କଲେ । ତା'ପରେ ଯଥାକ୍ରମେ କ୍ଷେମ, ସୁବ୍ରତ, ଧର୍ମସୂତ୍ର, ଶମ, ଦ୍ୟୁମତ୍ସେନ, ସୁମତି, ସୁବଳ ପ୍ରଭୃତି ରାଜା ରାଜତ୍ୱ କଲେ । ସୁବଳଙ୍କ ପୁତ୍ର ସୁନୀଥ, ତାଙ୍କପୁତ୍ର ସତ୍ୟଜିତ୍, ତାଙ୍କ ପୁତ୍ର ବିଶ୍ୱଜିତ୍, ତାଙ୍କ ପୁତ୍ର ରିପୁଞ୍ଜୟ ରାଜା ହେଲେ । ଜରାସନ୍ଧଙ୍କ ପରେ ଅର୍ଥାତ୍ ମହାଭାରତ ଯୁଦ୍ଧପରେ ମଗଧ ବଂଶରେ ହଜାରେ ବର୍ଷ ମଧ୍ୟରେ ଏହି ବାଇଶ ଜଣ ରାଜା ହୋଇଥିଲେ । ରିପୁଞ୍ଜୟଙ୍କ ପରେ ମଗଧ ବଂଶ ନଷ୍ଟଭ୍ରଷ୍ଟ ହୋଇଗଲା । ବିହାରରେ ଏବେ ବି ଗିରିବ୍ରଜ (ରାଜଗିରି) ନାମରେ ଏକ ସ୍ଥାନ ଅଛି । ସେଠାରେ ଏକବଡ଼ ଉଷ୍ଣ ପ୍ରସ୍ରବଣ ଅଛି । ସ୍ଥାନଟି ବଡ଼ ରମଣୀୟ ଓ ସ୍ୱାସ୍ଥ୍ୟପ୍ରଦ । କିନ୍ତୁ ଏବେ ସେହି ବଂଶର କଥାମାନ ସେଠାରେ ଅବଶିଷ୍ଟ ଅଛି । କରାଳ ସବୁ କଥାକୁ କାଳର ବିଶାଳ ଗର୍ଭରେ ଲୁଚାଇ ଦେଇଛି ।

ମହର୍ଷି ସୂତ ପୁଣି କହିଲେ—ମୁନିଗଣ ! ଏହାପରେ ମହାରାଜ ଯଯାତିଙ୍କର କନିଷ୍ଠ ପୁତ୍ର ପୁରୁଙ୍କ ବଂଶାବଳୀ ସଂକ୍ଷେପରେ ବର୍ଣ୍ଣନା କଲି । ବର୍ତ୍ତମାନ ଆପଣମାନେ ଆଉ କ'ଣ ଶୁଣିବା ପାଇଁ ଇଚ୍ଛା କରୁଛନ୍ତି କୁହନ୍ତୁ ।

ଶୌନକ କହିଲେ—ମହାଭାଗ ! ଆପଣ ପୂର୍ବରୁ କହିଥିଲେ ଯେ ମହାରାଜ ଯଯାତିଙ୍କର ଶୁକ୍ରତନୟା ଦେବଯାନୀ ଓ ବୃଷପର୍ବାଙ୍କ ପୁତ୍ରୀ ଶର୍ମିଷ୍ଠା ନାମରେ ଦୁଇ ପତ୍ନୀ ଥିଲେ । ଦେବଯାନୀଙ୍କ ଗର୍ଭରୁ ଯଦୁ ଓ ତୁର୍ବସୁ ଏବଂ ଶର୍ମିଷ୍ଠାଙ୍କ ଗର୍ଭରୁ ଦ୍ରୁହ୍ୟୁ, ଅନୁ, ପୁରୁ ନାମରେ ପାଞ୍ଚ ପୁତ୍ର ଜନ୍ମ ହୋଇଥିଲେ । ବର୍ତ୍ତମାନ ଆମେ ମହାରାଜ ଯଯାତିଙ୍କ ଅନ୍ୟ ରାଜପୁତ୍ରଙ୍କର ବଂଶାବଳୀ ଶୁଣିବାକୁ ଇଚ୍ଛା କରୁଛୁ ।

ମହର୍ଷି ସୂତ କହିଲେ—ମହାଶୟ ! ମୁଁ ସମସ୍ତଙ୍କ ବଂଶାବଳୀ ଯଦି ବିସ୍ତୃତଭାବେ କହିବି ତେବେ ଏ କଥା ଆଉ ସରିବ ନାହିଁ । ଶ୍ରୀକୃଷ୍ଣ ଚରିତ ଶୁଣିବାକୁ ଆଉ ଅବକାଶ ମିଳିବ ନାହିଁ । ତେଣୁ ମହାରାଜା ପୁରୁଙ୍କର ଅନ୍ୟ ଭାଇମାନଙ୍କ ବଂଶ ଅତି ସଂକ୍ଷେପରେ

ବର୍ଣ୍ଣନା କରିବ । ପ୍ରଥମେ ଆପଣ ଶର୍ମିଷ୍ଠାଙ୍କ ଦ୍ୱିତୀୟ ପୁତ୍ର ଅନୁଙ୍କ ବଂଶାବଳୀ ଶୁଣନ୍ତୁ । ଏହି ବଂଶରେ ବହୁ ପ୍ରସିଦ୍ଧ ରାଜର୍ଷି ଜନ୍ମ ହୋଇଥିଲେ । ମୁଁ ପ୍ରଥମେ ସେହିମାନଙ୍କ କଥା କହୁଛି, ଆପଣମାନେ ସାବଧାନ ହୋଇ ଶୁଣନ୍ତୁ ।

## ଛପ୍ପୟ

ଭୂପ ଭାଗବତ ସୁନୀ ଅନ୍ତ ମହଁ ଭୟେ ଭକ୍ତିଯୁତ ।
ଜନମେଜୟ ଶ୍ରୁତସେନ ଭୀମ ଅରୁ ଉଗ୍ରସେନ ସୁତ ॥
ଜନମେଜୟ ତୋ ଜ୍ୟେଷ୍ଠ ଭୟେ ସୁତ ଶତାନୀକତନ ।
ପଚିଶ ପୀଢ଼ୀ ମାହଁ ଭୟେ କ୍ଷେମକ ଭୂପତିମନ ॥
କ୍ଷେମକ ହୀ ଜା ବଂଶ କେ, ସବ ତେଁ ଅନ୍ତିମ ନୃପ ଭୟେ ।
କଲି ପ୍ରଭାବ ତେଁ ଶୁଦ୍ଧ କୁଲ, ଛିନ୍ନ ଭିନ୍ନ ଅବ ହ୍ୱୈ ଗୟେ ॥



ମୁଦ୍ରାକର—ପଦ୍ମାଳୟା ପ୍ରକାଶନୀ